# ମଣି-ମଞ୍ଜୁଷା




ଶ୍ରୀ ଜାନକୀବଲ୍ଲଭ ମହାନ୍ତି ଏମ୍. ଏ.
ଶ୍ରୀ ଶ୍ରୀନିବାସ ମିଶ୍ର ଏମ୍. ଏ.

# ମଣି-ମଞ୍ଜୁଷା

ସଙ୍କଳୟିତା —

ଅଧ୍ୟାପକ ଜାନକୀ ବଲ୍ଲଭ ମହାନ୍ତି ଏମ୍. ଏ.

" ଶ୍ରୀନିବାସ ମିଶ୍ର ଏମ୍. ଏ.

ପ୍ରଥମ ମୁଦ୍ରଣ

୧୯୫୪

ପ୍ରକାଶକ

ପଣ୍ଡିତ ଆକୁଳ ମିଶ୍ର କାବ୍ୟତୀର୍ଥ

**କଟକ ଟ୍ରେଡ଼ିଂ କମ୍ପାନୀ**

ବାଲୁବଜାର, କଟକ-୨

ମୂଲ୍ୟ ଟ ୧୲

# ସୂଚୀପତ୍ର

# ମଣି-ମଞ୍ଜୁଷା

## ବାରବାଟୀ ଦୁର୍ଗ

"ଐତିହାସିକ ଏ ଦୁର୍ଗ ବାରବାଟୀ,
ବୀର-ରକ୍ତ-ପିଣ୍ଡେ ଗଢ଼ା ଯାର ମାଟି ।"

ଉତ୍କଳର ପୂର୍ବ-କୀର୍ତ୍ତି-ସ୍ମୃତି-ପୂତ ବାରବାଟୀକୁ କବିବର ରାଧାନାଥ ଐତିହାସିକ ମହତ୍ତ୍ୱରେ ଭୂଷିତ କରିଅଛନ୍ତି । ଆଜି ବାରବାଟୀର ଭଗ୍ନ ଓ ଜୀର୍ଣ୍ଣ ଅବସ୍ଥାକୁ ସନ୍ଦର୍ଶନ କରି କିଏ ବିଶ୍ୱାସ କରିବ ଯେ ବାରବାଟୀ ଦିନେ ଉତ୍କଳର ସ୍ୱାଧୀନତା ଦେବୀଙ୍କର ଆଦରଣୀୟ ଅଧିଷ୍ଠାନ ସ୍ଥଳୀ ଥିଲା ! ବାସ୍ତବରେ ବାରବାଟୀ ତଥା ଉତ୍କଳର ଗୌରବମୟ ଅତୀତ ବିଷୟ ଚିନ୍ତାକଲେ ବିସ୍ମିତ ହେବାକୁ ପଡ଼ୁଥାଏ । ଉତ୍କଳୀୟମାନେ ଦିନେ ଶିକ୍ଷା, ସଂସ୍କୃତି, କଳା, ସ୍ଥାପତ୍ୟ ପ୍ରଭୃତି ବିଭିନ୍ନ ବିଭାଗରେ ଉତ୍କର୍ଷ ଲାଭ କରିଥିଲେ ! ଅଶୋକଙ୍କ ସମୟରେ କଳିଙ୍ଗ ବୀରଭୂମି ଭାବରେ ସୁବିଦିତ ହୋଇଥିଲା । କଳିଙ୍ଗର ନରପତି ଖାରବେଳ ନିଜର ଅସୀମ ଶକ୍ତି ଓ ଅପୂର୍ବ ବୀରତ୍ୱ ପ୍ରଭାବରେ ସମଗ୍ର ଭାରତରେ କଳିଙ୍ଗର ଗୌରବ ପତାକା ଉଡ଼ାଇ ଥିଲେ । କେଶରୀବଂଶଠାରୁ ଆରମ୍ଭକରି ସୂର୍ଯ୍ୟବଂଶର ଶେଷପର୍ଯ୍ୟନ୍ତ ଉତ୍କଳ ଇତିହାସରେ ଯଥାର୍ଥରେ ଏକ ଗୌରବମୟ କାଳ । ଏହି ଦୀର୍ଘ ଏକ ସହସ୍ର ବର୍ଷ ମଧ୍ୟରେ କଳିଙ୍ଗ ବିଭିନ୍ନ କ୍ଷେତ୍ରରେ ଉନ୍ନତିର ଚରମ ସୋପାନରେ ଉପନୀତ ହୋଇଥିଲା । କଳିଙ୍ଗ ସାମ୍ରାଜ୍ୟ ବହୁଦୂର ପ୍ରସାରିତ ହୋଇଥିଲା । କେତେକ କହନ୍ତି ଉତ୍କଳ ଦିନେ ଗଙ୍ଗାଠାରୁ

ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ମାତ୍ର ସୂର୍ଯ୍ୟବଂଶର ନରପତି କପିଳେନ୍ଦ୍ରଦେବଙ୍କ ସମୟରେ ଗୋଦାବରୀର ବହୁଦୂରବର୍ତ୍ତୀ କୃଷ୍ଣାନଦୀ ପର୍ଯ୍ୟନ୍ତ ଉତ୍କଳସାମ୍ରାଜ୍ୟ ବ୍ୟାପ୍ତ ହୋଇଥିଲା । ସ୍ୱାଧୀନ ଉତ୍କଳର ସୈନ୍ୟବାହିନୀ ଉତ୍ତର ଓ ଦକ୍ଷିଣରେ ବହୁ ରାଜ୍ୟ ଉତ୍କଳ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିଥିଲେ ।

ବାରବାଟୀ ଯଥାର୍ଥରେ ଉତ୍କଳର ଏହି ଅତୀତ ଗୌରବର ମୂକସାକ୍ଷୀ । ବାରବାଟୀକୁ କେନ୍ଦ୍ର କରି ଉତ୍କଳର ଉତ୍ଥାନ, ପତନ, ଉତ୍କର୍ଷ ଓ ବିଳୟ ସଂଘଟିତ ହୋଇଥିଲା । ଦେଶରେ ଯେତେବେଳେ ସୈନ୍ୟବାହିନୀ ବଳିଷ୍ଠ ହୁଅନ୍ତି କିମ୍ବା ଯେତେବେଳେ ବହିଃଶତ୍ରୁ ଆକ୍ରମଣର ଆଶଙ୍କା ଥାଏ, ସେତେବେଳେ ଦେଶକୁ ସୁରକ୍ଷିତ କରିବା ନିମନ୍ତେ ଦେଶରେ ସୁଦୃଢ଼ ଦୁର୍ଗସମୂହ ନିର୍ମିତ ହୋଇଥାଏ । ସ୍ୱାଧୀନ ଉତ୍କଳର ଗୌରବବଳେ ଗଙ୍ଗାଠାରୁ କୃଷ୍ଣାଯାଏ ସଦର୍ପେ ଉଡ୍ଡୀନ ହେଉଥିଲାବେଳେ ଉତ୍କଳୀୟ ସ୍ୱାଧୀନତା ଓ ସମୃଦ୍ଧିକୁ ଅକ୍ଷୁଣ୍ଣ ଓ ଉତ୍କଳକୁ ବହିଃଶତ୍ରୁମାନଙ୍କର ଆକ୍ରମଣରୁ ମୁକ୍ତ କରି ସୁଦୃଢ଼ ରଖିବା ନିମିତ୍ତ ଉତ୍କଳରେ ବଡ଼ାବାଟୀ, ଚୌଦ୍ୱାର, ବାରବାଟୀ, ସାରଙ୍ଗଗଡ଼ ଓ ଖୋର୍ଦ୍ଧା ପ୍ରଭୃତି ବହୁ ସ୍ଥାନରେ ସୁଦୃଢ଼ ଦୁର୍ଗସମୂହ ନିର୍ମିତ ହୋଇଥିଲା । ସ୍ୱାଧୀନ ଉତ୍କଳର ସେନା ଏହି ଦୁର୍ଗମାନଙ୍କରୁ ଅଭିଯାନକରି ଉତ୍କଳ ସାମ୍ରାଜ୍ୟକୁ ବହୁ ଦୂର ପ୍ରସାରିତ କରିଥିଲେ । ଉତ୍କଳୀୟ ବୀରମାନଙ୍କରଉଦ୍ଦାମ ଉତ୍ସାହସୂଚକ ବୀରବାଦ୍ୟରେ ଦିନେ ବିଭିନ୍ନ ଦୁର୍ଗ ପ୍ରତିଧ୍ୱନିତ ହେଉଥିଲା । ମାତ୍ର ଆଜି ସେହି ଦୁର୍ଗଗୁଡ଼ିକ ଭଗ୍ନ ଓ ବିକଳାଙ୍ଗ । ବାରବାଟୀର ଜୀର୍ଣ୍ଣ ଓ ଶୋଚନୀୟ ଅବସ୍ଥା ଅବଲୋକନକଲେ ଜାତିପ୍ରେମୀ ଯେ କୌଣସି ବ୍ୟକ୍ତିଙ୍କ ପ୍ରାଣରେ ଅସୀମ ଦୁଃଖ ଓ ଅକଥନୀୟ ବେଦନା ଜାତ ହୋଇଥାଏ ।

ବାରବାଟୀ ଦୁର୍ଗ କେବେ କାହାଦ୍ୱାରା ନିର୍ମିତ ହୋଇଥିଲା ଏହି ବିଷୟରେ ଇତିହାସ-ଲେଖକମାନଙ୍କ ମଧ୍ୟରେ ମତପାର୍ଥକ୍ୟ ପରିଦୃଷ୍ଟ ହୋଇଥାଏ । ଉତ୍କଳର ଏକାନ୍ତ ପ୍ରାଚୀନ ଇତିହାସ ମାଦଳାପାଞ୍ଜିରେ ଲିଖିତ ଅଛି ଯେ ଗଙ୍ଗବଂଶର ରାଜା ଅନଙ୍ଗଭୀମ-ଦେବ ଚୌଦୁଆର ଗଡ଼ରୁ ମହାନଦୀର ଦକ୍ଷିଣ ତୀର ଅଞ୍ଚଳକୁ ଆସୁଥିବାବେଳେ ବାରବାଟୀ ଗ୍ରାମରେ ଶୁଭ ଲକ୍ଷଣ ଦର୍ଶନକରି ସେଠାରେ ଏକ ନଅର ନିର୍ମାଣ କରିବାଲାଗି ଶୁଭ ପ୍ରଦାନ କଲେ । ଏ ସ୍ଥାନରେ ବାରବାଟୀ ଦୁର୍ଗ ନିର୍ମାଣ କରି ଏହାକୁ ରାଜଧାନୀ କଲେ । ଏହି ମତକୁ ଅଧିକାଂଶ ଐତିହାସିକ ସ୍ୱୀକାର କରନ୍ତି । କେଶରୀ ବଂଶୀୟ ନରପତି ନୃପକେଶରୀ କଟକ ନିକଟବର୍ତ୍ତୀ ବିଡ଼ାନାଶୀଠାରେ ଦୁର୍ଗ ନିର୍ମାଣକରି ତାହାକୁ ରାଜଧାନୀ କରିଥିଲେ । କେଶରୀବଂଶର ଶେଷ ରାଜା ସୁବର୍ଣ୍ଣ କେଶରୀ ଏହି ଦୁର୍ଗରେ ବାସ କରୁଥିବାର ଜଣାଯାଏ । ବାରବାଟୀ ବିଡ଼ାନାଶୀ ଅପେକ୍ଷା ଅଧିକ ସୁରକ୍ଷିତ ଓ ନିରାପଦ ସ୍ଥାନ ଥିବାରୁ ଅନଙ୍ଗଭୀମ ଦେବ ଏଠାରେ ଦୁର୍ଗ ନିର୍ମାଣ କରିବାକୁ ଇଚ୍ଛୁକ ହୋଇଥିବେ । ବାରବାଟୀର ଉତ୍ତରରେ ମହାନଦୀ ଓ ବିରୂପା ଏବଂ ଏହା ମଧ୍ୟରେ ଚୌଦୁଆରର ଦୃଢ଼ ଦୁର୍ଗ, ପଶ୍ଚିମରେ ମହାନଦୀ ଓ କାଠଯୋଡ଼ୀ—ଏହା ନିକଟରେ ବିଡ଼ାନାଶୀ ଗଡ଼, ଦକ୍ଷିଣରେ କାଟଯୋଡ଼ୀ ଓ ନିକଟରେ ସାରଙ୍ଗଗଡ଼, ଏହି ଅବସ୍ଥିତିକୁ ବିଚାରକଲେ ବାରବାଟୀ ବାସ୍ତବରେ ଚତୁର୍ଦ୍ଦିଗରେ ଗଭୀର ଓ ପ୍ରଖର ନଦୀ ତଥା ଦୃଢ଼ ଓ ଅନତିକ୍ରମ୍ୟ ଦୁର୍ଗମାନଙ୍କଦ୍ୱାରା ବେଷ୍ଟିତ ହୋଇଥିଲା । ଫଳତଃ ଏକାନ୍ତ ନିରାପଦ ସ୍ଥାନରେ ବାରବାଟୀର ଅବସ୍ଥାନ । ଆକବରଙ୍କ ଜନୈକ ମନ୍ତ୍ରୀ ଅବୁଲ୍‌ଫାଜଲ୍ ଆଇନ୍ ଆକବରୀ ନାମକ ଗ୍ରନ୍ଥ ରଚନା କରିଥିଲେ । ଅନଙ୍ଗଭୀମଦେବ ବାରବାଟୀ ଦୁର୍ଗ ନିର୍ମାଣ କରିଥିବା ବିଷୟ ସେଥିରେ ସେ

ସ୍ୱୀକାର କରିଅଛନ୍ତି । ଐତିହାସିକ କୃପାସିନ୍ଧୁ ମିଶ୍ର ନିଜର 'ବାରବାଟୀ' ନାମକ ପୁସ୍ତକରେ ବାରବାଟୀ ଦୁର୍ଗ ଦ୍ୱାଦଶ ଶତାବ୍ଦୀର ଶେଷ ଭାଗରେ ନିର୍ମିତ ହୋଇଥିବା ଖୁବ୍ ସମ୍ଭବ ବୋଲି ମତ ପ୍ରକାଶ କରିଛନ୍ତି ।

ଦୀର୍ଘ ଛଅଶହ ବର୍ଷ ପର୍ଯ୍ୟନ୍ତ ବାରବାଟୀ ଉତ୍କଳ-ଇତିହାସର ମୁଖ୍ୟ ଅଭିନୟ ମଞ୍ଚ ଥିଲା ବୋଲି କୁହାଯାଇ ପାରେ । ଉତ୍କଳର ସ୍ୱାଧୀନ ନରପତିମାନଙ୍କର ବାସସ୍ଥଳୀ ଭାବରେ, ଉତ୍କଳୀୟ ପରାକ୍ରାନ୍ତ ସ୍ୱାଧୀନ ପାଇକ ସୈନ୍ୟମାନଙ୍କର ବିଚରଣ ଭୂମି ରୂପରେ ବାରବାଟୀ ବିଖ୍ୟାତ ଥିଲା । ଉତ୍କଳର ରାଜ୍ୟବିସ୍ତାର, ସୁଶାସନ ପ୍ରଭୃତି ଏହି ବାରବାଟୀକୁ କେନ୍ଦ୍ର କରି ସମାହିତ ହେଉଥିଲା । ଭୌଗୋଳିକ ପରିସ୍ଥିତି ଦିଗରୁ ବାରବାଟୀ ଏକ ଦୃଢ଼ ସ୍ଥାନରେ ଅବସ୍ଥିତ ଥିବାରୁ ଶତ୍ରୁସୈନ୍ୟ ସହଜରେ ଏ ଦୁର୍ଗ ନିକଟରେ ପହଞ୍ଚିବାକୁ ସମର୍ଥ ହେଉ ନ ଥିଲେ । ଅନ୍ୟ ପକ୍ଷରେ ଉତ୍କଳୀୟ ସ୍ୱାଧୀନ ନରପତିମାନଙ୍କର ଉଦାରତାର ପରିଚୟ ପାଇ ସେମାନଙ୍କର ଆତିଥେୟତା ଓ ସାହାଯ୍ୟ ଲାଭ କରିବା ନିମନ୍ତେ ଅନ୍ୟ ପ୍ରଦେଶର ବହୁ ବିପନ୍ନ ଶାସକ ଉତ୍କଳୀୟ ନରପତିମାନଙ୍କର ଦ୍ୱାରସ୍ଥ ଓ ଶରଣାପନ୍ନ ହେଉଥିଲେ । ଅନଙ୍ଗଭୀମ ଦେବଙ୍କଦ୍ୱାରା ନିର୍ମିତ ହେବା ଦିନ ଠାରୁ ୧୮୦୩ରେ ଓଡ଼ିଶା ଇଂରେଜମାନଙ୍କ ଦ୍ୱାରା ଅଧିକୃତ ହେବା ପର୍ଯ୍ୟନ୍ତ ବାରବାଟୀ ଉତ୍କଳର ରାଜଧାନୀ ଥିଲା । ଅନଙ୍ଗଭୀମଙ୍କ ପରେ ଲାଙ୍ଗୁଳା ନରସିଂହ-ଦେବ ବାରବାଟୀ ଦୁର୍ଗରୁ ସସୈନ୍ୟରେ ଦାକ୍ଷିଣାତ୍ୟକୁ ଯାଇ ଆକର ବାହାମନୀ ରାଜ୍ୟକୁ ଅଧିକାର କରିଥିଲେ । ସୁଦୂର ଗୋଲ୍‌ବର୍ଗ ଓ ବିଦର ନରସିଂହ ଦେବଙ୍କଦ୍ୱାରା ଅଧିକୃତ ହୋଇଥିଲା । କପିଳେନ୍ଦ୍ର-ଦେବ ମଧ୍ୟ ଦାକ୍ଷିଣାତ୍ୟରେ କୃଷ୍ଣାନଦୀ ପର୍ଯ୍ୟନ୍ତ ନିଜର ରାଜ୍ୟ ବିସ୍ତାର କରିଥିଲେ । ପୁରୁଷୋତ୍ତମ ଦେବ ଉତ୍କଳର ସମ୍ମାନ ରକ୍ଷା କରିବା

ନିମନ୍ତେ ବାରବାଟୀରୁ ଉତ୍କଳ ସେନା ସହିତ ସୁଦୂର କାଞ୍ଚୀ ଅଭିମୁଖେ ଯୁଦ୍ଧଯାତ୍ରାକରି କାଞ୍ଚୀବିଜୟ କରିଥିଲେ । କାଞ୍ଚୀଜୟ କରି କାଞ୍ଚୀ-ରାଜକନ୍ୟା ପଦ୍ମାବତୀଙ୍କ ସହିତ ସାକ୍ଷୀଗୋପାଳ ଓ ଗଣେଶ ମୂର୍ତ୍ତିଦ୍ୱୟ କାଞ୍ଚୀରୁ ଘେନି ଆସିଥିଲେ । ସାକ୍ଷୀଗୋପାଳ ପ୍ରଥମରେ ବାରବାଟୀ ଦୁର୍ଗ ମଧ୍ୟରେ ପ୍ରତିଷ୍ଠିତ ହୋଇଥିଲେ । ପୁରୁଷୋତ୍ତମଦେବ ସେତୁବନ୍ଧଠାରୁ ଗଙ୍ଗାନଦୀ ପର୍ଯ୍ୟନ୍ତ ଭୂଭାଗ ଉପରେ ନିଜର ଅଖଣ୍ଡ ଆଧିପତ୍ୟ ପ୍ରତିଷ୍ଠା କରିଥିଲେ ଓ ବାରବାଟୀ ଉକ୍ତ ଗୌରବାବହ ଦିବସ ଗୁଡ଼ିକରେ ଉତ୍କଳର ରାଜଧାନୀ ଭାବରେ ପ୍ରସିଦ୍ଧ ଥିଲା ।

ମୁକୁନ୍ଦ ଦେବଙ୍କ ରାଜତ୍ୱ କାଳରେ ବାରବାଟୀ ଦୁର୍ଗର ବହୁଳ ଉନ୍ନତି ସାଧିତ ହୋଇଥିଲା । ତାଙ୍କର ଶାସନ କାଳରେ ପ୍ରବଳ ପ୍ରତାପୀ ଆକବର ଦିଲ୍ଲୀ ସିଂହାସନରେ ଅଧିଷ୍ଠିତ ଥିଲେ ମଧ୍ୟ ଓଡ଼ିଆ ସୈନ୍ୟ ମାନଙ୍କ ସ୍ୱାଧୀନତା ପ୍ରୀତି ଓ ଅପୂର୍ବ ପରାକ୍ରମରେ ଆଶଙ୍କାନ୍ୱିତ ହୋଇ ଉତ୍କଳକୁ ମୋଗଲ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିବାର ପ୍ରୟାସ କରି ନ ଥିଲେ । ବରଂ ମୁକୁନ୍ଦଦେବଙ୍କ ସହିତ ବନ୍ଧୁତାସୂତ୍ରରେ ଆବଦ୍ଧ ହୋଇ ନିଜର ରାଜନୈତିକ ବିଚକ୍ଷଣତାର ପରିଚୟ ଦେଇ ଥିଲେ । ଆକବରଙ୍କ ବନ୍ଧୁ ଭାବରେ ମୁକୁନ୍ଦଦେବ ମୋଗଲଶତ୍ରୁ ବଙ୍ଗନବାବଙ୍କ ବିରୁଦ୍ଧରେ ଯୁଦ୍ଧରେ ନିଯୁକ୍ତ ଥିଲାବେଳେ ବଙ୍ଗର ସେନାପତି କଳାପାହାଡ଼ ଗୋପନରେ ଆସି ବାରବାଟୀ ଦୁର୍ଗ ଅବରୋଧ କଲେ । ମୁକୁନ୍ଦଦେବ ଏହି ସମୟରେ ସାମନ୍ତରାଜା ରାମଚନ୍ଦ୍ରଙ୍କ ସହିତ ଯୁଦ୍ଧରେ ବ୍ୟାପୃତ ହୋଇ ମୃତ ହେବାରୁ କଳାପାହାଡ଼ଙ୍କ ଅତ୍ୟାଚାରରେ ଉତ୍କଳ ପ୍ରପୀଡ଼ିତ ହେଲା । ମୁକୁନ୍ଦଦେବଙ୍କ ରାଣୀଙ୍କଠାରୁ ବହୁ ଧନରତ୍ନ ପାଇ କଳାପାହାଡ଼ ବାରବାଟୀ ଦୁର୍ଗର ଅନିଷ୍ଟ ସାଧନକରି ନ ଥିଲେ ବୋଲି କିମ୍ବଦନ୍ତୀରୁ ଜଣାଯାଏ । ତଥାପି ଏହି ସମୟରୁ ଉତ୍କଳର ସ୍ୱାଧୀନତା-

ରବ ଅସ୍ତମିତ ହୋଇ ଗଲେ । ବାରବାଟୀ ଦୁର୍ଗ ବର୍ତ୍ତମାନ ବଙ୍ଗୀୟ ମୁସଲମାନ ଶାସକମାନଙ୍କର ଆମୋଦ ପ୍ରମୋଦ ସ୍ଥଳରେ ପରିଣତ ହେଲା । ମୁସଲମାନମାନଙ୍କଠାରୁ ଆକବର ବାରବାଟୀ ତଥା ଓଡ଼ିଶା ହସ୍ତଗତ କରିଥିଲେ । ୧୭୨୫ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ଶାସନକର୍ତ୍ତା ମହମ୍ମଦ ତକୀଖାଁଙ୍କ ଶାସନ କାଳରେ ଖୋର୍ଦ୍ଧାର ସ୍ୱାଧୀନ ନରପତି ରାମଚନ୍ଦ୍ର ଦେବ ବାରବାଟୀ ଦୁର୍ଗରେ ବନ୍ଦୀ ହୋଇଥିଲେ । ପରେ ପରେ ବାରବାଟୀ ମରହଟ୍ଟାମାନଙ୍କଦ୍ୱାରା ଅଧିକୃତ ହୋଇ ୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନଙ୍କ ହସ୍ତଗତ ହେଲା । ଫଳତଃ ବାରବାଟୀର ଇତିହାସ ଉତ୍କଳ-ଇତିହାସ ସହିତ ଘନିଷ୍ଠ ଭାବରେ ସମ୍ପୃକ୍ତ । ବାରବାଟୀହିଁ ଉତ୍କଳର ଅମୂଲ୍ୟ ସମ୍ପଦ, ଉତ୍କଳୀୟ ନରପତି-ମାନଙ୍କର ଗୌରବର ସାମଗ୍ରୀ ଥିଲା । ଉତ୍କଳର ରାଜନୈତିକ ଜ୍ୟୋତି ବାରବାଟୀ ଦ୍ୱାରା ଦୀପ୍ତ; ପୁଣି ବାରବାଟୀର ପତନରେ ଏହା ନିଷ୍ପ୍ରଭ ହୋଇ ଯାଇଥିଲା । ଫଳତଃ ବାରବାଟୀ ଉତ୍କଳର ଅଭ୍ୟୁଦୟ ଓ ଅବନତିର ଦୃଢ଼ସାକ୍ଷୀ କହିଲେ ଚଳେ ।

ବାରବାଟୀଦୁର୍ଗମଧ୍ୟରେ ଏକାନ୍ତ ଆଦରଣୀୟ ସ୍ଥାନ ଥିଲା ପ୍ରକାଣ୍ଡ ସୁରମ୍ୟ ନବତଳ-ପ୍ରାସାଦ । ଏହି ନବତଳ-ପ୍ରାସାଦ ମୁକୁନ୍ଦଦେବଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ଏହାର ନିର୍ମାଣରେ ଧଳା ମୁଗୁନି ପଥର ବ୍ୟବହୃତ ହୋଇଥିଲା । ନବତଳ ପ୍ରାସାଦର ପ୍ରଥମ ତଳରେ ହସ୍ତୀ ଓ ଘୋଡ଼ା ପ୍ରଭୃତି ଗୃହପାଳିତ ପଶୁ ରହୁଥିଲେ । ଦ୍ୱିତୀୟ ତଳରେ ଯୁଦ୍ଧ ସରଞ୍ଜାମମାନ ଗଚ୍ଛିତ ଥିଲା । ଏହିଠାରେ ଦୁର୍ଗରକ୍ଷକ ପ୍ରହରୀମାନେ ବାସ କରୁଥିଲେ । ତୃତୀୟ ତଳ ରାଜାଙ୍କର ଅନୁଚର ଓ ଅଙ୍ଗରକ୍ଷମାନଙ୍କ ନିମନ୍ତେ ଉଦ୍ଦିଷ୍ଟ ଥିଲା । ବିଭିନ୍ନ ଶ୍ରେଣୀର ଶିଳ୍ପୀ ଓ କାରିଗରମାନେ ଚତୁର୍ଥ ତଳରେ ବାସ କରୁଥିଲେ । ପଞ୍ଚମ ତଳ ରନ୍ଧନଶାଳା ନିମନ୍ତେ

ବ୍ୟବହୃତ ହେଉଥିଲା । ଷଷ୍ଠ ତଳରେ ରାଜା ଶାସନ ଭଦ୍ରବ୍ୟକ୍ତି ଓ ଅଗନ୍ତୁକମାନଙ୍କ ସହିତ ସାକ୍ଷାତ ଓ କଥୋପକଥନ କରୁଥିଲେ । ରାଜାଙ୍କର ପାକଶାଳ ଓ ଗୋପନ କାର୍ଯ୍ୟ ନିମନ୍ତେ ସପ୍ତମ ତଳ ଉଦ୍ଦିଷ୍ଟ ଥିଲା । ଅଷ୍ଟମ ତଳରେ ଅନ୍ତଃପୁରର ମହିଳାମାନେ ରହୁଥିଲେ ଓ ନବମ ତଳ ରାଜାଙ୍କର ଶୟନାଗାର ଭାବରେ ବ୍ୟବହୃତ ହେଉଥିଲା । କେତେକ କହନ୍ତି ବାରବାଟୀ ଦୁର୍ଗର ପ୍ରାସାଦ ନଅମହଲା ନ ଥିଲା, ତାହା ନଅ ପରସ୍ତ ହୋଇଥିବା ସମ୍ଭବ । ମାତ୍ର ଏହା ଭ୍ରମାତ୍ମକ ।

ଆଜି ବାରବାଟୀର ଭଗ୍ନ, ଜୀର୍ଣ୍ଣ ଓ ଶୋଚନୀୟ ଅବସ୍ଥା ସନ୍ଦର୍ଶନ କଲେ ଗୌରବମୟ ଦିବସଗୁଡିକରେ ଏହାର ଅବସ୍ଥା



ବାରବାଟୀ ଦୁର୍ଗଦ୍ୱାର

କ୍ଷପର ଥିଲା, ତାହା ସହଜରେ କଳ୍ପନା କରି ହୁଏନାହିଁ । ଅତୀତର ଗୌରବଦୃପ୍ତ ବାରବାଟୀ ଆଜି ବିଧ୍ୱସ୍ତ ଓ ଭଗ୍ନାବଶେଷ ମାତ୍ର । ବର୍ତ୍ତମାନ ଦୁର୍ଗର ଚତୁଃପାଖରେ କେବଳ ଗୋଟିଏ ପରିଖା, ପୂର୍ବ ପାଖରେ ପ୍ରବେଶ ଦ୍ୱାର, ଗୋଟିଏ ପୁଷ୍କରିଣୀ ଓ କୂରକୁ ଏକ ବୃହତ୍ ଭଗ୍ନସ୍ତୂପ ପରିଦୃଷ୍ଟ ହୋଇଥାଏ । ବର୍ତ୍ତମାନ ଏହି ଦୁର୍ଗର ପରିସୀମା-ମଧ୍ୟରେ ନିଖିଳ ଭାରତ ବେତାର କେନ୍ଦ୍ରର ଏକ ବିଭାଗ ଓ ଓଡ଼ିଶାର ପ୍ରଧାନ ମନ୍ତ୍ରୀଙ୍କ ବାସଭବନ ପ୍ରଭୃତି କେତେକ ନୂତନ ହର୍ମ୍ୟ ନିର୍ମିତ । ଅତୀତରେ ବାରବାଟୀ ଦୁର୍ଗରେ ଦୁଇଟି ପ୍ରାଚୀର ଥିଲା, ଗୋଟିଏ ବାହାରେ ଓ ଅନ୍ୟଟି ଭିତରେ । ଭିତର ପ୍ରାଚୀର ମଧ୍ୟସ୍ଥ କ୍ଷେତ୍ରଟି ଆୟତାକାର ଥିଲା । ବାହାର ପ୍ରାଚୀରର ପୂର୍ବ ଭାଗରେ ଏକ ପ୍ରକାଣ୍ଡ ପ୍ରବେଶପଥ ଥିଲା । ଏହି ପଥ ବର୍ତ୍ତମାନ ବିଦ୍ୟମାନ । ଦୁର୍ଗର ବହିର୍ଦ୍ଦେଶରେ ଯେଉଁ ବୃହତ୍ ପରିଖା ଥିଲା ତାହାର ଅବଶେଷ ବର୍ତ୍ତମାନ ମଧ୍ୟ ରହିଛି । ଦୁର୍ଗମଧ୍ୟରେ ରାଜମହିଳାମାନଙ୍କର ସ୍ନାନ ନିମନ୍ତେ ଖୋଦିତ ହୋଇଥିବା ପୁଷ୍କରିଣୀର ଅବଶେଷ ବର୍ତ୍ତମାନ ପରିଦୃଷ୍ଟ ହୋଇଥାଏ । କଟକ ସହରର ଅଧିଷ୍ଠାତ୍ରୀଦେବୀଭାବରେ ପୂଜିତ କଟକଚଣ୍ଡୀ ପ୍ରଥମରେ ବାରବାଟୀ ଦୁର୍ଗ ମଧ୍ୟରେ ପ୍ରତିଷ୍ଠିତ ଥିଲେ ବୋଲି କେତେକ କହନ୍ତି । ନବତଳ ପ୍ରାସାଦର ଦକ୍ଷିଣ ଦିଗରେ ଗୋଟିଏ ହିନ୍ଦୁ ମନ୍ଦିର ଥିଲା ଓ ସାକ୍ଷୀଗୋପାଳ କାଞ୍ଚିରୁ ଅଣାତ ହୋଇ ଏହିଠାରେ ଅବସ୍ଥାପିତ ହୋଇଥିଲେ ।

ବାରବାଟୀ ଦୁର୍ଗର ଗୌରବଦୀପ୍ତ ଅବସ୍ଥାରେ ଉତ୍କଳ ବିଭିନ୍ନ କ୍ଷେତ୍ରରେ ଉନ୍ନତ ଥିଲା । ସମଗ୍ର ଉତ୍କଳରେ ଦେଶରକ୍ଷା ଓ ରାଜ୍ୟଜୟ କରିବା ନିମନ୍ତେ ଗ୍ରାମେ ଗ୍ରାମେ ସୁଶିକ୍ଷିତ ସୈନ୍ୟ ଥିଲେ । ଶାନ୍ତି ସମୟରେ କୃଷିକାର୍ଯ୍ୟ ସମ୍ପାଦନ କରି ଦେଶର ଉତ୍ପାଦନ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ଅବସର ସମୟରେ ଅସିଚାଳନା କରି ଜାତୀୟ ଆହ୍ୱାନ

ମୁହୂର୍ତ୍ତରେ ସେମାନେ ସ୍ୱଦେଶର ସମ୍ମାନ ରକ୍ଷା ନିମନ୍ତେ ଯୁଦ୍ଧକ୍ଷେତ୍ରରେ ଯୋଗ ଦେବାଲାଗି ନିଜକୁ ପ୍ରସ୍ତୁତ କରୁଥିଲେ । ଉତ୍କଳର ବିଭିନ୍ନ ଅଞ୍ଚଳରେ ବହୁ ଦୁର୍ଗ ଥିଲା ଓ ବାରବାଟୀ ଏହି ଦୁର୍ଗଗୁଡ଼ିକର ମୁକୁଟମଣି ସଦୃଶ ଶୋଭିତ ଥିଲା । ଏହି ସମୟରେ ଗଜପତିଙ୍କ ଅଧୀନରେ ଉତ୍କଳରେ ଶତାଧିକ ଦୁର୍ଗ ଥିବାର ଜଣାଯାଏ । ଉକ୍ତ ଦୁର୍ଗ ଗୁଡ଼ିକ ସୁଦୃଢ଼ ଓ ସୁରକ୍ଷିତ ଥିଲା ଓ ଏଗୁଡ଼ିକରେ ନିୟମିତ ଭାବରେ ସାମରିକ କୌଶଳ ସମ୍ବନ୍ଧରେ ଶିକ୍ଷା ପ୍ରଦତ୍ତ ହେଉଥିଲା ।

ଓଡ଼ିଶା ଇତିହାସର ସମ୍ପଦ ବିପଦ, ଉତ୍ଥାନ ପତନ, ସନ୍ଧି ବିଗ୍ରହ, ସ୍ୱାଧୀନତା ଓ ପରାଧୀନତାର ଜୀବନ୍ତ ସାକ୍ଷୀ ସ୍ୱରୂପ ବାରବାଟୀ ଦଣ୍ଡାୟମାନ ଥିଲା । ମୁସଲମାନ ଓ ମରହଟ୍ଟାମାନେ ଓଡ଼ିଶା ଅଧିକାର କରିଥିଲେ ସୁଦ୍ଧା ସେମାନଙ୍କଦ୍ୱାରା ଉତ୍କଳର ଆଦରର ସମ୍ପତ୍ତି ବାରବାଟୀଦୁର୍ଗ ବିନଷ୍ଟ ହୋଇ ନ ଥିଲା । ୧୮୦୩ରେ ମରହଟ୍ଟାମାନଙ୍କ ସହିତ ସଂଘର୍ଷହୋଇ ବାରବାଟୀଦୁର୍ଗ ଇଂରେଜମାନଙ୍କଦ୍ୱାରା ଅଧିକୃତ ହେଲା । ଏହି ସଙ୍ଘର୍ଷ ସମୟରେ ଇଂରେଜ ମାନଙ୍କର ତୋପ ଗୁଳିର ଅଜସ୍ର ବର୍ଷଣରେ ଦୁର୍ଗ ଭଗ୍ନ ହୋଇଥିଲା । ଐତିହାସିକ ଷ୍ଟୁଲିଙ୍ଗ ସାହେବ କହନ୍ତି, ଇଂରେଜ ଶାସନକାଳ ମଧ୍ୟରେ ଉତ୍କଳର ଏ ଅଭେଦ୍ୟ ଦୁର୍ଗ ଓ ସୁରମ୍ୟ ପ୍ରାସାଦ ଭଗ୍ନ ହୋଇଅଛି । ବାରବାଟୀ ଦୁର୍ଗର ପ୍ରସ୍ତର ସାହାଯ୍ୟରେ କଟକର ରେଲଷ୍ଟେସନ ଓ କେତେକ ରାସ୍ତା ନିର୍ମିତ ହୋଇଥିବାର ଶୁଣାଯାଏ ।

ଆଜି ବାରବାଟୀ ଦୁର୍ଗ ନାହିଁ, ବାରବାଟୀର ନବତଳ-ପ୍ରାସାଦ ଆଜି ଧୂଳିସାତ୍ । ମାତ୍ର ବାରବାଟୀର ପ୍ରତି ଧୂଳିକଣାରେ ମିଶିତ ରହିଛି ଶତ ଶତ ସ୍ୱାଧୀନ ଉତ୍କଳୀୟ ବୀରମାନଙ୍କର ରକ୍ତ ଓ ମାଂସ । ଏହି ଉତ୍କଳୀୟ ବୀରମାନେ ନିଜର ଜୀବନ ବିନିମୟରେ

ମଧ୍ୟ ଦେଶ ଓ ଜାତିର ସମ୍ମାନ ରକ୍ଷା ଲାଗି ବ୍ରତୀ ହୋଇଥିଲେ । ଫଳତଃ ସେମାନଙ୍କ ସ୍ପର୍ଶରେ ବାରବାଟୀର ପ୍ରତି ରେଣୁ ଏକାନ୍ତ ପବିତ୍ର ଓ ମହତ୍ତ୍ୱମୟ । ଅବନତ ଓ ଅନୁନ୍ନତ ଉତ୍କଳୀୟଙ୍କ ପ୍ରାଣରେ ଜାତୀୟ ଚେତନା ସଞ୍ଚାର କରିବାକୁ ବାରବାଟୀ ଯଥାର୍ଥରେ କ୍ଷମ । ଉତ୍କଳର ପୂର୍ବ ଗୌରବରେ ପବିତ୍ର ହୋଇଥିବା ବାରବାଟୀଠାରୁ ପ୍ରେରଣା ଲାଭକରି ଦେଶର ଅତୀତ ଗୌରବ ଓ ସମୃଦ୍ଧିର ପୁନରୁଦ୍ଧାର କରିବା ପ୍ରତ୍ୟେକ ଉତ୍କଳୀୟଙ୍କର କାମ୍ୟ ।

ପ୍ରଶ୍ନ—୧ । 'ଦୀର୍ଘ ଛଅଶହ ବର୍ଷ ପର୍ଯ୍ୟନ୍ତ ବାରବାଟୀ ଦୁର୍ଗ ଉତ୍କଳ-ଇତିହାସର ମୁଖ୍ୟ ଅଭିନୟ ମଞ୍ଚ ଥିଲା ।' ଏହି ଉକ୍ତିର ସାର୍ଥକତା ପ୍ରତିପାଦନ କର ।

୨ । ଉତ୍କଳର ଅତୀତଗୌରବର ସାକ୍ଷୀ ବାରବାଟୀ-ଦୁର୍ଗର ଏକ ବର୍ଣ୍ଣନା ପ୍ରଦାନକର ।

୩ । ଦେଶପ୍ରେମୀଙ୍କ ନିକଟରେ ବାରବାଟୀ ଏତେ ମୂଲ୍ୟବାନ୍ ଓ ପବିତ୍ର ଭାବରେ ଗୃହୀତ ହେବାର କାରଣ କଅଣ ?

୪ । ପଦ ପରିବର୍ତ୍ତନ କର :—ପରାକ୍ରାନ୍ତ, ଅବରୋଧ, ବ୍ୟାପୃତ, ଉତ୍‌ଥାନ, ଖୋଦିତ, ପତନ ଓ ଧ୍ୱସ୍ତ ।

୫ । ଶବ୍ଦମାନଙ୍କର ମୌଳିକ ଅର୍ଥ ନିରୂପଣକର । ପୂତ, ଉତ୍କର୍ଷ, ଚରମ, ଉଦ୍ଧାମ, ଅକଥନୀୟ, ହର୍ମ୍ୟ, ଅଭିନୟ ଓ ଅନତିକ୍ରମ୍ୟ ।

———

## ଭକ୍ତକବି ମଧୁସୂଦନ

ଊନବିଂଶ ଶତାବ୍ଦୀର ଶେଷ ଅଂଶରୁ ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗର ସୂତ୍ରପାତ ହେଲା । ଯଥାର୍ଥରେ ରାଧାନାଥ ଏହି ନବୀନ ଯୁଗର ସ୍ରଷ୍ଟା । ରାଧାନାଥଙ୍କ ସଙ୍ଗକୁ ମଧୁସୂଦନଙ୍କ ସାହିତ୍ୟ-ସାଧନା ମଧ୍ୟ କମ୍ ପ୍ରସଂଶାଜନକ ନୁହେଁ । ରାଧାନାଥ ଥିଲେ ଏକାନ୍ତଭାବେ କାବ୍ୟ ଲେଖକ; କିନ୍ତୁ ଗୀତି-କବିତାର କବି ଭାବରେ ମଧୁସୂଦନ ପ୍ରସିଦ୍ଧ ଥିଲେ । ଓଡ଼ିଆ ପାଠ୍ୟ ପୁସ୍ତକ ରଚନା ଦ୍ୱାରା ସେ ଉତ୍କଳରେ ସୁପରିଚିତ । ବିଦ୍ୟାର୍ଥୀମାନେ ଅକ୍ଷରଶିକ୍ଷାଠାରୁ ଆରମ୍ଭ କରି ଉଚ୍ଚ ଶିକ୍ଷା ଲାଭ ପର୍ଯ୍ୟନ୍ତ ତାଙ୍କର ବର୍ଣ୍ଣବୋଧ, କବିତା ଓ ପ୍ରବନ୍ଧ-ଗୁଚ୍ଛକ ଅଧ୍ୟୟନ କରିଥାଆନ୍ତି ।

୧୮୫୩ ଖ୍ରୀଷ୍ଟାବ୍ଦରେ ଶ୍ରୀପଞ୍ଚମୀ ଦିନ ମଧୁସୂଦନଙ୍କର ଜନ୍ମ । ଶୀତଋତୁର ଅବସାନ ପରେ ମଧୁମୟ ବସନ୍ତର ପ୍ରାରମ୍ଭରେ ହୃଷ୍ଟ ମନରେ ଆମ୍ଭେ ଶ୍ରୀପଞ୍ଚମୀଦିନ ବିଦ୍ୟାଧିଷ୍ଠାତ୍ରୀ ଦେବୀ ସରସ୍ୱତୀଙ୍କର ପୂଜା କରିଥାଉ । ଏହି ଶୁଭ ଦିବସରେ ମଧୁସୂଦନ ମରହଟ୍ଟା ବଂଶରେ ଜାତ ହୋଇଥିଲେ । ତାଙ୍କ ପିତାଙ୍କ ନାମ ଭଗିରଥୀ ରାଓ ଓ ମାତାଙ୍କ ନାମ ଅମ୍ବିକା ଦେବୀ । ମଧୁସୂଦନଙ୍କର ପାଞ୍ଚବର୍ଷ ବୟସ ବେଳେ ତାଙ୍କ ମାତାଙ୍କର ମୃତ୍ୟୁ ହୋଇଥିଲା । ମାତାଙ୍କର ପରଲୋକ ଗମନ ପରେ ସେ ମାତୁଳାଳୟରେ ଲାଳିତ ପାଳିତ ହେଲେ । କିନ୍ତୁ ଏଠାରେ ତାଙ୍କୁ ବଡ଼ ଅନାଦରରେ ସମୟ ଅତିବାହିତ କରିବାକୁ ପଡ଼ିଥିଲା । ତାଙ୍କର ଶାରୀରିକ ତତ୍ତ୍ୱାବଧାନର ଅଭାବରୁ ସେ ବାଲ୍ୟକାଳରେ ଅତ୍ୟନ୍ତ ରୁଗ୍ଣ ଥିଲେ । ମଧୁସୂଦନଙ୍କର ପିତା ଏହି ସମୟରେ ପୁରୀଜିଲ୍ଲାର ଗୋପ ଠାରେ ପୁଲିସ ବିଭାଗରେ କାର୍ଯ୍ୟ କରୁଥିଲେ । ମାତୁଳାଳୟରୁ ସେ ସ୍ୱୀୟ କନିଷ୍ଠ ଭ୍ରାତାଙ୍କ ସହ ସେଠାକୁ ଗମନ କରିଥିଲେ ।

ପିତାଙ୍କର ତତ୍ତ୍ୱାବଧାନରେ ଥାଇ ପ୍ରଥମେ ଗୋଟିଏ ଗ୍ରାମ୍ୟଶାଳୀରେ ତାଙ୍କର ବିଦ୍ୟାରମ୍ଭ ହେଲା । ବାଲ୍ୟାବସ୍ଥାରୁ ମଧୁସୂଦନ ଏକାନ୍ତ ବୁଦ୍ଧିମାନ୍ ଓ ସ୍ମରଣଶକ୍ତିସମ୍ପନ୍ନ ଥିବାର ଜଣା ପଡ଼ିଥିଲା । ଗ୍ରାମ୍ୟଶାଳୀ ଶିକ୍ଷାପରେ ପିତାଙ୍କର ସ୍ଥାନାନ୍ତର ହେତୁ ସେ ଗୋପରୁ ଭୁବନେଶ୍ୱରକୁ ଆସିଲେ । ଭୁବନେଶ୍ୱରର ମଧ୍ୟଇଂରାଜୀ ବିଦ୍ୟାଳୟରେ ଅଧିନାୟକ ସ୍ୱିତରେ ସେ ଶିକ୍ଷାଲାଭ କଲେ । ଏଠାରେ ନିଜର ଗଭୀର ଅଧ୍ୟୟନ ଫଳରେ ମଧୁସୂଦନ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କଲେ । ପରେ ସୁବିଧା ମିଳିବାରୁ ପୁରୀର ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଉଚ୍ଚ ଶିକ୍ଷା ନିମନ୍ତେ ସେ ଯୋଗ ଦେଲେ । ଉକ୍ତ ଜିଲ୍ଲା ସ୍କୁଲରେ ସେ ଶ୍ରେଷ୍ଠ ଛାତ୍ର ଥିଲେ ଓ ପ୍ରତ୍ୟେକ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ଫଳତଃ ପ୍ରତିବର୍ଷ ବହୁ ପାଠ୍ୟପୁସ୍ତକ ପୁରସ୍କାର ପାଇ ଆର୍ଥିକ ଦୈନ୍ୟରୁ କେତେକାଂଶରେ ନିସ୍ତାର ଲାଭ କରୁଥିଲେ ।

ମଧୁସୂଦନ ପୁରୀ ଜିଲ୍ଲା ସ୍କୁଲରେ ଅଧ୍ୟୟନ କରୁଥିଲାବେଳେ ଓଡ଼ିଶାରେ 'ନଅଙ୍କ' ଦୁର୍ଭିକ୍ଷ ପଡ଼ିଥିଲା । ଆଜି ସୁଦ୍ଧା ନଅଙ୍କ ଦୁର୍ଭିକ୍ଷ ନାମ ଶ୍ରବଣ ଓ ସ୍ମରଣରେ ପ୍ରତି ଓଡ଼ିଆ ମନରେ ଭୀତି-ସଞ୍ଚାର ହୋଇଥାଏ । ମଧୁସୂଦନ ଏହି ବିପତ୍ତି ସମୟରେ ଦଳେ ସ୍ୱେଚ୍ଛା ସେବକଙ୍କର ଅଗ୍ରଣୀ ହୋଇ ଦରିଦ୍ର ବୁଭୁକ୍ଷୁ ବହୁ ନରକଙ୍କାଳଙ୍କର ସେବା-ବ୍ରତକୁ ଆଦର ସହକାରେ ଗ୍ରହଣ କରି ନେଇଥିଲେ ।

ରାଧାନାଥ ଏହି ସମୟରେ ପୁରୀଜିଲ୍ଲାସ୍କୁଲର ଦ୍ୱିତୀୟ ଶିକ୍ଷକ ରୂପେ କାର୍ଯ୍ୟଭାର ଗ୍ରହଣ କଲେ । ମଧୁସୂଦନଙ୍କ ପ୍ରତିଭା ଓ ଧୀଶକ୍ତି ସନ୍ଦର୍ଶନରେ ଗୁଣଜ୍ଞ ରାଧାନାଥ ମୁଗ୍ଧ ହେବା ସ୍ୱାଭାବିକ । 'ଗୁଣୀ ଗୁଣଂ ବେତ୍ତି' ରାଧାନାଥଙ୍କ ଠାରେ ଏହି ଉକ୍ତି ସାର୍ଥକ । ରାଧାନାଥଙ୍କ ସାହଚର୍ଯ୍ୟ ଲାଭ କରି ମଧୁସୂଦନ ଆପଣାକୁ ପରମ ଭାଗ୍ୟବାନ୍ ଓ କୃତକୃତ୍ୟ ମନେକଲେ । ଉପଯୁକ୍ତ ଗୁରୁଙ୍କ ସହ ଉପଯୁକ୍ତ ଶିଷ୍ୟଙ୍କର

ଏହି ମିଳନକୁ କେତେକେ ମଣିକାଞ୍ଚନ ସଂଯୋଗ ନାମରେ ଅଭିହିତ କରିଥାଆନ୍ତି । ବାସ୍ତବରେ ଏହି ସମନ୍ୱୟବୁଦ୍ଧି ଓଡ଼ିଆ ସାହିତ୍ୟରେ ଏକ ଅଭୂତପୂର୍ବ ପରିବର୍ତ୍ତନ ଆଣି ଦେଇଥିଲା । ଗୁରୁ ଓ ଶିଷ୍ୟ ଉଭୟଙ୍କ ମଧ୍ୟରେ ପାଠ୍ୟ ବିଷୟ ଛଡ଼ା ସାହିତ୍ୟ ଓ ନାନା ବିଷୟରେ ଆଲୋଚନା ମଧ୍ୟ ହେଉଥିଲା । ରାଧାନାଥ ଯଥାର୍ଥରେ ମଧୁସୂଦନଙ୍କର ସାହିତ୍ୟିକ ଜୀବନର ପଥପ୍ରଦର୍ଶକ ଓ ଗୁରୁ ଥିଲେ । ବୟସରେ ସେ ମଧୁସୂଦନଙ୍କ ଅପେକ୍ଷା ସାମାନ୍ୟ ଜ୍ୟେଷ୍ଠ ଥିଲେ ହୁଡ଼ା ମଧୁସୂଦନ ତାଙ୍କୁ ଅତ୍ୟନ୍ତ ଭକ୍ତି ପ୍ରଦର୍ଶନ କରୁଥିଲେ ।

ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ମଧୁସୂଦନ କଟକ କଲେଜରେ ନାମ ଲେଖାଇଲେ । ପ୍ରବୀଣ ଅଧ୍ୟାପକ ଓ ବିଶିଷ୍ଟ ସହାଧ୍ୟାୟୀ ମାନଙ୍କ ସଂସ୍ପର୍ଶରେ ଆସି ସେ ନିଜର ଜ୍ଞାନଭଣ୍ଡାର ବୃଦ୍ଧି କରିବା ସଙ୍ଗେ ସଙ୍ଗେ ସମସ୍ତଙ୍କର ପ୍ରଶଂସାର ପାତ୍ର ହେଲେ । ଦୁଇବର୍ଷପରେ ସେ ଏଫ୍. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ସେତେବେଳକାର ଏଫ୍. ଏ. ବର୍ତ୍ତମାନର ଆଇ. ଏ. ଶିକ୍ଷାର ନାମାନ୍ତର ମାତ୍ର । କଟକରେ ପଢୁଥିଲା ବେଳେ ପ୍ୟାରୀମୋହନଙ୍କ ସହିତ ମଧୁସୂଦନଙ୍କର ବନ୍ଧୁତା ସ୍ଥାପିତ ହୋଇଥିଲା । ପ୍ୟାରୀମୋହନ ଅତ୍ୟନ୍ତ ସ୍ପଷ୍ଟବାଦୀ ଓ ନିର୍ଭୀକ ଥିଲେ । ତାଙ୍କର ଚରିତ୍ର ମଧୁସୂଦନଙ୍କ ଉପରେ ବିଶେଷ ପ୍ରଭାବ ପକାଇଥିଲା । ସତ୍ୟ ଓ ନ୍ୟାୟର ଉପାସନା ନିମନ୍ତେ ଉଭୟେ ବ୍ରାହ୍ମ ଧର୍ମ ଗ୍ରହଣ କରିଥିଲେ । ପ୍ୟାରୀମୋହନଙ୍କ ଦ୍ୱାରା ପ୍ରତିଷ୍ଠିତ ପ୍ୟାରୀମୋହନ ଏକାଡେମୀ ଓ ମଧୁସୂଦନଙ୍କ ଦ୍ୱାରା ସ୍ଥାପିତ ଭକ୍ତମଧୁ ବିଦ୍ୟାପୀଠ କଟକର ଦୁଇଟି ପ୍ରସିଦ୍ଧ ଉଚ୍ଚ ବିଦ୍ୟାଳୟ ।

କଲେଜ ଶିକ୍ଷା ଶେଷ କରି ମଧୁସୂଦନ ପୁରୀ ଜିଲ୍ଲାସ୍କୁଲରେ ଶିକ୍ଷକ ରୂପେ ନିଯୁକ୍ତ ହେଲେ । ଏଠାରେ ଧର୍ମ ଆଲୋଚନା ଓ

ସାହିତ୍ୟଚର୍ଚ୍ଚା ନିମନ୍ତେ ତାଙ୍କୁ ବିଶେଷ ସୁବିଧା ମିଳିଥିଲା । ଏହାପରେ ଯାଜପୁର ମଧ୍ୟ ଇଂରାଜୀ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ରୂପେ ସେ କିଛି କାଳ କାର୍ଯ୍ୟ କଲେ । ଯାଜପୁରରୁ ଆସି ବାଲେଶ୍ୱର ଜିଲ୍ଲାସ୍କୁଲର ଦ୍ୱିତୀୟ ଶିକ୍ଷକ ଭାବରେ ତାଙ୍କୁ କାର୍ଯ୍ୟ ଗ୍ରହଣ କରିବାକୁ ପଡ଼ିଥିଲା । ତତ୍କାଳୀନ ସାହିତ୍ୟଚର୍ଚ୍ଚାର କେନ୍ଦ୍ର ବାଲେଶ୍ୱରରେ ତାଙ୍କର ସାହିତ୍ୟିକ ଜୀବନର ଯଥାର୍ଥ ବିକାଶ ସାଧିତ ହୋଇଥିଲା । ଫକୀରମୋହନ ସେନାପତି ଓ ରାଧାନାଥଙ୍କ ସହ ସେ ଏଠାରେ ମିଳିତ ହୋଇ ସାହିତ୍ୟ ସେବାରେ ବ୍ରତୀ ହୋଇଥିଲେ । ଏହି ତିନିଜଣଙ୍କର ମିଳନରେ ବାଲେଶ୍ୱରରୁ 'ଉତ୍କଳ ଦର୍ପଣ' ନାମକ ପତ୍ରିକା ପ୍ରକାଶିତ ହେଲା ।

ସେ ସମୟରେ ଓଡ଼ିଆରେ ପଢ଼ା ହେବା ନିମନ୍ତେ ପାଠ୍ୟ ପୁସ୍ତକର ଏକାନ୍ତ ଅଭାବ ଥିଲା । ଏହି ଅଭାବର ଦୂରୀକରଣ ନିମନ୍ତେ ପାଠ୍ୟ ପୁସ୍ତକର ପ୍ରଣୟନ ଲାଗି ସରକାରଙ୍କ ପକ୍ଷରୁ ପୁରସ୍କାର ଘୋଷିତ ହେବାରୁ ମଧୁସୂଦନ ପ୍ରବନ୍ଧମାଳା ଓ ବିଭିନ୍ନ କବିତାବଳୀ ରଚନା କଲେ । ଏହି ପ୍ରବନ୍ଧ ଓ କବିତା ଗୁଡ଼ିକ ବହୁ ବର୍ଷ ପର୍ଯ୍ୟନ୍ତ ଉଚ୍ଚପ୍ରାଥମିକ ଓ ମଧ୍ୟଇଂରାଜୀ ବିଦ୍ୟାଳୟର ଓଡ଼ିଆ ସାହିତ୍ୟ ପାଠ୍ୟପୁସ୍ତକ ରୂପେ ପ୍ରଚଳିତ ହୋଇଥିଲା ।

କେତେ ବର୍ଷପରେ ମଧୁସୂଦନ କଟକ କଲେଜିଏଟ ସ୍କୁଲର ଶିକ୍ଷକ ହେଲେ । ତାଙ୍କର ପାଣ୍ଡିତ୍ୟ ଓ ଶିକ୍ଷାଦାନର ଦକ୍ଷତା ଦେଖି ଛାତ୍ର ଓ ସାଧାରଣ ସମସ୍ତେ ମୁଗ୍ଧ ହୋଇ ଯାଉଥିଲେ । ଅଳ୍ପ କାଳ ମଧ୍ୟରେ ସେ ଏଠାରେ ଦ୍ୱିତୀୟ ଶିକ୍ଷକ ପଦକୁ ଉନ୍ନୀତ ହେଲେ । କଲେଜିଏଟରେ ତିନିବର୍ଷ ରହିବାପରେ କଟକ ଜିଲ୍ଲା ସ୍କୁଲ ସମୂହର ସହକାରୀ ପରିଦର୍ଶକ ପଦ ସେ ଗ୍ରହଣ କଲେ । ଗ୍ରାମ୍ୟ ବିଦ୍ୟାଳୟ ପରିଦର୍ଶନ କାର୍ଯ୍ୟୋପଲକ୍ଷରେ ତାଙ୍କୁ ବିଭିନ୍ନ ସ୍ଥାନ ଭ୍ରମଣ କରିବାକୁ

ପଢୁଥିଲେ । ସେଠାରେ ସେ ଛାତ୍ରମାନଙ୍କର କେବଳ ଅଧ୍ୟୟନ ପରିଦର୍ଶନ ନ କରି ସେମାନଙ୍କର ସ୍ୱାସ୍ଥ୍ୟ ଓ ଅନ୍ୟାନ୍ୟ ବିଷୟରେ ମଧ୍ୟ ଅନୁସନ୍ଧାନ କରୁଥିଲେ । ଶିକ୍ଷକମାନଙ୍କୁ ଶିକ୍ଷାଦାନ ବିଷୟରେ ଅଭିଜ୍ଞ କରିବା ନିମନ୍ତେ ସେ 'ଅବଧାନ ବନ୍ଧୁ' ନାମକ ଗ୍ରନ୍ଥ ପୁସ୍ତକ ପ୍ରଣୟନ କରିଥିଲେ ଓ 'ଶିକ୍ଷାବନ୍ଧୁ' ନାମକ ମାସିକ ପତ୍ରିକା ମଧ୍ୟ ତାଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲା ।



ଏହାପରେ ମଧୁସୂଦନ କଲେଜିଏଟ ସ୍କୁଲର ପ୍ରଧାନ ଶିକ୍ଷକ ହେଲେ । ତାଙ୍କ ପୂର୍ବରୁ କୌଣସି ଓଡ଼ିଆ ଏଠାରେ ପ୍ରଧାନ ଶିକ୍ଷକ ରୂପେ କାର୍ଯ୍ୟ କରି ନଥିଲେ । ତାହା ପରେ ପୁଣି ସେ ବାଲେଶ୍ୱର ଜିଲ୍ଲାର ସ୍କୁଲ ସମୂହର ସହକାରୀ ପରିଦର୍ଶକ ହୋଇଗଲେ । ଜିଲ୍ଲା

ସମୟରେ କଟକ ଟ୍ରେନିଂ ସ୍କୁଲ ନିମନ୍ତେ ଜଣେ ସୁଯୋଗ୍ୟ ପ୍ରଧାନ ଶିକ୍ଷକ ଆବଶ୍ୟକ ହେବାରୁ ମଧୁସୂଦନଙ୍କୁ ଉକ୍ତପଦ ନିମନ୍ତେ ଯୋଗ୍ୟ ବୋଲି ବିବେଚିତ ହେଲେ । ପ୍ରଧାନ ଶିକ୍ଷକ ଭାବରେ ସେ ଅଧୀନ ଶିକ୍ଷକ ଓ ଛାତ୍ରମାନଙ୍କ ସହ ବନ୍ଧୁତାପୂର୍ଣ୍ଣ ବ୍ୟବହାର କରୁଥିଲେ । ଛାତ୍ରମାନଙ୍କ ପ୍ରତି ତାଙ୍କର ବ୍ୟବହାର ଯଥାର୍ଥରେ ଅନୁକରଣୀୟ ଥିଲା । କୌଣସି ଛାତ୍ରର ଶରୀର ଅସୁସ୍ଥ ହେଲେ ସେ ତାର ଖବର ତନ୍ନ ତନ୍ନ କରି ବୁଝୁଥିଲେ ।

କଟକ ଟ୍ରେନିଂ ସ୍କୁଲରେ ବାରବର୍ଷ କାର୍ଯ୍ୟକରି ମଧୁସୂଦନ ଓଡ଼ିଶା ସ୍କୁଲ ସମୂହର ପରିଦର୍ଶକ ପଦକୁ ଉନ୍ନୀତ ହୋଇଥିଲେ । ଏହି ସମୟରେ ସେ 'ଭାରତୀୟ ଶିକ୍ଷା ବିଭାଗ'ରେ ସ୍ଥାନ ପାଇଥିଲେ । ତାଙ୍କର କାର୍ଯ୍ୟଦକ୍ଷତା ସନ୍ଦର୍ଶନ କରି ସରକାର ତାଙ୍କୁ 'ରାୟବାହାଦୁର' ଶୀର୍ଷକ ଉଚ୍ଚ ଉପାଧିରେ ସମ୍ମାନିତ କରିଥିଲେ । ୧୯୦୯ ରେ ସେ ସରକାରୀ କର୍ମରୁ ଅବ୍ୟାହତି ଗ୍ରହଣ କଲେ । ଏହାପରେ ମଧୁସୂଦନ ନିଜର କର୍ମବ୍ୟସ୍ତ ଜୀବନରୁ ବିରତ ନ ହୋଇ ନାନା ଲୋକହିତକର କାର୍ଯ୍ୟରେ ମନୋନିବେଶ କରିଥିଲେ । କଟକ ଟାଉନ ଭିକ୍ଟୋରିଅ ସ୍କୁଲ ସ୍ଥାପନ ନିମନ୍ତେ ସେ ଘର ଘର ବୁଲି ଚାନ୍ଦା ସଂଗ୍ରହ କରୁଥିଲେ । ଏହି ବିଦ୍ୟାଳୟ ପରବର୍ତ୍ତୀ କାଳରେ ଭାରତ ସ୍ୱାଧୀନ ହେବା ପରେ ତାହାଙ୍କ ନାମାନୁସାରେ "ଭକ୍ତ ମଧୁ ବିଦ୍ୟାପୀଠ" ନାମରେ ନାମିତ ହୋଇଛି ।

ମଧୁସୂଦନ ସାମାନ୍ୟ ଶିକ୍ଷକ ପଦରୁ ବହୁ ଉଚ୍ଚ ପଦକୁ ଉନ୍ନୀତ ହୋଇଥିଲେ ସୁଦ୍ଧା ତାଙ୍କ ମନରେ ଲେଶ ମାତ୍ର ଅହଙ୍କାର ନ ଥିଲା । ସରଳ, ନିୟମିତ ଓ ନିରାଡ଼ମ୍ବର ଭାବରେ ସେ ଋଷିପରି ଜୀବନ-ଯାପନ କରୁଥିଲେ । ନିୟମିତ ଭାବରେ ବିଭିନ୍ନ ଗ୍ରନ୍ଥଚର୍ଚ୍ଚା ଓ ସାହିତ୍ୟ ଆଲୋଚନା ତାଙ୍କର ଦୈନନ୍ଦିନ କାର୍ଯ୍ୟାବଳୀର ପ୍ରଧାନ ଅଙ୍ଗ ।

ଥିଲା । ଅତି ଶୈଶବରୁ ସେ ମାତୃସ୍ନେହରୁ ବଞ୍ଚିତ ହୋଇଥିଲେ ସୁଦ୍ଧା ମାତାଙ୍କ ପ୍ରତି ତାଙ୍କର ଅଟଳ ଭକ୍ତି ଥିଲା । ଅନ୍ୟ ସମକ୍ଷରେ ମାତାଙ୍କ ବିଷୟ କହିଲା ବେଳେ ତାଙ୍କ ଚକ୍ଷୁ ଲୋତକାପ୍ଲୁତ ହେଉଥିଲା । ତାଙ୍କର ପିତୃଭକ୍ତି ଅଗାଧ ଥିଲା । ତାଙ୍କର ପିତା ବହୁବର୍ଷ ପର୍ଯ୍ୟନ୍ତ ଜୀବିତ ଥିଲେ । ସର୍ବଦା କାର୍ଯ୍ୟୋପଲକ୍ଷରେ ପିତାଙ୍କଠାରୁ ଦୂରରେ ରହି ଉପଯୁକ୍ତ ପିତୃସେବା କରି ପାରୁ ନ ଥିବାରୁ ସେ ଅତ୍ୟନ୍ତ ଦୁଃଖ ପ୍ରକାଶ କରୁଥିଲେ । ସ୍ତ୍ରୀ ଜାତି ପ୍ରତି ତାଙ୍କର ଭକ୍ତି ମଧ୍ୟ ଅତ୍ୟଧିକ ଥିଲା । ସେ ଜାଣିଥିଲେ ନାରୀମାନଙ୍କର ଉନ୍ନତି ନ ହେଲେ ସମାଜର ବିକାଶ ଅପୂର୍ଣ୍ଣ ରହିଯିବ । ଯେ କୌଣସି ସ୍ତ୍ରୀକୁ ସେ ମା' ବୋଲି ସମ୍ବୋଧନ କରିବାର ଦେଖା ଯାଉଥିଲା । ଭାଇ ଓ ନିଜର ସନ୍ତାନ ସନ୍ତତି ମାନଙ୍କ ପ୍ରତି ମଧ୍ୟ ସେ ଅତ୍ୟନ୍ତ ସ୍ନେହୀ ଥିଲେ । ପରସ୍ପର ପ୍ରତି ସ୍ନେହ ଓ ଭକ୍ତି ବିଦ୍ୟମାନ ଥିବା ପରିବାର ଯଥାର୍ଥରେ ବୈକୁଣ୍ଠ ବୋଲି ସେ ସ୍ୱୀକାର କରିଅଛନ୍ତି । ଭୃତ୍ୟ ଓ ଅପର ବ୍ୟକ୍ତି ମାନଙ୍କ ପ୍ରତି ମଧୁସୂଦନ ଅତିଶୟ ଉଦାର ଭାବାପନ୍ନ ଓ ଦୟାଶୀଳ ଥିଲେ । ଭୃତ୍ୟଠାରେ ସେ ସମୟ ସମୟରେ କ୍ଷମାଭିକ୍ଷା କରିଥିବାର ଜଣାଯାଏ । ଏହି ଗୁଣ ରାଧାନାଥଙ୍କଠାରେ ମଧ୍ୟ ବିଦ୍ୟମାନ ଥିଲା । ମଧୁସୂଦନଙ୍କ ଅତିଥିସେବାରେ ଅନ୍ୟମାନେ ମୁଗ୍ଧ ଓ ବିସ୍ମିତ ହୋଇଯାଉଥିଲେ । ଅତିଥି ସେବାରେ ଭୃତ୍ୟଙ୍କୁ ନିଯୁକ୍ତ ନ କରି ନିଜେ ଉକ୍ତ କାର୍ଯ୍ୟ କରିବାରେ ସେ ଯଥେଷ୍ଟ ଆତ୍ମପ୍ରସାଦ ଲାଭ କରୁଥିଲେ ।

ବାଲ୍ୟକାଳରୁ ଧର୍ମ ଓ ଈଶ୍ୱରବିଶ୍ୱାସ ମଧୁସୂଦନଙ୍କଠାରେ ଅତ୍ୟନ୍ତ ପ୍ରବଳ ଥିଲା । ହିନ୍ଦୁଧର୍ମ ତ୍ୟାଗକରି ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ ସୁଦ୍ଧା ସେ ଦିନେ ହେଲେ ହିନ୍ଦୁଧର୍ମ ପ୍ରତି ଅନାସ୍ଥା ଭାବ ପୋଷଣ କରି ନ ଥିଲେ । ନିୟମିତ ଭାବରେ ଈଶ୍ୱରୋପାସନା ଓ

ଭଗବାନଙ୍କ ଚରଣରେ ଆତ୍ମନିବେଦନ ତାଙ୍କ ଚରିତ୍ରବତ୍ତା ଓ ଆଧ୍ୟାତ୍ମିକତାର ଏକ ମହନୀୟ ଦୃଷ୍ଟାନ୍ତ । ପରିବାରର ପ୍ରତ୍ୟେକ ବ୍ୟକ୍ତି ଯେପରି ନିୟମିତ ଉପାସନା କରନ୍ତି ସେଥି ନିମନ୍ତେ ସେ ବିଶେଷ ଯତ୍ନଶୀଳ ଥିଲେ । ସେ ନିଜର ଜୀବନ ଓ ଅନୁଷ୍ଠିତ ସମସ୍ତ କାର୍ଯ୍ୟ ପ୍ରଭୁଙ୍କ ଚରଣରେ ଅର୍ପଣକରି ଆନନ୍ଦ ଲାଭ କରୁଥିଲେ । ତାଙ୍କର ଜୀବନ କେତେଗୁଡ଼ିଏ ଆଦର୍ଶ ନୀତି ଉପରେ ପ୍ରତିଷ୍ଠିତ ଥିଲା ।

ଛାତ୍ରାବସ୍ଥାରୁ ସାହିତ୍ୟ ଆଲୋଚନା ପ୍ରତି ମଧୁସୂଦନ ଏକାନ୍ତ ଅନୁରାଗୀ ଥିଲେ । ମଧ୍ୟଇଂରାଜୀ ବିଦ୍ୟାଳୟରେ ଅଧ୍ୟୟନ କରୁଥିଲା ବେଳେ ସେ ବଙ୍ଗଳା ଭଲ ଭାବରେ ଲେଖିପଢ଼ି ଜାଣିଥିଲେ । ଇଂରାଜୀ ଓ ସଂସ୍କୃତ ଭାଷାରେ ମଧ୍ୟ ତାଙ୍କର ଅସାଧାରଣ ବ୍ୟୁତ୍ପତ୍ତି ଥିଲା । ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି ନିମନ୍ତେ ସେ ଇଂରାଜୀ ଓ ସଂସ୍କୃତ ସାହିତ୍ୟରୁ ଅନୁବାଦ କରି ଓଡ଼ିଆରେ କବିତା ଲେଖୁଥିଲେ । ଟ୍ରେନିଂ ସ୍କୁଲରେ ପ୍ରଧାନ ଶିକ୍ଷକ ଥିଲାବେଳେ ସେ ଛାତ୍ରମାନଙ୍କୁ ନେଇ ଗୋଟିଏ ସାହିତ୍ୟ ଆଲୋଚନା ସଭା ଗଠନ କରିଥିଲେ । ଏହି ଆଲୋଚନା ସଭା ବୃଦ୍ଧିଲାଭ କରି ଆଜି "ଉତ୍କଳ ସାହିତ୍ୟ ସମାଜ" ନାମରେ ପରିଚିତ ।

ଗୁରୁ ରାଧାନାଥଙ୍କର ଉପଯୁକ୍ତ ଶିଷ୍ୟ ଓ ଭକ୍ତ ଥିଲେ ସୁଦ୍ଧା ମଧୁସୂଦନ ଜୀବନକୁ ରାଧାନାଥଙ୍କ ପରି ନୈରାଶ୍ୟବାଦୀର ଦୃଷ୍ଟିକୋଣରୁ ବିଚାର କରୁ ନ ଥିଲେ । ରାଧାନାଥ ଜୀବନକୁ ସର୍ବଦା ଦୁଃଖମୟ ବୋଲି ଭାବୁଥିଲେ; କିନ୍ତୁ ମଧୁସୂଦନ ଆଶାବାଦୀ ଓ ଆନନ୍ଦବାଦୀ । ମୃତ୍ୟୁକୁ ମଧ୍ୟ ସେ ଭୟ ନ କରି ଏହାକୁ ଭଗବାନଙ୍କର 'ମଙ୍ଗଳମୟ ବିଧାନ' ଭାବରେ ଅଭିହିତ କରିଅଛନ୍ତି ।

ବିଭିନ୍ନ ପ୍ରକାରର କବିତା ଲେଖିବାରେ ମଧୁସୂଦନ ସିଦ୍ଧହସ୍ତ ଥିଲେ । ଶିଶୁମାନଙ୍କ ନିମନ୍ତେ କବିତା ରଚନା କଲାବେଳେ ସେ ଶିଶୁ ଭାବରେ ତନ୍ମୟ ହୋଇ ଯାଉଥିଲେ । ସହଜ ଓ ସରଳ ଭାବରେ ବିଭିନ୍ନ ବସ୍ତୁର ବର୍ଣ୍ଣନା କରିବାରେ ସେ ନିପୁଣ । ଶିଶୁମାନଙ୍କ ନିମନ୍ତେ ଉଚ୍ଚ ଧରଣର ନୀତିଗର୍ଭକ କବିତା ଲେଖି ସେ ଶିଶୁ ଚରିତ୍ରର ବିଶୁଦ୍ଧତା ଆଣିବା ଦିଗରେ ପ୍ରୟାସ କରୁଥିଲେ । କବିତାଗୁଡ଼ିକରେ ତାଙ୍କର ବର୍ଣ୍ଣନାଶକ୍ତିର ଦକ୍ଷତା ପ୍ରକଟିତ । ମଧୁସୂଦନଙ୍କ ଜାତୀୟ ସଙ୍ଗୀତଗୁଡ଼ିକ ଉତ୍କଳରେ ଦିନେ ନବ ଜାଗରଣ ଆଣି ଦେଇଥିଲା । ସମସ୍ତ ସ୍ୱାର୍ଥମୂଳକ ମନୋବୃତ୍ତି ପରିତ୍ୟାଗକରି ଉତ୍କଳ ଜନନୀଙ୍କର ସେବା କରିବା ଲାଗି ଏକତାବଦ୍ଧ ହେବା ନିମନ୍ତେ ସେ ଦେଶବାସୀଙ୍କୁ ଆହ୍ୱାନ କରିଥିଲେ ।

ଇଂରେଜୀ ସାହିତ୍ୟ ଅନୁକରଣରେ ମଧୁସୂଦନ ଓଡ଼ିଆରେ ଚତୁର୍ଦ୍ଦଶପଦୀ କବିତାର ପ୍ରଚଳନ କରିଥିଲେ । ଅଗରୁ ସୁପରିଚିତ ହୋଇଛନ୍ତି ମଧୁସୂଦନ ଗୀତିକବିତାର କବି । କ୍ଷୁଦ୍ର କ୍ଷୁଦ୍ର କବିତା ରଚନାକରି ସେ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛନ୍ତି ।

ମଧୁସୂଦନଙ୍କ ଭକ୍ତିମତ୍ତା ଅସାଧାରଣ । ଜାତି, ବର୍ଣ୍ଣ ଓ ଧର୍ମ ନିର୍ବିଶେଷରେ ବିଶ୍ୱର ଚିର ଉପାସ୍ୟ ବ୍ରହ୍ମହିଁ ତାଙ୍କର ଆରାଧ୍ୟ ଥିଲେ । ସେ ପ୍ରଥମେ ଭକ୍ତ ଓ ପରେ କବି । ତେଣୁ ଉତ୍କଳରେ ସେ ଭକ୍ତକବି ଭାବରେ ସୁପରିଚିତ । ଅଖଣ୍ଡ ଈଶ୍ୱର ବିଶ୍ୱାସ ଓ ବିଶ୍ୱପ୍ରୀତି ତାଙ୍କ କବିତାରେ ପରିସ୍ଫୁଟ । ତାହାଙ୍କର ସମସ୍ତ କବିତାରେ ଗଭୀର ଆଧ୍ୟାତ୍ମିକତା ଓ ଅଖଣ୍ଡ ବ୍ରହ୍ମନିଷ୍ଠା ସୁସ୍ପଷ୍ଟ ଭାବରେ ପ୍ରକଟିତ ।

ମାତୃଭାଷା ଓଡ଼ିଆ ଓ ମାତୃଭୂମି ଉତ୍କଳ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ଓ ଭକ୍ତି ଥିଲା । ସେଥିପାଇଁ ତାଙ୍କ ଲେଖନୀରୁ ନିଃସୃତ ହୋଇଥିଲା—

'ମାତୃଭୂମି ମାତୃଭାଷା ଉଭୟେ ଜନନୀ
ସେବି ତାଙ୍କ ଭକ୍ତିଭରେ ଦିବସ ରଜନୀ
ଏ ମାନବ ଜନ୍ମ ହେଉ ସଫଳ ମୋହର
ଏ ଭିକ୍ଷା କରନ୍ତୁ ପୂର୍ଣ୍ଣ ପ୍ରଭୁ ମହେଶ୍ୱର ।'

ଋଷିପ୍ରତିମ, ସ୍ୱନାମଧନ୍ୟ, ଭକ୍ତକବି ମଧୁସୂଦନ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରି, ମାତୃଭାଷାର ଗୌରବ ବର୍ଦ୍ଧନ କରି, ଆଧ୍ୟାତ୍ମିକତା ଓ ଆଶାବାଦର ସ୍ରୋତରେ ଓଡ଼ିଆ ସାହିତ୍ୟକୁ ପ୍ଲାବିତକରି ୧୯୧୨ ଖ୍ରୀଷ୍ଟାବ୍ଦ ଡିସେମ୍ବର ୧୮ ତାରିଖରେ ପ୍ରାଣତ୍ୟାଗ କଲେ । ଓଡ଼ିଆ ସାହିତ୍ୟ, ଓଡ଼ିଆ ଭାଷା ଓ ଓଡିଶାର ଶିକ୍ଷା କ୍ଷେତ୍ରରେ ତାଙ୍କର ଦାନ ଅକଳନୀୟ । ଓଡ଼ିଆ ଜାତିର ସେ ଚିରନମସ୍ୟ ଓ ଯଥାର୍ଥରେ ଉତ୍କଳର ଅମର ସନ୍ତାନ ।

ପ୍ରଶ୍ନ—୧ । 'ଓଡିଶାର ଶିକ୍ଷା, ଓଡ଼ିଆ ଭାଷା ଓ ସାହିତ୍ୟ କ୍ଷେତ୍ରରେ ମଧୁସୂଦନଙ୍କ ଉଦ୍ୟମ ଯଥାର୍ଥରେ ଆଦର୍ଶ ସ୍ଥାନୀୟ ।' ଏହି ଉକ୍ତିକୁ ଆଲୋଚନା କର ।

୨ । ମଧୁସୂଦନଙ୍କ ଚରିତ୍ର ଯେ କୌଣସି ବ୍ୟକ୍ତିର ଅନୁକରଣୀୟ ଓ ଆଦର୍ଶସ୍ଥାନୀୟ । ଏହା ସତ୍ୟ କି ?

୩ । ମଧୁସୂଦନଙ୍କ ଛାତ୍ର-ଜୀବନର ଏକ ଚିତ୍ର ପ୍ରଦାନକର ।

୪ । ନିମ୍ନ ଶବ୍ଦ ମାନଙ୍କର ଆକ୍ଷରିକ ଅର୍ଥ ଲେଖ ।

ଅଗ୍ରଣୀ, ସମନ୍ୱୟ, ସ୍ପଷ୍ଟବାଦୀ, ଆଧ୍ୟାତ୍ମିକତା, ହିସ୍ପ ।



## ଜାତକର ଗଳ୍ପ

ଗଳ୍ପ କଥନ ଓ ଗଳ୍ପ ଶ୍ରବଣ ମାନବର ଏକ ସହଜାତ-ପ୍ରବୃତ୍ତି । ଗଳ୍ପ ଶ୍ରବଣ ଲାଗି ପୃଥିବୀର ସବୁ ଦେଶର ଓ ସବୁ କାଳର ଲୋକେ ଆଗ୍ରହ ପ୍ରକାଶ କରିଥାନ୍ତି । ଗଳ୍ପ ମାନବ ହୃଦୟକୁ ଆନନ୍ଦାପ୍ଳୁତ କରିବା ସଙ୍ଗେ ସଙ୍ଗେ ତାହାକୁ ବହୁବିଷୟକ ଶିକ୍ଷା ପ୍ରଦାନ କରିଥାଏ । ଜଟିଳ ଓ ଦୁର୍ବୋଧ ବିଷୟମାନଙ୍କୁ ଗଳ୍ପଛଳରେ ସରଳ ଓ ପ୍ରାଞ୍ଜଳ ଭାବରେ ପ୍ରକାଶ କରାଯାଇଥାଏ । ସେଥିପାଇଁ ପୃଥିବୀର ସବୁ ଦେଶର ଧର୍ମଶାସ୍ତ୍ର ଓ ପୁରାଣ ମାନଙ୍କରେ ବହୁ ଗଳ୍ପ ପରିଲକ୍ଷିତ ହୁଏ ।

ବୌଦ୍ଧ ମାନଙ୍କର ଧର୍ମ ଶାସ୍ତ୍ର ତ୍ରିପିଟକଅନ୍ତର୍ଗତ ଜାତକର ଗଳ୍ପଗୁଡ଼ିକ ଯେପରି କୌତୂହଳୋଦ୍ଦୀପକ ସେହିପରି ଶିକ୍ଷାପ୍ରଦ । ଗୌତମ ବୁଦ୍ଧଙ୍କର ଅତୀତ ଜନ୍ମର କାହାଣୀସବୁ ଏଗୁଡ଼ିକରେ ବର୍ଣ୍ଣିତ ହୋଇଅଛି । କଥିତ ଅଛି, ନାନା ରୂପରେ ଜନ୍ମ ଜନ୍ମାନ୍ତର ପରେ ଉତ୍ତରୋତ୍ତର ସ୍ୱୀୟ ଚରିତ୍ରର ଉତ୍କର୍ଷ ସାଧନ କରି, ଅବଶେଷରେ ବୁଦ୍ଧ ବୌଦ୍ଧତ୍ୱ ଲାଭ କରିଥିଲେ । ବୁଦ୍ଧଙ୍କର ପୂର୍ବଜନ୍ମ-ମାନଙ୍କର ରୂପକୁ ବୋଧିସତ୍ତ୍ୱ କୁହାଯାଏ । ବୁଦ୍ଧ ଅଲୌକିକ ଶକ୍ତି-ବଳରେ ପୂର୍ବଜନ୍ମମାନଙ୍କର ଘଟଣାବଳୀ ପ୍ରତ୍ୟକ୍ଷ କରିପାରୁଥିଲେ ଏବଂ ଉକ୍ତ ପୂର୍ବ ଜନ୍ମର କାହାଣୀ ସମୂହ ଶିଷ୍ୟ ମାନଙ୍କୁ ଶୁଣାଉ ଥିଲେ । ଏଗୁଡ଼ିକହିଁ ଜାତକର କଥାବସ୍ତୁ । ଜାତକବର୍ଣ୍ଣିତ ଏହି ଗଳ୍ପଗୁଡ଼ିକ ପୃଥିବୀର ପ୍ରାଚୀନତମ ଗଳ୍ପମାନଙ୍କମଧ୍ୟରେ ଅଧିକ ଉଲ୍ଲେଖଯୋଗ୍ୟ ।

ଭାରତବର୍ଷରେ ବୌଦ୍ଧଧର୍ମ ପ୍ରଚଳିତ ଥିବା ସମୟରେ ଏଗୁଡ଼ିକ ଖୁବ୍ ଜନପ୍ରିୟ ଏବଂ ଆଦୃତ ହୋଇଥିବା ଅନୁମିତ ହୁଏ ।

ଜାତକର ଆଖ୍ୟାୟିକା ମାନଙ୍କୁ ଅବଲମ୍ବନ କରି ପ୍ରାଚ୍ୟ ଓ ପାଶ୍ଚାତ୍ୟ ବହୁ ଦେଶର ସାହିତ୍ୟରେ ଅସଂଖ୍ୟ ଗଳ୍ପ ରଚିତ ହୋଇଥିଲା । ଏଗୁଡ଼ିକରୁ ଅତୀତ ଭାରତର ଇତିହାସ, ସମାଜନୀତି, ଧର୍ମନୀତି, ଶାସନପ୍ରଣାଳୀ, ଶିକ୍ଷା, ଶିଳ୍ପ, ଯୁଦ୍ଧ, ଆମୋଦ ପ୍ରମୋଦ, ଚିକିତ୍ସା ଇତ୍ୟାଦି ବହୁ ଜ୍ଞାତବ୍ୟ ବିଷୟ ଜଣାଯାଏ । ପ୍ରତ୍ନ-ତତ୍ତ୍ୱାନୁସନ୍ଧିତ୍ସୁ ଓ ଗବେଷକମାନଙ୍କ ପକ୍ଷରେ ଜାତକର ଗଳ୍ପଗୁଡ଼ିକ ଅତ୍ୟନ୍ତ ଉପାଦେୟ । ଏହା ପାଲି ଭାଷାରେ ଲିଖିତ । ଅନେକ ପଣ୍ଡିତ ପାଲିଭାଷା କଳିଙ୍ଗ ଦେଶରୁ ଉଦ୍ଭୂତ ବୋଲି ନିରୂପଣ କରନ୍ତି । ଜାତକର ବହୁ ଆଖ୍ୟାୟିକାରେ କଳିଙ୍ଗ ବିଷୟ ପରିଲକ୍ଷିତ ହୁଏ । ତନ୍ମଧ୍ୟରୁ କୁରୁଧର୍ମ ଜାତକଟି ଅନ୍ୟତମ । ନିମ୍ନରେ ଉକ୍ତ ଜାତକର ସଂକ୍ଷିପ୍ତ କଥାବସ୍ତୁ ବର୍ଣ୍ଣିତ ହେଲା ।

"ପୂର୍ବକାଳରେ କଳିଙ୍ଗ ଦେଶର ଦନ୍ତପୁର ନଗରରେ କଳିଙ୍ଗରାଜ ନାମଧେୟ ଜନୈକ ରାଜା ରାଜତ୍ୱ କରୁଥିଲେ । ତାହାଙ୍କ ରାଜତ୍ୱ କାଳରେ ଏକଦା ଦେଶରେ ଅନାବୃଷ୍ଟି ଯୋଗୁଁ ଦୁର୍ଭିକ୍ଷ ଉପସ୍ଥିତ ହେଲା । ଖାଦ୍ୟ ଓ ପାନୀୟ ଅଭାବରୁ ପ୍ରଜାସକଳ ଉତ୍ପୀଡ଼ିତ ହେଲେ । ଅବଶେଷରେ ଦୁଃସ୍ଥ ଓ ନିରୁପାୟ ବହୁ ପ୍ରଜା ଦନ୍ତପୁରରେ ରାଜଦ୍ୱାରରେ ସମବେତ ହେଲେ । ସେମାନଙ୍କ କରୁଣ ଚିତ୍କାରରେ ରାଜଭବନ ନିନାଦିତ ହେଲା ।

ରାଜକର୍ମଚାରୀଗଣ ରାଜାଙ୍କୁ ଏହି ଆର୍ତ୍ତନାଦର କାରଣ ଜଣାଇଲେ—"ମହାରାଜ ! ଦେଶର ଦୁରବସ୍ଥା ଉପସ୍ଥିତ । ବୃଷ୍ଟି ଅଭାବରୁ ସମସ୍ତ ଶସ୍ୟ ନଷ୍ଟ ହୋଇ ଯାଇଅଛି । ଦୁର୍ଭିକ୍ଷ ଯୋଗୁଁ ଲୋକେ ଅଖାଦ୍ୟ ଖାଇ ରୁଗ୍‌ଣ ହୋଇ ପଡ଼ିଛନ୍ତି ଏବଂ ନିରୁପାୟ ହୋଇ ପୁତ୍ର କନ୍ୟାଙ୍କ ସହ ଅନ୍ନର ଅନ୍ୱେଷଣରେ ଇତସ୍ତତଃ

ହେଉଛନ୍ତି । ଦେଶରେ ଯେପରି ବୃଷ୍ଟି ହେବ ତାହାର ବନ୍ଦୋବସ୍ତ ବ୍ୟବସ୍ଥା କରିବା ଏକାନ୍ତ ଆବଶ୍ୟକ ।”

ରାଜା ପଚାରିଲେ,—“ଭୂତପୂର୍ବ ରାଜାମାନେ ଅନାବୃଷ୍ଟି ହେଲେ କ’ଣ କରୁଥିଲେ” ?

“ସେମାନେ ଶୁଦ୍ଧାଚାରୀ ହୋଇ ଦାନଧର୍ମ କରୁଥିଲେ ଏବଂ ସଂକଳ୍ପପୂର୍ବକ ଏକ ସପ୍ତାହ କାଳ କୁଶଶଯ୍ୟାରେ ଶୟନ କଲେ ଦେଶରେ ବୃଷ୍ଟି ହେଉଥିଲା”—ରାଜକର୍ମଚାରୀମାନେ ଉତ୍ତର ଦେଲେ ।

ରାଜା କହିଲେ—“ତେବେ ମୁଁ ମଧ୍ୟ ଆଜଠାରୁ ସେହି ବ୍ରତ ପ୍ରତିପାଳନ କରିବି ।”

କଳିଙ୍ଗରାଜ ନିଷ୍ଠାପର ଭାବେ ପୂର୍ବ ପୁରୁଷମାନଙ୍କ ଅନୁସୃତ ବିଧି ବ୍ୟବସ୍ଥା ପ୍ରତିପାଳନ କଲେହେଁ ଦେଶରେ ବୃଷ୍ଟି ହେଲାନାହିଁ । ଏଣୁ ରାଜା ପୁନର୍ବାର ଅମାତ୍ୟମାନଙ୍କ ପରାମର୍ଶ ଲୋଡ଼ିଲେ । ଅମାତ୍ୟମାନେ କହିଲେ—“ମହାରାଜ ! ଇନ୍ଦ୍ରପ୍ରସ୍ଥ ନଗରୀର କୁରୁରାଜ ଧନଞ୍ଜୟ ମହାଦାନୀ ଓ ଧର୍ମପରାୟଣ । ତାହାଙ୍କର ଅଞ୍ଜନବୃଷଭ ନାମରେ ଏକ ମଙ୍ଗଳହସ୍ତୀ ଅଛି । ତାହାକୁ ଏଠାକୁ ଆଣିଲେ ଦେବତା ଜଳବୃଷ୍ଟି କରିବେ ।”

ରାଜା ପଚାରିଲେ—“ସେଥିପାଇଁ କଣ ଅମ୍ଭଙ୍କୁ ଯୁଦ୍ଧରେ ପ୍ରବୃତ୍ତ ହେବାକୁ ପଡ଼ିବ ?”

“ନା, ମହାରାଜ । କୁରୁରାଜ ପରମ ଦାନଶୀଳ । ପ୍ରାର୍ଥୀର ଅଭିଳାଷ ପୂରଣଲାଗି ସେ ନିଜର ଧନ, ଜୀବନ ସର୍ବସ୍ୱ ଦାନ କରି ପାରନ୍ତି । ଆମ୍ଭେ ପ୍ରାର୍ଥନା କଲେ ସେ ନିଶ୍ଚୟ ମଙ୍ଗଳହସ୍ତୀଟି ଆମ୍ଭଙ୍କୁ ପ୍ରଦାନ କରିବେ ।”

"କିଏ ଏହି ପ୍ରାର୍ଥନା କରିବାକୁ ଉପଯୁକ୍ତ" ?

"ବ୍ରାହ୍ମଣମାନେ ଏଥିପାଇଁ ଉପଯୁକ୍ତ ।"

ଅନନ୍ତର ଆଠଜଣ ବ୍ରାହ୍ମଣ ଉପଯୁକ୍ତ ପାଥେୟ ସହ ସସମ୍ମାନରେ ଇନ୍ଦ୍ରପ୍ରସ୍ଥକୁ ପ୍ରେରିତ ହେଲେ । କତିପୟ ଦିବସାନନ୍ତର ସେମାନେ ଇନ୍ଦ୍ରପ୍ରସ୍ଥ ନଗରୀରେ ଉପନୀତ ହୋଇ ନଗରଦ୍ୱାରସ୍ଥ ଏକ ଦାନଶାଳାରେ ଆଶ୍ରୟ ଗ୍ରହଣକଲେ ।

ବୋଧିସତ୍ତ୍ୱହିଁ ସେତେବେଳେ ଇନ୍ଦ୍ରପ୍ରସ୍ଥ ନଗରୀରେ ଏହି କୁରୁରାଜ ପଦରେ ଅଧିଷ୍ଠିତ ଥିଲେ । ବାଲ୍ୟକାଳରେ ସେ ତକ୍ଷଶୀଳା ନଗରରେ ବିଦ୍ୟାଭ୍ୟାସ କରିଥିଲେ । ସେ ନିଜେ ସତ୍ୟଧର୍ମ ପ୍ରତିପାଳନ କରୁଥିଲେ ଏବଂ ତାହାଙ୍କ ଜନନୀ, ପଟ୍ଟମହିଷୀ, କନିଷ୍ଠ ଭ୍ରାତା, ପୁରୋହିତ, ଅମାତ୍ୟ ପ୍ରଭୃତି ଆଠଜଣ ମଧ୍ୟ ଏହି ଧର୍ମାନୁସରଣ କରୁଥିଲେ । ବୋଧିସତ୍ତ୍ୱ ନଗରୀର ଚୈତ୍ରଦ୍ୱାରରେ, ନଗରୀର ମଧ୍ୟସ୍ଥଳରେ ଏବଂ ସ୍ୱୀୟ ପ୍ରାସାଦର ସମ୍ମୁଖରେ ଏହିପରି ୬ଟି ଦାନଶାଳା ସ୍ଥାପିତ କରି ପ୍ରତ୍ୟହ ଲକ୍ଷ ଲକ୍ଷ ମୁଦ୍ରା ବ୍ୟୟ କରୁଥିଲେ । ତାହାଙ୍କର ଅପୂର୍ବ ଦାନଶୀଳତା ଯୋଗୁଁ ସମଗ୍ର ଜମ୍ବୁଦ୍ୱୀପରେ ତାହାଙ୍କର ଖ୍ୟାତି ପରିବ୍ୟାପ୍ତ ହୋଇ ଯାଇଥିଲା । ପ୍ରତ୍ୟେକ ପକ୍ଷର ଚତୁର୍ଦ୍ଦଶୀ, ଅଷ୍ଟମୀ, ପକ୍ଷାନ୍ତ ଏହି ତିନିଦିନ ସେ ପ୍ରତ୍ୟେକ ଦାନଶାଳାକୁ ଗମନ କରୁଥିଲେ । ମଙ୍ଗଳହସ୍ତୀ ପୃଷ୍ଠରେ ଉପବେଶନ କରି ରାଜୋଚିତ ଆଡ଼ମ୍ବର ସହକାରେ ସେ ସେଠାରେ ଉପସ୍ଥିତ ହୋଇ ତନ୍ନତ୍ୟ ସମବେତ ଅତିଥିଗଣଙ୍କୁ ସ୍ୱହସ୍ତରେ ଅନ୍ନ ପରିବେଷଣ କରୁଥିଲେ ଏବଂ ସେମାନଙ୍କ ଅଭିଳାଷ ପୂରଣ କରୁଥିଲେ ।

କଳିଙ୍ଗାଗତ ବ୍ରାହ୍ମଣଗଣ କୁରୁରାଜଙ୍କୁ ଆଶୀର୍ବାଦ କରି ଆପଣାର ଅଭିଳାଷ ଜଣାଇଥିଲେ । ବୋଧିସତ୍ତ୍ୱ ସଦୟଭାବେ ଉତ୍ତରଦେଲେ—

"ଏହି ହସ୍ତୀଲାଗି ଆପଣମାନେ ଚନ୍ତିତ ହୁଅନ୍ତୁ ନାହିଁ । ମୁଁ ଏହାକୁ ସର୍ବାଭରଣସହ ଆପଣମାନଙ୍କୁ ଦାନ କରୁଅଛି ।" ଏହା କହି ସେ ହସ୍ତୀପୃଷ୍ଠରୁ ଅବତରଣ କଲେ । ହସ୍ତୀଟିକୁ ତିନିଥର ପ୍ରଦକ୍ଷିଣ କରି ଏହାର ପ୍ରତ୍ୟେକ ଅଙ୍ଗ ଅଳଙ୍କୃତ ଦେଖି ପରିତୃପ୍ତ ଚିତ୍ତରେ ତାହା ବ୍ରାହ୍ମଣ ମାନଙ୍କୁ ଦାନ କରିବାକୁ ଉଦ୍ୟତ ହେଲେ । ରାଜା-ଦେଶରେ ପୁଷ୍ପ-ଗନ୍ଧ-ବାସିତ ଜଳପୂର୍ଣ୍ଣ, ସୁବର୍ଣ୍ଣ ଭୃଙ୍ଗାର ଆନୀତ ହେଲା । ରାଜା ବ୍ରାହ୍ମଣମାନଙ୍କ ହସ୍ତରେ ହସ୍ତୀର ଶୁଣ୍ଢ଼ ଅର୍ପଣକରି ତାହା ଉପରେ ଉକ୍ତ ପାତ୍ରର ଜଳ ଦାନ କଲେ । ଏହି ରୂପେ ଦାନକ୍ରିୟା ସମ୍ପନ୍ନ ହେଲା । ବ୍ରାହ୍ମଣମାନେ ହୃଷ୍ଟ ମନରେ ବହୁମୂଲ୍ୟ ଅଳଙ୍କାରଯୁକ୍ତ ଉକ୍ତ ହସ୍ତୀ ପୃଷ୍ଠରେ ଆରୋହଣ କରି ଦନ୍ତପୁରକୁ ପ୍ରତ୍ୟାବର୍ତ୍ତନ କଲେ ।

କଳିଙ୍ଗରାଜ ହସ୍ତୀଟି ଲାଭକରି ପରିତୃପ୍ତ ହେଲେ । ମାତ୍ର ହସ୍ତୀଟି ଆସିଲେହେଁ କଳିଙ୍ଗ ରାଜ୍ୟରେ ବୃଷ୍ଟିପାତର କୌଣସି ସୂଚନା ପରିଲକ୍ଷିତ ହେଲା ନାହିଁ । କଳିଙ୍ଗରାଜ ଚିନ୍ତିତହୋଇ ପୁନର୍ବାର ଅମାତ୍ୟମଣ୍ଡଳୀଙ୍କୁ ବୃଷ୍ଟି ନ ହେବାର କାରଣ ଜିଜ୍ଞାସା କଲେ । ଅମାତ୍ୟମାନେ ଉତ୍ତର ଦେଲେ,—"ମହାରାଜ ! କୁରୁରାଜ ଧନଞ୍ଜୟ ସତ୍ୟଧର୍ମ ପାଳନ କରନ୍ତି । ତେଣୁ ତାଙ୍କ ରାଜ୍ୟରେ ଦଶ ପନ୍ଦର ଦିନ ଅନ୍ତରରେ ବୃଷ୍ଟି ହୁଏ । ରାଜାଙ୍କ ଗୁଣରୁହିଁ ଦେଶରେ ବୃଷ୍ଟିପାତ ହୋଇଥାଏ । ତେଣୁ ହସ୍ତୀଟି ସଦ୍‌ଗୁଣସଂପନ୍ନ ହେଲେ ହେଁ ଦେଶରେ ବୃଷ୍ଟି କରାଇବାଲାଗି ତାହା ଯଥେଷ୍ଟ ହେଉନାହିଁ ।"

ଏହା ଶୁଣି କଳିଙ୍ଗରାଜ କହିଲେ,—"ଅଚ୍ଛା, ତାହାହିଁ ଯଦି ହୋଇଥାଏ, ଆମ୍ଭେ ସେହି ସତ୍ୟଧର୍ମ ଆଚରଣ କରିବୁ । ଏହି ହସ୍ତୀଟିକୁ ଯେପରି ଆଣିଛ, ସେହିପରି ଭାବରେ ତାକୁ କୁରୁରାଜଙ୍କ

ଫେରାଇ ଦେଇ ଅସ; ସତ୍ୟ ଧର୍ମହିଁ ଆମ୍ଭର ପ୍ରୟୋଜନ । କୁରୁରାଜଙ୍କ ଅନୁସୃତ ଧର୍ମନୀତି ସୁବର୍ଣ୍ଣପଟ୍ଟରେ ଲେଖାଇ ଏଠାକୁ ଆଣିଲେ ଆମ୍ଭେ ତାହା ଯଥାବିଧି ପ୍ରତିପାଳନ କରିବୁଁ ।”

ପୁନଶ୍ଚ ବ୍ରାହ୍ମଣମାନେ ଅମାତ୍ୟମାନଙ୍କ ସହିତ କୁରୁରାଜଙ୍କ ନିକଟକୁ ପ୍ରେରିତ ହେଲେ । ସେମାନେ ଯଥା ସମୟରେ କୁରୁ-ରାଜ୍ୟରେ ଉପସ୍ଥିତ ହୋଇ ହସ୍ତୀଟିକୁ ପ୍ରତ୍ୟର୍ପଣକରି ମହାରାଜଙ୍କୁ ସେମାନଙ୍କ ଆଗମନର ଅଭିପ୍ରାୟ ଜଣାଇଲେ ।

ବୋଧିସତ୍ତ୍ୱ କୁରୁରାଜ କହିଲେ—“ହଁ, ମୁଁ ସତ୍ୟଧର୍ମ ପାଳନ କରୁଥିଲି ସତ୍ୟ; ମାତ୍ର ମୁଁ ବର୍ତ୍ତମାନ ସେ ବିଷୟରେ ସନ୍ଦିହାନ । ମୋର ମନେହୁଏ ଧର୍ମପାଳନରେ ମୋର ବ୍ୟତିକ୍ରମ ଘଟିଛି । ତେଣୁ ସେ ବିଷୟରେ ମୁଁ ଆପଣଙ୍କୁ କ’ଣ ବା ଉପଦେଶ ଦେବି ?” କାହିଁକି ତାଙ୍କର ଏପରି ଧାରଣା ଜାତ ହୋଇଛି, ତାହା ସେ ବର୍ଣ୍ଣନା କରିବାକୁ ଆରମ୍ଭ କଲେ—

“ଏ ଦେଶରେ ପ୍ରତି ତୃତୀୟ ବର୍ଷର କାର୍ତ୍ତିକ ମାସରେ କାର୍ତ୍ତିକୋତ୍ସବ ନାମରେ ଏକ ଉତ୍ସବ ଅନୁଷ୍ଠିତ ହୁଏ । ଏହି ଦେଶର ରାଜାଙ୍କୁ ମଧ୍ୟ ଉକ୍ତ ଉତ୍ସବରେ ଭାଗ ନେବାକୁ ପଡ଼େ । ସର୍ବାଲଙ୍କାରରେ ଭୂଷିତ ହୋଇ ସେ ଚିତ୍ରରାଜ ନାମକ ଏକ ଯକ୍ଷର ସମ୍ମୁଖରେ ଚାରୋଟି ଚିତ୍ର ବିଚିତ୍ର ପୁଷ୍ପମଣ୍ଡିତ ଶର ଚାରି ଦିଗକୁ ନିକ୍ଷେପ କରନ୍ତି । ଏହାହିଁ ଏଠାର ବିଧି । ଥରେ ଏକ ପୁଷ୍କରିଣୀ ନିକଟରେ ଚିତ୍ରରାଜଙ୍କ ସମ୍ମୁଖରେ ମୁଁ ଏହିପରି ଚାରୋଟି ଶର ନିକ୍ଷେପ କରିଥିଲି । କିନ୍ତୁ ଯେଉଁ ଶରଟି ଜଳୋପରି ନିକ୍ଷିପ୍ତ ହୋଇଥିଲା, ସେଇଟି ପୁନର୍ବାର ପରିଲକ୍ଷିତ ହୋଇ ନ ଥିଲା । ମୋର ମନେହୁଏ, ଉକ୍ତ ଶରଟି କୌଣସି ମତ୍ସ୍ୟକୁ ବିଦ୍ଧ କରିଛି । ସେହି ହେତୁ ନିଜକୁ ଜୀବହତ୍ୟା ରୂପ ଦୋଷରେ ଦୋଷୀ ମନେକରି

ମୋର ଅନୁଶୋଚନାର ସୀମାନାହିଁ । ଧର୍ମ ପାଳନ କରିବା ଅନ୍ନ-ପ୍ରସାଦ ପରିବର୍ତ୍ତେ ଗଭୀର ଖେଦ ଓ ସଂଶୟ ମୋ ମନକୁ ଅଧିକାର କରନ୍ତୁ । କିନ୍ତୁ ମୋର ମାତା ନିଷ୍ପାପର ଭାବରେ ସତ୍ୟଧର୍ମ ପାଳନ କରନ୍ତି । ତାଙ୍କ ନିକଟକୁ ଗଲେ ସେ ଆପଣମାନଙ୍କୁ ଏ ବିଷୟରେ ସବିଶେଷ ଉପଦେଶ ଦେବାକୁ କ୍ଷମ ହେବେ ।”

କଳିଙ୍ଗପୁରୋହିତମାନେ କହିଲେ;—“ମହାରାଜ, ଆପଣତ ସ୍ୱଇଚ୍ଛାରେ ବା ଜ୍ଞାତସାରରେ ପ୍ରାଣିହତ୍ୟା କରି ନାହାନ୍ତି । ମନରେ ହତ୍ୟା ଅଭିଳାଷ ନଥିଲେ ଦୋଷ ହେବ କିପରି ? ଯାହାହେଉ ଆପଣ ଯେଉଁ ଧର୍ମ ପାଳନ କରନ୍ତି, ତାହା ଆମ୍ଭଙ୍କୁ କୁହନ୍ତୁ ।”

ରାଜା ତାହା ବର୍ଣ୍ଣନା କରିବାକୁ ଆରମ୍ଭକରନ୍ତେ କଳିଙ୍ଗ-ବାସୀଗଣ ତାହା ସୁବର୍ଣ୍ଣପଟ୍ଟରେ ଲେଖିବାକୁ ଆରମ୍ଭ କଲେ । ରାଜା କହିଲେ—“କାହାରିକୁ ହତ୍ୟା କରି ନାହିଁ । ଚୋରି କରନାହିଁ କିମ୍ବା ଅଦତ୍ତବସ୍ତୁ ଗ୍ରହଣ କରନାହିଁ । ଇନ୍ଦ୍ରିୟବଶୀଭୂତ ହୋଇ ମିଥ୍ୟାଗୁରୁପରାୟଣ ହୁଅ ନାହିଁ । କଦାପି ମିଥ୍ୟା କଥା କୁହନାହିଁ । ମଦ୍ୟପାନ କରନାହିଁ ।—ଏହି ସମସ୍ତ ଗୁଣ ମୁଁ ପାଳନ କରୁଥିଲି ଏବଂ ଏବେ ମଧ୍ୟ ତାହା ପାଳନ କରୁଅଛି ।”

କଳିଙ୍ଗଅଧିବାସୀଗଣ ରାଜାଙ୍କୁ ପ୍ରଣାମପୂର୍ବକ, ପୁନଶ୍ଚ ସତ୍ୟ ଧର୍ମର ନୀତି ସଂଗ୍ରହ ଲାଗି ତାହାଙ୍କ ମାତାଙ୍କ ନିକଟରେ ଉପସ୍ଥିତ ହେଲେ । ରାଜମାତା ମଧ୍ୟ ସେହିପରି କହିଲେ—“ମୁଁ ଏହି ଧର୍ମପାଳନ କରୁଥିଲି । ମାତ୍ର ଏବେ ମୋର ସେ ବିଷୟରେ ସନ୍ଦେହ ଜାତ ହୋଇଅଛି ।” ସନ୍ଦେହର ହେତୁ ସ୍ୱରୂପ ସେ ମଧ୍ୟ ତାଙ୍କର ଏକ ଅତୀତ ଅନୁଭୂତି ବର୍ଣ୍ଣନା କଲେ ଏବଂ ଶେଷରେ କହିଲେ—“ମୋର ଜ୍ୟେଷ୍ଠ ପୁତ୍ରବଧୂ ଏହି ସତ୍ୟ ଧର୍ମର ମର୍ମ

ଜାଣନ୍ତି । ସେ ଯନୂର ସହୃତ ଏହା ପାଳନ କରୁଥିବାରୁ ଆପଣ-ମାନଙ୍କୁ ବୁଝାଇବାକୁ ସମର୍ଥ ।”

ଏହାପରେ କଳିଙ୍ଗଦୂତଗଣଙ୍କୁ ଏକାଦଶ ବ୍ୟକ୍ତିଙ୍କ ନିକଟକୁ ଯିବାକୁ ପଡ଼ିଲା । ପ୍ରତ୍ୟେକଙ୍କ ନିକଟରୁ ଧର୍ମ ବ୍ୟାଖ୍ୟା ଶୁଣି ଓ ତାହା ସୁବର୍ଣ୍ଣପଟ୍ଟରେ ଲିପିବଦ୍ଧ କରି ଦୂତଗଣ ଅବଶେଷରେ ଦନ୍ତପୁରକୁ ଫେରିଗଲେ । କଳିଙ୍ଗରାଜାଙ୍କ ସମୀପରେ ଉପସ୍ଥିତ ହୋଇ ତାଙ୍କ ନିକଟରେ ସମସ୍ତ ଘଟଣା ବର୍ଣ୍ଣନା କଲେ ଏବଂ ସୁବର୍ଣ୍ଣପଟ୍ଟ-ଗୁଡ଼ିକ ତାହାଙ୍କ ହସ୍ତରେ ଅର୍ପଣକଲେ । ତଦନନ୍ତର ରାଜା ଯନୂର ସହୃତ ଏହି ସତ୍ୟଧର୍ମ ପାଳନ କଲେ । ରାଜା ଶୁଦ୍ଧାଚାରୀ ଓ ନୀତିନିଷ୍ଠ ହେବାରୁ ଦେଶରୁ ଜଳାଭାବ ଦୂରୀଭୂତ ହେଲା । ପ୍ରଚୁର ବୃଷ୍ଟିପାତ ଯୋଗୁଁ ଧରଣୀମାତା ଶସ୍ୟଶ୍ୟାମଳା ହେଲେ ଏବଂ ଦେଶରୁ ସମସ୍ତ ଭୟ ଦୂରୀଭୂତ ହେଲା ।

ଏହାପରି ବୋଧିସତ୍ତ୍ୱଙ୍କ ବାଣୀ ସଫଳ ହୋଇଥିଲା । ସେ ଯାବଜ୍ଜୀବନ ଦାନଶୀଳ ଓ ପୁଣ୍ୟାଭିଳାଷୀ ହୋଇ ସତ୍ୟଧର୍ମ ପ୍ରତିପାଳନ କରିଥିଲେ ଏବଂ ଦେହାନ୍ତ ପରେ ସ୍ୱର୍ଗ ପ୍ରାପ୍ତ ହୋଇଥିଲେ ।

ପ୍ରଶ୍ନ—୧ । କଳିଙ୍ଗରାଜା ନିଜ ଦେଶରୁ ଜଳାଭାବ ଦୂର କରିବା ନିମନ୍ତେ କି ଉପାୟ ଆଶ୍ରୟ କରିଥିଲେ ?

୨ । ବୌଦ୍ଧ ଜାତକର ଗଳ୍ପ ଗୁଡ଼ିକରେ ମନୋରମ କାହାଣୀ ସଙ୍ଗେ ସଙ୍ଗେ ନୀତିଶିକ୍ଷା ପ୍ରଦତ୍ତ । ପଠିତ ଗଳ୍ପରେ ଏହା କେତେଦୂର ସାର୍ଥକ ହୋଇଛି ?

୩ । ପଦ ପରିବର୍ତ୍ତନ କର ।

ଉତ୍ପୀଡ଼ିତ, ଛୁଟିଣି, ଅଭ୍ୟାସ, ଅଳଙ୍କୃତ, ଅନୁସରଣ, ହୃଷ୍ଟ, ଦାନ, ଅନୁଷ୍ଠିତ, ଅଭିଳାଷ, ପ୍ରେରିତ ଓ ନିକ୍ଷିପ୍ତ ।

୪ । ଶବ୍ଦାର୍ଥ ଲେଖ ।

ପ୍ରକୃତତତ୍ତ୍ୱାନୁସନ୍ଧିତ୍ସୁ, ନାମଧେୟ, ପରମ, ପ୍ରଦକ୍ଷିଣ, ଜିଜ୍ଞାସା ।

୫ । ବିପରୀତାର୍ଥ ବୋଧକ ଶବ୍ଦ ଲେଖ ।

ଦୁର୍ବୋଧ୍ୟ, ଜଟିଳ, ଲୁଣ୍ଠନ ।

---

## ଲୁଇ ପାଶ୍ଚୁର

ମାନବସମାଜକୁ ବିଜ୍ଞାନର ଦାନ ଅଶେଷ । ମାତ୍ର ଆଜି ବିଜ୍ଞାନର କଲ୍ୟାଣକର ସାମର୍ଥ୍ୟ ସମ୍ବନ୍ଧରେ ମନୁଷ୍ୟ କେତେକ କ୍ଷେତ୍ରରେ ସନ୍ଦିହାନ । ଅଣବିକ ବିସ୍ଫୋରଣ ପରେ ପୃଥିବୀ ବିଜ୍ଞାନର ପ୍ରଳୟଙ୍କରୀ ମୂର୍ତ୍ତି ଦେଖି ସ୍ତମ୍ଭୀଭୂତ ହୋଇଛି । ବିଜ୍ଞାନ ଅଧୁନା ଏପରି ଭୟାବହ ପ୍ରତୀୟମାନ ହେଲେହେଁ ଏହା ବହୁ ମନୀଷୀଙ୍କଦ୍ୱାରା ମାନବସମାଜର ଅଶେଷ କଲ୍ୟାଣ ସାଧନ ନିମିତ୍ତ ନିୟୋଜିତ ହୋଇଅଛି । ବିଜ୍ଞାନଜଗତରେ ଯେଉଁ କେତେକ ପ୍ରତିଭାସମ୍ପନ୍ନ ବ୍ୟକ୍ତି ବୈପ୍ଳବିକ ପରିବର୍ତ୍ତନ ଘଟାଇ ପାରିଛନ୍ତି ସେମାନଙ୍କ ମଧ୍ୟରେ ଲୁଇପାଷ୍ଟର ଅଗ୍ରଗଣ୍ୟ ।

୧୮୨୨ ଖ୍ରୀଷ୍ଟାବ୍ଦ ଡିସେମ୍ବର ୨୭ ତାରିଖରେ ଫ୍ରାନ୍ସର ଆରବୋସ୍ ନାମକ ଏକ କ୍ଷୁଦ୍ର ସହରରେ ଲୁଇପାଷ୍ଟରଙ୍କର ଜନ୍ମ । ତାଙ୍କର ପିତା ନେପୋଲିଅନଙ୍କ ସୈନ୍ୟବାହିନୀରେ ଜଣେ ସାହସୀ ସୈନିକ ଥିଲେ ଏବଂ ଲୁଇଙ୍କର ଜନ୍ମବେଳକୁ ଯୁଦ୍ଧରେ ଆହତ ହୋଇ ବିଶ୍ରାମରେ କାଳ କଟାଉଥିଲେ । ପାଷ୍ଟରଙ୍କ ପିତା ଜଣେ ସାଧାରଣ ସୈନିକ ଥିଲେହେଁ ଶିକ୍ଷାର ମର୍ଯ୍ୟାଦା ଉତ୍ତମରୂପେ

ଉପଲବ୍ଧି କରିଥିଲେ ଏବଂ ଶୈଶବରୁ ପାଶ୍ଚରଙ୍କର ଶିକ୍ଷାପ୍ରାପ୍ତି ସମ୍ବନ୍ଧରେ ସେ ବିଶେଷ ଯତ୍ନଶୀଳ ଥିଲେ । ଉପଯୁକ୍ତ ଶିକ୍ଷା ପ୍ରାପ୍ତି ନିମିତ୍ତ ପାଶ୍ଚର ବିଭିନ୍ନ ଶିକ୍ଷାନୁଷ୍ଠାନକୁ ପ୍ରେରିତ ହୋଇଥିଲେ । ମାତ୍ର ବାଲ୍ୟ କାଳରେ ଲୁଇ ଅତ୍ୟଧିକ ଗୃହପ୍ରିୟ ଥିବାରୁ ଶିକ୍ଷାନୁଷ୍ଠାନମାନଙ୍କରୁ ଗୃହକୁ ପଳାୟନ କରୁଥିଲେ । ଅବଶେଷରେ ୧୮୪୧ ଖ୍ରୀଷ୍ଟାବ୍ଦରେ ସେ ସାରବୋନ ସହରରେ ଏକ ଶିକ୍ଷାନୁଷ୍ଠାନରେ ଉଚ୍ଚଶିକ୍ଷା ଲାଭକରିଥିଲେ । ଏହି ସମୟରେ ପାଶ୍ଚରଙ୍କ ସ୍ୱଭାବରେ ବିଶେଷ ପରିବର୍ତ୍ତନ ଦେଖା-ଦେଇଥିଲା । ଗୃହକୁ ପଳାୟନ କରିବା କୁଅଭ୍ୟାସ ତାଙ୍କର ନଥିଲା । ସେ ବିଜ୍ଞାନର ତତ୍ତ୍ୱକୁ ହୃଦୟଙ୍ଗମ କରିବାରେ ପ୍ରବୃତ୍ତ ହେଲେ । ସମୟ ସମୟରେ ବିଜ୍ଞାନାଗାରରେ ଗବେଷଣାରେ ସେ ଏପରି ଭାବେ ନିମଗ୍ନ ରହୁଥିଲେ ଯେ ବହିର୍ଦ୍ଦେଶର କୌଣସି ଚିତ୍ତାକର୍ଷକ ଘଟଣା ତାଙ୍କୁ ଆକୃଷ୍ଟ କରିପାରୁନଥିଲା । ତାଙ୍କର ଏହି ମାନସିକ ସ୍ଥିରତା ଯୋଗୁଁ ସହପାଠୀଗଣ ତାଙ୍କୁ ବିଜ୍ଞାନାଗାରର ସ୍ତମ୍ଭ ରୂପେ ଆଖ୍ୟା ଦେଇଥିଲେ । ଏହି ସମୟରେ ଯୁବକସୁଲଭ ଭାବପ୍ରବଣତା ତାଙ୍କର ମନରେ ବିଶେଷ ରୂପେ ସ୍ଥାନ ପାଇଥିଲା ଏବଂ ସେ ବିଜ୍ଞାନଜଗତରେ ବହୁ ରହସ୍ୟ ଉଦ୍ଘାଟନ କରିପାରିବେ ବୋଲି ଅଶାନ୍ୱିତ ହୋଇ ପିତାଙ୍କ ନିକଟକୁ ପତ୍ର ଲେଖୁଥିଲେ । ଏହି ସମୟରେ ସେ ସ୍ଫଟିକ-



( ଲୁଇ ପାଶ୍ଚର୍ )

ସମ୍ବନ୍ଧରେ ଗବେଷଣା କରି ତାଙ୍କର ବିଜ୍ଞାନ ଅଧ୍ୟାପକ ବାଏଟଙ୍କୁ ମୁଗ୍ଧ କରିଥିଲେ, ଫଳତଃ ତାଙ୍କର ଖ୍ୟାତି ସହସା ଦେଶରେ ପ୍ରସାରିତ ହୋଇଥିଲା ।

୧୮୪୮ ଖ୍ରୀଷ୍ଟାବ୍ଦରେ ଡିଜନ ସହରରୁ ପଦାର୍ଥ ବିଜ୍ଞାନରେ ଅଧ୍ୟାପକତ୍ୱଗ୍ରହଣ କରିବା ନିମିତ୍ତ ତାଙ୍କୁ ଆହ୍ୱାନ ଆସିଲା । ମାତ୍ର ପରବର୍ଷ ଜାନୁୟାରୀ ମାସରେ ଷ୍ଟ୍ରାସବର୍ଗ ସହରରେ ରସାୟନିକ ବିଭାଗରେ ଅଧ୍ୟାପକ ହୋଇଥିଲେ । ଏହିସମୟରେ ସେଠାରେ ଥିବା ଅଟେଣ୍ଟ ନାମଧେୟ ଅଧ୍ୟାପକଙ୍କ କନ୍ୟା ମେରୀଙ୍କ ସହିତ ପରିଣୟ-ସୂତ୍ରରେ ଆବଦ୍ଧ ହୋଇଥିଲେ । ମେରୀ, ତାଙ୍କର ସ୍ୱାମୀ ଯେପରି ଜଣେ ପ୍ରସିଦ୍ଧ ବୈଜ୍ଞାନିକ ହୋଇପାରିବେ ସେ ଦିଗରେ ବିଶେଷ ଯତ୍ନଶୀଳା ଥିଲେ ଏବଂ ଲୁଇଙ୍କର ଉପଯୁକ୍ତ ସହଧର୍ମିଣୀ ହୋଇ ପାରିଥିଲେ ।

ପ୍ରତିଭାସମ୍ପନ୍ନ ବ୍ୟକ୍ତି ମାନଙ୍କର କର୍ମ କୌଣସି ନିର୍ଦ୍ଦିଷ୍ଟ ସ୍ଥାନରେ ଆବଦ୍ଧହୋଇ ରହି ପାରେନା । ଲୁଇପାଷ୍ଟରଙ୍କୁ ବିଭିନ୍ନ ସ୍ଥାନରେ ସ୍ୱୀୟ କର୍ମକୁଶଳତାର ପରିଚୟ ଦେବାକୁ ପଡ଼ିଥିଲା । ୧୮୫୪ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ମାସରେ ଉତ୍ତର-ଫ୍ରାନ୍ସର ଲିଲେ ନାମକ ଏକ ଶିଳ୍ପ ପ୍ରତିଷ୍ଠାନପୂର୍ଣ୍ଣ ସହରରେ ସେ ବିଜ୍ଞାନାଧ୍ୟାପକ ହୋଇଥିଲେ । ଏହି ସହରଟିର ପାର୍ଶ୍ୱବର୍ତ୍ତୀ ଅଞ୍ଚଳ ମଦ୍ୟ ବ୍ୟବସାୟ ନିମିତ୍ତ ପ୍ରସିଦ୍ଧ ଥିଲା । ପାଷ୍ଟର ଏହି ମଦ୍ୟ ଉପରେ ଗବେଷଣା କରୁଥିବା ସମୟରେ ବିଜ୍ଞାନର ଏକ ବିଶିଷ୍ଟ ତଥ୍ୟ ଉଦ୍ଭାବନ କରିଥିଲେ । ପାଷ୍ଟର ଦେଖି ପାରିଲେ ଯେ ଅତି କ୍ଷୁଦ୍ର କୀଟାଣୁଗୁଡ଼ିକ ମଦ୍ୟକୁ ନଷ୍ଟ କରିବାର କାରଣ । ସେ ଏହି ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ ଜୀବାଣୁମାନଙ୍କର ଉତ୍ପତ୍ତି ସ୍ୱତଃ ନ ହୋଇ ଜୀବାଣୁ ମାନଙ୍କଠାରୁହିଁ ହୋଇଥାଏ । ଯେଉଁ ବାୟୁମଣ୍ଡଳକୁ ଆମ୍ଭେମାନେ

ଅପତତଃ କୀଟାଣୁ ଶୂନ୍ୟ ରୂପେ ମନେ କରିଥାନ୍ତି ପ୍ରକୃତରେ ତାହା କୀଟାଣୁପରିପୂର୍ଣ୍ଣ ଏବଂ ଏହି ବାୟୁର ସଂସ୍ପର୍ଶରେ ମଦ୍ୟ ଅସିବାରୁ ନଷ୍ଟରେ କୀଟାଣୁଗୁଡ଼ିକ ସ୍ଥାନ ପାଇଥାନ୍ତି । ୧୮୬୪ ଖ୍ରୀଷ୍ଟାବ୍ଦ ଏପ୍ରିଲ ୭ ତାରିଖ ଦିନ ସାରବୋନ ସହରର ଏକ ବକ୍ତୃତାଗାରରେ ପାରିସର ବିଶିଷ୍ଟ ବୈଜ୍ଞାନିକମାନଙ୍କ ସମ୍ମୁଖରେ ସେ ପ୍ରମାଣ କରି ଦେଇଥିଲେ ଯେ ଅଣବିକ ଜୀବାଣୁଗୁଡ଼ିକରୁ ଜୀବାଣୁ-ଜଗତର ଉତ୍ପତ୍ତି । ଏହା ପୂର୍ବରୁ ବୈଜ୍ଞାନିକମାନଙ୍କର ଧାରଣା ଥିଲା ଯେ ଜୀବାଣୁ ଗୁଡ଼ିକର ଉତ୍ପତ୍ତି ସ୍ୱତଃ ଘଟିଥାଏ । ମାତ୍ର ପାଷ୍ଟର ପରୀକ୍ଷାଦ୍ୱାରା ଏହି ମତବାଦର ଅସାରତା ପ୍ରତିପାଦନକରି 'ସ୍ୱତଃ ପ୍ରଜନନ' (Spontaneous generation) ମତବାଦ ଖଣ୍ଡନ କରିଥିଲେ ।

ଯେ କୌଣସି ବୈପ୍ଳବିକ ଚିନ୍ତାଧାରାର ପ୍ରବର୍ତ୍ତନକାରୀ ମହାପୁରୁଷଗଣଙ୍କୁ ଅଶେଷ ବାଧାବିଘ୍ନର ସମ୍ମୁଖୀନ ହେବାକୁ ପଡ଼ିଥାଏ । ମନୁଷ୍ୟସମାଜ ସମସ୍ତ ସମୟରେ ସେମାନଙ୍କୁ ଭ୍ରମପୂର୍ଣ୍ଣ ମନେକରି ଶାସ୍ତି ବିଧାନ କରିଥାଏ । ମହାମାନବ ସକ୍ରେଟିସ, ଯିଶୁଖ୍ରୀଷ୍ଟ ପ୍ରଭୃତି ଏହାର ଉଦାହରଣ । ସେହିପରି ପାଷ୍ଟରଙ୍କୁ ମଧ୍ୟ ଏହି ନୂତନ ଚିନ୍ତାଧାରାର ପ୍ରବର୍ତ୍ତନ ନିମିତ୍ତ ବହୁ ବାଧାବିଘ୍ନର ସମ୍ମୁଖୀନ ହେବାକୁ ହୋଇଥିଲା । ଜନସମାଜରେ ସେ ଧର୍ମଦ୍ରୋହୀ ରୂପେ ଅଖ୍ୟାତ ହୋଇଥିଲେ, ମାତ୍ର ସତ୍ୟ କଦାପି ଲୁକ୍କାୟିତ ହୋଇ ରହିପାରେନା । ପର୍ବତପ୍ରମାଣ କାର୍ପାସକୁ କ୍ଷୁଦ୍ର ଅଗ୍ନିକଣା ଦହନ କରି ନିଜର ସ୍ୱରୂପ ପ୍ରକାଶ କଲାପରି ସତ୍ୟ ସମସ୍ତ କୁସଂସ୍କାର ଓ ଭ୍ରମକୁ ଭେଦକରି ସମୟର ଗତିରେ ସ୍ୱୀୟରୂପ ପ୍ରକାଶକରେ । ସକ୍ରେଟିସ ଓ ଯିଶୁଖ୍ରୀଷ୍ଟ ପ୍ରଭୃତି ମନୀଷୀଗଣଙ୍କୁ ତତ୍କାଳୀନ ସମାଜ ଗ୍ରହଣ କରି ନ ଥିଲେ

ସୁଛା ସମୟର ଗତିରେ ସେମାନଙ୍କର ମହତ୍ତ୍ୱ ପ୍ରକାଶିତ ଏବଂ ସେମାନେ ଆଜି ସମଗ୍ର ମାନବଜାତିର ପୂଜ୍ୟ । କାଳକ୍ରମେ ପାଷ୍ଟରଙ୍କ ମତବାଦ ନିର୍ଭୁଲ ରୂପେ ପ୍ରମାଣିତ ହୋଇ ଦେଶସାରା ତାଙ୍କର ଖ୍ୟାତି ଶୀଘ୍ର ଲାଭ କରିଥିଲା ।

ଏହାପରେ ଦକ୍ଷିଣ ଫ୍ରାନ୍ସରେ ଦୁର୍ବଳ ହୋଇଥିବା ସିଲ୍କ ପୋକ ସମ୍ବନ୍ଧରେ ଗବେଷଣା ଚଳାଇବାକୁ ସେ ଫ୍ରାନ୍ସ ସରକାରଙ୍କ ଦ୍ୱାରା ନିଯୁକ୍ତ ହୋଇଥିଲେ । ଏହି ସମୟରେ ୧୮୬୮ ଖ୍ରୀଷ୍ଟାବ୍ଦରେ ପକ୍ଷାଘାତ ରୋଗରେ ତାଙ୍କର ଶରୀରର ବାମ ଅଂଶ ଅଚଳ ହୋଇ ଯାଇଥିଲା । ନିଜର ପିତା ଓ କନ୍ୟାର ମୃତ୍ୟୁ ସମ୍ବାଦ ସେ ପାଇଲେ । କୌଣସି ବିଶିଷ୍ଟ କାର୍ଯ୍ୟରେ ସାଫଲ୍ୟ ଅର୍ଜନ କରିବା ପୂର୍ବରୁ ବହୁ ବାଧାବିଘ୍ନ ଆସି ଉପସ୍ଥିତ ହୋଇଥାଏ ଏବଂ କେବଳ ମହାମନୀଷୀଗଣ ମାନସିକ ଦୃଢ଼ତା ବଳରେ ସେ ସମସ୍ତକୁ ଭ୍ରୂକ୍ଷେପ ନ କରି ସ୍ୱୀୟ ଲକ୍ଷ୍ୟ ସାଧନରେ ବ୍ରତୀ ହୋଇଥାନ୍ତି । ସମସ୍ତ ସାଂସାରିକ ବାଧାବିଘ୍ନ ଲୁଇପାଷ୍ଟରଙ୍କୁ ତାଙ୍କର ଲକ୍ଷ୍ୟ ସାଧନରୁ ବିଚ୍ୟୁତ କରିପାରି ନ ଥିଲା । ସେ ଦ୍ୱିଗୁଣ ଉତ୍ସାହରେ ପ୍ରକୃତିର ରହସ୍ୟ ଉଦ୍ଘାଟନରେ ବ୍ରତୀ ହୋଇ ସିଲ୍କପୋକ ଗୁଡ଼ିକ ସମ୍ବନ୍ଧରେ ବିଶିଷ୍ଟ ତଥ୍ୟମାନ ଉଦ୍ଭାବନ କରିଥିଲେ ।

ଯଦି କୀଟାଣୁଗୁଡ଼ିକ ମଦ୍ୟକୁ ନଷ୍ଟକରିବାର କାରଣ ହୁଅନ୍ତି, ତେବେ ମନୁଷ୍ୟମାନଙ୍କର ବିଭିନ୍ନ ରୋଗର କାରଣ କ'ଣ ଏମାନେ ନୁହନ୍ତି ?—ଏହି ପ୍ରଶ୍ନ ପାଷ୍ଟରଙ୍କ ମନରେ ସ୍ୱତଃ ଉଦ୍ରେକ ହୋଇଥିଲା ଏବଂ ଏହାର ସମାଧାନ କରିବାକୁ ଯାଇ ସେ ଚିକିତ୍ସା ବିଜ୍ଞାନର ଗୂଢ଼ ରହସ୍ୟ ଉନ୍ମୋଚନ କରିଥିଲେ । ୧୮୭୩ ଖ୍ରୀଷ୍ଟାବ୍ଦରେ ପାଷ୍ଟର 'ଏକାଡେମୀ ଅଫ୍ ମେଡ଼ିସିନ୍'ର ସଭ୍ୟ ହୋଇଥିଲେ । ପାଷ୍ଟରଙ୍କ ଶଲ୍ୟାଧାରୀ ଚିକିତ୍ସାବିତ୍‌ମାନଙ୍କର

ଉକ୍ତ ଫିଟାଇ ଦେଇଥିଲ ଏବଂ ଜୀବାଣୁଗୁଡ଼କ ଯେ ମନୁଷ୍ୟର ବିଭିନ୍ନ ରୋଗର କାରଣ ତାହା ନିର୍ଦ୍ଧାରିତ ହୋଇଥିଲା । ଏହି ଜୀବାଣୁ-ତତ୍ତ୍ୱର ଗବେଷଣା ଫଳରେ ଜୀବାଣୁଗୁଡ଼କର ଆକ୍ରମଣରୁ କ୍ଷତ ସ୍ଥାନକୁ ନିରାପଦ ରଖି ଅସ୍ତ୍ରୋପଚାର କରିବା ସୁଗମ ହୋଇପାରିଲା । ବିଶିଷ୍ଟ ଇଂରାଜ ଚିକିତ୍ସାବିତ୍ ଲିଷ୍ଟର ଏହି ଦିଗରେ ସମଧିକ ଅଗ୍ରସର ହୋଇଥିଲେ; ମାତ୍ର ଏ ଦିଗରେ ପ୍ରଥମ ଦ୍ରଷ୍ଟା ହେଉଛନ୍ତି ଲୁଇପାଷ୍ଟର ।

ଲୁଇ ପାଷ୍ଟରଙ୍କ ଅଦ୍ଭୁତ ଉଦ୍ଭାବନଗୁଡ଼କ ଦେଖି ଫରାସି ଜାତି ତଥା ସମଗ୍ର ପୃଥିବୀ ଅଣ୍ଟର୍ଯ୍ୟାନ୍ୱିତ ହୋଇଥିଲା । ୧୮୭୪ ଖ୍ରୀଷ୍ଟାବ୍ଦରେ ଫ୍ରାନ୍ସର ଜାତୀୟ ପରିଷଦ ତାଙ୍କ ନିମିତ୍ତ ୧୨୦୦୦ ଫ୍ରାଙ୍କ ପେନ୍‌ସନ୍ ଧାର୍ଯ୍ୟ କରି ତାଙ୍କୁ ବିଶ୍ରାମରେ କାଳଯାପନ କରିବାକୁ ଅନୁରୋଧ କରିଥିଲା । ମାତ୍ର ବିଜ୍ଞାନର ଗବେଷଣାରୁ ନିଜକୁ ଦୂରରେ ରଖି କେବଳ ବିଶ୍ରାମ ଓ ଆଳସ୍ୟରେ କାଳଯାପନ କରିବାକୁ ଲୁଇ-ପାଷ୍ଟର ଉପଯୁକ୍ତ ମନେ କରିନଥିଲେ । କର୍ମହୀନ ଜୀବନ ଯାପନରେ ଜୀବନର ସମସ୍ତ ମାଧୁର୍ଯ୍ୟ ଲୁପ୍ତ ହୁଏ । ଜୀବନର ସୌନ୍ଦର୍ଯ୍ୟ କର୍ମ-ତତ୍ପରତାରେହିଁ ପ୍ରସ୍ଫୁଟିତ ହୋଇଥାଏ । ଏହି ଆଦର୍ଶ ପ୍ରଣୋଦିତ ହୋଇ ଲୁଇ ବାର୍ଦ୍ଧକ୍ୟ ଅବସ୍ଥାରେ ସୁଦ୍ଧା ପ୍ରଗାଢ଼ ପରିଶ୍ରମରେ ଜଳା-ତଙ୍କ ରୋଗର କାରଣ ଓ ଚିକିତ୍ସା ନିର୍ଦ୍ଧାରଣ କରିଥିଲେ । ବହୁଦିନ ଧରି ଏହି ଦୁଃସାଧ୍ୟ ରୋଗର ଚିକିତ୍ସା ନିରୂପଣ କରିବା ନିମିତ୍ତ ସେ ଚିନ୍ତିତ ଥିଲେ । ଶେଷରେ ସେ ଗୋଟିଏ ପାଗଳ କୁକୁରର ଲାଳକୁ ସଂଗ୍ରହକରି ତାକୁ ସୁସ୍ଥ ଠେକୁଆ ଓ କୁକୁରମାନଙ୍କ ଶରୀରରେ ଇନ୍‌ଜେକସନ ରୂପେ ବ୍ୟବହାର କରି ପରୀକ୍ଷା ଚଳାଇଲେ । ଶେଷରେ ସେ ଏହି ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ ଜଳାତଙ୍କ ରୋଗରେ ସେହି ରୋଗର ଜୀବାଣୁକୁ ଯଦି ଅଳ୍ପ

ପରିମାଣରେ ସୁସ୍ଥ ଶରୀରରେ ଇନ୍‌ଜେକ୍‌ସନ ମାଧ୍ୟମରେ ଛୁଞ୍ଚି ଦିଆଯାଏ ତେବେ ତାହା ସେହି ରୋଗଗୁଡ଼ିକର ପ୍ରତିଷେଧକ ରୂପେ କାର୍ଯ୍ୟ କରିଥାଏ । ଏହି ଭିତ୍ତିରେ ହଇଜା, ବସନ୍ତ ପ୍ରଭୃତି ରୋଗରେ ପ୍ରତିଷେଧକ ନିର୍ଦ୍ଧାରଣ କରାଯାଇଛି । ଏହି ପ୍ରଣାଳୀରେ ପାଷ୍ଟର ଦୁଃସାଧ୍ୟ ଜଳାତଙ୍କ ରୋଗର ପ୍ରତିଷେଧକ ଓ ଚିକିତ୍ସା ଉଦ୍ଭାବନ କଲେ । ପାଷ୍ଟରଙ୍କ ନାମକୁ ଚିରସ୍ମରଣୀୟ କରିବା ନିମିତ୍ତ ପୃଥିବୀର ବିଭିନ୍ନ ଦେଶରେ ଜଳାତଙ୍କ ରୋଗର ଚିକିତ୍ସାନୁଷ୍ଠାନଗୁଡ଼ିକୁ 'ପାଷ୍ଟର ଇନ୍‌ଷ୍ଟିଚ୍ୟୁଟ୍' ନାମ ରଖାଯାଇଛି ।

ପାଷ୍ଟରଙ୍କ ସମସ୍ତ ଉଦ୍ଭାବନରେ ବିଜ୍ଞାନର ଧ୍ୱଂସକାରୀ ପ୍ରଳୟଙ୍କରୀ ମୂର୍ତ୍ତି ପ୍ରକଟିତ ହୋଇନାହିଁ । ତାଙ୍କର ଉଦ୍ଭାବନଗୁଡ଼ିକ ମାନବ-ସମାଜର ଅଶେଷ କଲ୍ୟାଣ ସାଧନ କରିଛି । ବିଜ୍ଞାନ-ଜଗତରେ ବହୁ ଉଦ୍ଭାବନ ସ୍ଥାନ ପାଇଛି; ମାତ୍ର ଲୁଇପାଷ୍ଟରଙ୍କର ଉଦ୍ଭାବନଗୁଡ଼ିକ ବିଶେଷ ମୌଳିକ । ପାଷ୍ଟରଙ୍କର ଜୀବାଣୁତତ୍ତ୍ୱ ଉଦ୍ଭାବନ ମାନବ-ଜାତିକୁ ବିଭିନ୍ନ ମାରାତ୍ମକ ରୋଗରୁ ରକ୍ଷା କରିବାରେ ସାହାଯ୍ୟ କରିଛି । ଚିକିତ୍ସାଜଗତରେ ଏହାର ଫଳରେ ଅସ୍ତ୍ରୋପଚାର କ୍ରିୟା ସୁଗମ ହୋଇଛି । ଅନ୍ୟ ଖାଦ୍ୟପେୟ ପଦାର୍ଥଗୁଡ଼ିକୁ ଜୀବାଣୁ-ମାନଙ୍କଠାରୁ ନିରାପଦରେ ରଖି ଅବିକୃତ ଅବସ୍ଥାରେ ଦୀର୍ଘଦିନ ଧରି ରଖା ଯାଇ ପାରୁଛି । ଏ ସମସ୍ତ କେବଳ ଲୁଇପାଷ୍ଟରଙ୍କ ଯୋଗୁଁହିଁ ସମ୍ଭବପର ହୋଇପାରିଛି । ବିଜ୍ଞାନ-ଜଗତକୁ ଲୁଇପାଷ୍ଟରଙ୍କ ଦାନ ଅତୁଳନୀୟ ।

ପ୍ରଶ୍ନ—୧—'କର୍ମହୀନ ଜୀବନ ଯାପନରେ ଜୀବନର ସମସ୍ତ ମାଧୁର୍ଯ୍ୟ ବିନଷ୍ଟ ହୋଇଥାଏ, ଜୀବନର ସୌନ୍ଦର୍ଯ୍ୟ କର୍ମ-**ତତ୍ପରତାରେହିଁ ପ୍ରସ୍ଫୁଟିତ ହୋଇଥାଏ । ବୈଜ୍ଞାନିକ**

ଲୁଇପାଷ୍ଟରଙ୍କ ଜୀବନରେ ଏହି ଉକ୍ତି କପରି ସାର୍ଥକ ତାହା ବର୍ଣ୍ଣନା କର' ।

୨—ପାଷ୍ଟରଙ୍କ ନୂତନ ଉଦ୍ଭାବନ ସମ୍ବନ୍ଧରେ ଯାହା ଜାଣ, ଲେଖ ।

୩—'ବିଜ୍ଞାନ ମାନବସମାଜର ମଙ୍ଗଳ ନିମନ୍ତେ ପ୍ରଯୁକ୍ତ ହେଲେ ଏହା ଯଥାର୍ଥରେ କଲ୍ୟାଣକର ।' ଲୁଇ-ପାଷ୍ଟରଙ୍କ ଉଦ୍ଭାବନରୁ ଏହା କପରି ପ୍ରମାଣିତ ?

୪—ନିମ୍ନ ଶବ୍ଦାବଳୀର ଅର୍ଥ ନିରୂପଣ କର ।
ଗବେଷଣା, ବିଜ୍ଞାନ, ସାଫଲ୍ୟ, ଉନ୍ମୋଚନ ।

୫—କିଏ କେଉଁ ପଦ ଉଲ୍ଲେଖ କରି ପଦ ପରିବର୍ତ୍ତନ କର । ବୈଚିତ୍ର୍ୟବିକ, ଉଦ୍ଭୁକ୍ତ, ସମାଧାନ, ବିକୃତ ।

---

## ଉତ୍ତର ଭାରତର କେତୋଟି ଦର୍ଶନୀୟ ସ୍ଥାନ

କ୍ଷୁଦ୍ର କଟକ ସହର ପରିତ୍ୟାଗ କରି ଉତ୍ତର-ଭାରତର ପ୍ରଧାନ ସ୍ଥାନଗୁଡ଼ିକ ପରିଦର୍ଶନ କରିବା ନିମନ୍ତେ ଯାତ୍ରା କରୁଥିବାରୁ ମନଟା ଆନନ୍ଦରେ ପୂରି ଉଠୁଥାଏ । ଏହି ଉଲ୍ଲାସକୁ ସମ୍ବଳ କରି ସହପାଠୀମାନଙ୍କ ସହିତ କଟକ ଷ୍ଟେସନ ଛାଡ଼ିଲୁ । ପରଦିନ ଯଥା-ସମୟରେ ହାଓଡ଼ାଠାରେ ପହଞ୍ଚି ହାଓଡ଼ାରୁ ଡାକଗାଡ଼ି ଧରିଲୁ । ପ୍ରଥମରେ ଭାରତର ରାଜଧାନୀ ଦିଲ୍ଲୀ ନଗରୀ ପରିଦର୍ଶନ କରି ତା' ପରେ ଅନ୍ୟ ସ୍ଥାନକୁ ଯାତ୍ରା କରିବା ଭଲ ହେବ ବୋଲି ଆମର ସହଯାତ୍ରୀ ଅଧ୍ୟାପକ ମହାଶୟ ମତଦେଲେ । ହାଓଡ଼ାଠାରୁ ଦିଲ୍ଲୀ ଡାକଗାଡ଼ିରେ ଅଠେଇଶ ଘଣ୍ଟାର ବାଟ । ଦୀର୍ଘ ବାରଘଣ୍ଟାକାଳ ଭିଡ଼ ମଧ୍ୟରେ ଠିଆ ହେଲେ ମଧ୍ୟ ଟିକିଏ ସ୍ଥାନ ଯୋଗାଡ଼ କରିବାର

ସୁବିଧା ମିଳିଲି ନାହିଁ । ବଙ୍ଗ, ବିହାର, ଉତ୍ତର-ପ୍ରଦେଶ ମଧ୍ୟବର୍ତ୍ତୀ ଅଞ୍ଚଳ ଦେଇ ଯାତ୍ରା କଲାବେଳେ ଯାତ୍ରା ମଧ୍ୟରେ ବହୁ ଲୋକଙ୍କ ସହ ସାକ୍ଷାତ ହେଲା; ସେମାନେ ଓଡ଼ିଶାର ନାମ ମଧ୍ୟ ଜାଣନ୍ତି ନାହିଁ । ଅଥଚ ଓଡ଼ିଶାର ଜଗନ୍ନାଥଙ୍କ ପ୍ରତି ତାଙ୍କର ଅଚଳା ଭକ୍ତି । ଜଗନ୍ନାଥ ଦେଶ କହିଲେ ସେମାନେ ଆମ ଓଡ଼ିଶାକୁ ବୁଝନ୍ତି । ଉତ୍ତର-ଭାରତ ମଧ୍ୟ ଦେଇ ଯାତ୍ରା କରୁଥିଲା ବେଳେ ରେଲପଥର ଉଭୟ ପାର୍ଶ୍ୱବର୍ତ୍ତୀ ସୁଦୂର ବିସ୍ତୃତ, ହରିତାୟମାନ ଶସ୍ୟକ୍ଷେତ୍ର ନୟନ ମନ ଆକର୍ଷଣ କରିବା ସ୍ୱାଭାବିକ ।

ଦୀର୍ଘ ଅଠେଇଶ ଘଣ୍ଟାର ପଥ ଅତିକ୍ରମ କରି ଦିଲ୍ଲୀ ଷ୍ଟେସନରେ ଗାଡ଼ି ଛିଡ଼ା ହେଲା । ଏକେତ ରେଲରେ ଅସମ୍ଭବ ଧରଣର ଭିଡ଼, ତା ଛଡ଼ା କଲିକତାରୁ ଦୀର୍ଘ ନଅଶତ ମାଇଲ ରେଲଯାତ୍ରା । ଏ ଉଭୟ ଆମ୍ଭମାନଙ୍କର ପରିଚ୍ଛଦକୁ ଏପରି ମଳିନ କରିଥିଲା ଯେ, ଆମେ ନିଜକୁ ନିଜେ ଦେଖି ମଧ୍ୟ ସଙ୍କୁଚିତ ବୋଧ କରୁଥିଲୁ । ଆମ ଓଡ଼ିଶାରୁ ପାର୍ଲିଆମେଣ୍ଟ ସଦସ୍ୟ ଶ୍ରୀଯୁକ୍ତ ଭୁବନାନନ୍ଦ ଦାସ ଦିଲ୍ଲୀ ନଗରୀରେ ଆମ ରହିବା ନିମନ୍ତେ ସମସ୍ତ ସୁବିଧା କରି ଦେଇଥିଲେ । ପ୍ରଥମରୁ ଦିଲ୍ଲୀ ନଗରୀର ପ୍ରଶସ୍ତ ଓ ସୁନ୍ଦର ରାଜପଥ ଆମକୁ ଦିଲ୍ଲୀର ବିରାଟତ୍ୱ ଓ ମନୋହାରିତା ସମ୍ବନ୍ଧରେ କିଞ୍ଚିତ୍ ଜ୍ଞାନ ଜନ୍ମାଇ ଦେଲା ।

ପରଦିନ ପ୍ରାତଃକାଳରେ ପ୍ରଥମେ ରାଜଘାଟ ପରିଦର୍ଶନ । ସତ୍ୟ ଓ ଅହିଂସାର ଏକନିଷ୍ଠ ଉପାସକ, ଭାରତର ଭାଗ୍ୟବିଧାତା, ପୂଜ୍ୟ ମହାତ୍ମା ଗାନ୍ଧିଙ୍କ ସମାଧି ସ୍ଥାନରେ ମନରେ ସ୍ୱତଃ ଭକ୍ତିଭାବ ଜାଗ୍ରତ ହୋଇଥାଏ । ସମାଧି ନିକଟରେ ଦଣ୍ଡାୟମାନ ହୋଇଥିବା ଅବସ୍ଥାରେ ଚିତ୍ତରେ ଏକ ଅପୂର୍ବ ପୁଲକ ଜାତ ହେଲା । ମନେ-ହେଲା, ମରଣରେ ବାପୁଜୀ ଯଥାର୍ଥରେ ମୃତ୍ୟୁଞ୍ଜୟ ହୋଇଛନ୍ତି ଓ

ସଙ୍ଗେ ସଙ୍ଗେ କବିବର ରାଧାନାଥଙ୍କର ଦୁଇଟି ପଂକ୍ତି ଅଟେପେ ଅଟେପେ ଉଚ୍ଚାରିତ ହୋଇଗଲା ।

'ତୁମ୍ଭ ମାଟି ଦେହ ଗ୍ରାସିଛି ଶ୍ମଶାନ
ମାତ୍ର ଯଶୋଦେହେ ତୁମ୍ଭେ ଅମ୍ଳାନ ।'

ରାଜଘାଟର ଅବସ୍ଥିତିର ରମଣୀୟତା ଏହାକୁ ଏକ ଶାନ୍ତିପୂର୍ଣ୍ଣ ସ୍ଥାନରୂପେ ଚିହ୍ନିତ କରୁଛି । ଦେଶୀୟ ଓ ବିଦେଶୀୟ ପର୍ଯ୍ୟଟକମାନେ ପ୍ରଥମରେ ଦିଲ୍ଲୀର ଦର୍ଶନୀୟ ସ୍ଥାନ ସନ୍ଦର୍ଶନ କରିବା ପୂର୍ବରୁ ପବିତ୍ର ତୀର୍ଥସ୍ଥଳ ତୁଲ୍ୟ ରାଜଘାଟ ଦର୍ଶନ କରିଥାଆନ୍ତି । ରାଜଘାଟରୁ ଜୁମା ମସ୍‌ଜିଦ୍ ଦେଖିବାକୁ ବାହାରିଲୁ । ଏହି ମସ୍‌ଜିଦ୍ ଖୁବ୍ ବଡ଼ ଓ ଏହା ସାହାଜାହାନ୍‌ଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ଅପରାହ୍ନରେ ଲାଲକିଲ୍ଲା ମଧ୍ୟକୁ ପ୍ରବେଶ କଲୁ । ଲାଲକିଲ୍ଲାର ଦର୍ଶନୀୟ ଅଂଶ ଗୁଡ଼ିକ ବୁଲି ଦେଖିବାକୁ ପ୍ରାୟ ତିନିଘଣ୍ଟା ସମୟ ଲାଗିଲା । ବାସ୍ତବରେ ଲାଲକିଲ୍ଲା ମୋଗଲ ବାଦ୍‌ସାହମାନଙ୍କର ବାଦସାହୀ ଅଭିଜାତ୍ୟ ଓ ବିଳାସପ୍ରିୟତାର ଜୀବନ୍ତ ନିଦର୍ଶନ । ଶଙ୍ଖ ମଲମଲ ପଥର ସଙ୍ଗରେ ବହୁ ମୂଲ୍ୟବାନ୍ ମଣିମୁକ୍ତାଖଚିତ କାରୁକାର୍ଯ୍ୟ ସମୂହ ଦିନେ ଏଥିରେ ଶୋଭା ପାଉଥିଲା । ଅଳ୍ପ ଅବହେଳାର ପ୍ରଭାବରେ ସେଗୁଡ଼ିକର ଶୋଭା ବହୁ ଅଂଶରେ ବିନଷ୍ଟ ହୋଇଛି । ତଥାପି ଯାହା ରହିଛି. ସେଥିରୁ ସେ ସମୟର ସାମାଜିକ ଓ ଅର୍ଥନୈତିକ ଅବସ୍ଥାର ଏକ କ୍ଷୀଣ ଧାରଣା କଳ୍ପନା କରିହୁଏ । କିଲ୍ଲା ବା ଦୁର୍ଗ ମଧ୍ୟରେ ସଭାମଣ୍ଡପ, ପ୍ରାର୍ଥନା ସ୍ଥାନ, ସ୍ନାନ-ଗୃହ, ରଙ୍ଗମହଲ, ଶିଶୁମହଲ ପ୍ରଭୃତି ବିବିଧ କାରୁକାର୍ଯ୍ୟ ଭୂଷିତ ।

ପରଦିନ ଭାରତ ପାର୍ଲିଆମେଣ୍ଟ ବା ଲୋକସଭାର ଅଧିବେଶନ ଦର୍ଶନ କରିବାର ସୁଯୋଗ ମିଳିଥିଲା । ସେଠାରୁ ଐତିହାସିକ କୁତୁବମିନାର ଅଭିମୁଖେ ଆମେ ଯାଇଥିଲୁ । ମିନାର ଉପରକୁ

ଚଢ଼ିବାକୁ ଗୃହଶହରୁ ଅଳ୍ପ କିଛି କମ୍ ସୋପାନ ଅତିକ୍ରମ କରିବାକୁ ପଡ଼େ । ଏଠାରୁ ତଳର ଘର ଗୁଡ଼ିକ ଏକାନ୍ତ କ୍ଷୁଦ୍ର ଦେଖାଯିବା ସ୍ୱାଭାବିକ । ଏହି ସ୍ତମ୍ଭ ଭାରତର ଶେଷ ସ୍ୱାଧୀନ, ହିନ୍ଦୁ ସମ୍ରାଟ ପୃଥ୍ୱୀରାଜ ନିର୍ମାଣ କରିଥିବା ଶୁଣାଯାଏ । ତା ପରେ ଦାସବଂଶର ମୁସଲମାନ ନରପତି କୁତୁବୁଦ୍ଦିନ ଓ ଅଲ୍‌ଟାମସ ଏହାକୁ ପୂର୍ଣ୍ଣ କରିଥିଲେ । ମିନାରଟି ଏକାନ୍ତ ସୁଦୃଶ୍ୟ, ବହୁପ୍ରାଚୀନ ହେଲେ ମୁଦ୍ଧା ଏବେ ମଧ୍ୟ ଅକ୍ଷୁର୍ଣ୍ଣ ରହିଅଛି । ଦିଲ୍ଲୀର ଅନ୍ୟ ସ୍ଥାନଗୁଡ଼ିକ ମଧ୍ୟରେ ଇଣ୍ଡିଆ ଗେଟ୍, କେନ୍ଦ୍ର ସରକାରଙ୍କ ବିଭିନ୍ନ କାର୍ଯ୍ୟାଳୟ, ନିଖିଳ ଭାରତ ବେତାର କେନ୍ଦ୍ର ଅନୁଷ୍ଠାନ, ରାଷ୍ଟ୍ରପତି ଭବନ ପ୍ରଭୃତି ଦର୍ଶନୀୟ । ବିରଲାଙ୍କ ଦ୍ୱାରା ନିର୍ମିତ ଲକ୍ଷ୍ମୀନାରାୟଣ ମନ୍ଦିର ବାସ୍ତବରେ ସୁରମ୍ୟ ସ୍ଥାନ । ଏଠାରେ ଜାତିବର୍ଣ୍ଣ ନିର୍ବିଶେଷରେ ପ୍ରତ୍ୟେକ ହିନ୍ଦୁ ଉପାସନା କରି ପାରିବେ । ମନ୍ଦିର ମଧ୍ୟରେ ବହୁ ଚିତ୍ର ଓ ଖୋଦିତ ଲିପି ଅଛି । ମନ୍ଦିରର କାନ୍ଥମାନଙ୍କରେ ବେଦ, ଉପନିଷଦ, ରାମାୟଣ, ମହାଭାରତ ଗୀତା ପ୍ରଭୃତି ଧର୍ମଗ୍ରନ୍ଥର ଅମୂଲ୍ୟବାଣୀ ଓ ନାନକ, କବିର, ତୁଳସୀଦାସ, ମୀରାବାଈ ପ୍ରଭୃତି ବିଖ୍ୟାତ ଧର୍ମପ୍ରାଣ କବିମାନଙ୍କର ମହନୀୟ ପଦାବଳୀ ଲିପିବଦ୍ଧ କରାଯାଇଛି । ମନ୍ଦିରଟି ଏକାନ୍ତ ପରିଷ୍କୃତ, ପରିଚ୍ଛନ୍ନ ଓ ହୃଦୟରେ ଶୁଦ୍ଧଭାବର ପ୍ରକାଶକ ।

ନୂତନ ଦିଲ୍ଲୀନଗରୀର ରାସ୍ତାଗୁଡ଼ିକ ପ୍ରଶସ୍ତ ଓ ସୁନ୍ଦର । ରାସ୍ତାରେ ବୁଲୁଥିଲାବେଳେ ବଡ଼ ଆନନ୍ଦ ଲାଗେ । ଏ ଗୁଡ଼ିକ ପ୍ରାୟ ସିଧା ସଳଖ । ଗୋଟିଏ ରାସ୍ତା ଅନ୍ୟ ରାସ୍ତାକୁ ଅତିକ୍ରମ କରିଥିବା ଅଧିକାଂଶ ସ୍ଥାନରେ ଛୋଟ ଛୋଟ ପାର୍କ ତିଆରି ହୋଇଛି । ଏହା-ଫଳରେ ରାସ୍ତା ଗୁଡ଼ିକର ସୌନ୍ଦର୍ଯ୍ୟ ବର୍ଦ୍ଧିତ ହେବା ସଙ୍ଗେ ସଙ୍ଗେ ଅଧିକାଂଶ ଛକ ସ୍ଥାନ ମାନଙ୍କରେ ରାସ୍ତାର ଯାନବାହାନଗୁଡ଼ିକୁ

ନୀୟନ୍ତ୍ରଣ କରିବା ଲାଗି ପୋଲିସର ଆବଶ୍ୟକତା ନ ଥାଏ । ତା ଛଡ଼ା ରାସ୍ତାଗୁଡ଼ିକ ଏକାନ୍ତ ପରିଷ୍କୃତ । ଗୋଟିଏ ଛକରେ ଛିଡ଼ା ହେଲେ, ଗୃହ୍ ଜଡ଼ର କୋଠାଗୁଡ଼ିକ ପରିକଳ୍ପିତ ହୋଇ ନିର୍ମିତ ହୋଇ ଥିବାରୁ ବଡ଼ ସୁନ୍ଦର ଦେଖାଯାନ୍ତି । କ୍ଷୁଦ୍ର କଟକସହରର ଅଧିବାସୀଙ୍କ ପକ୍ଷରେ ଦିଲ୍ଲୀ ନଗରୀର ସୁପରିକଳ୍ପିତ ରାସ୍ତାଗୁଡ଼ିକ ଆନନ୍ଦଦାୟକ ହେବା ସଙ୍ଗେ ସଙ୍ଗେ ବିସ୍ମୟୋତ୍ପାଦକ ହୋଇଥାଏ । ପୁରାତନ ଦିଲ୍ଲୀର ରାସ୍ତାଗୁଡ଼ିକ ସଂକୀର୍ଣ୍ଣ ଓ ଏହି ଅଂଶଟି କାର୍ଯ୍ୟତ ଅପରିଚ୍ଛନ୍ନ । ଦିଲ୍ଲୀ ଷ୍ଟେସନରୁ ବାହାରିଲେ ପ୍ରଥମରେ ପୁରୁଣା ଦିଲ୍ଲୀ ମଧ୍ୟ ଦେଇ ନୂତନ ଦିଲ୍ଲୀକୁ ଯିବାକୁ ହୋଇଥାଏ ।

ଅନିଚ୍ଛା ସତ୍ତ୍ୱେ ବାଧ୍ୟ ହୋଇ ଦିଲ୍ଲୀ ନଗରୀରୁ ମଥୁରା ଅଭିମୁଖେ ଯାତ୍ରା କଲୁ । ତିନିଘଣ୍ଟା ପରେ ମଥୁରାରେ ପହଞ୍ଚିଲୁ । ପୁରାଣପ୍ରସିଦ୍ଧ ମଥୁରା ନଗରୀ ଓ ଯମୁନା ନଦୀ ପ୍ରାଣରେ ବଡ଼ ଆନନ୍ଦ ଦେଲା । ସହରଟି ବହୁ ପ୍ରାଚୀନ ହୋଇ ଥିବାରୁ ଓ କ୍ରମେ କ୍ରମେ ସଂପ୍ରସାରିତ ହୋଇଥିବାରୁ ରାସ୍ତାଗୁଡ଼ିକ ତେତେ ପ୍ରଶସ୍ତ ନୁହେଁ । ଦୁଗ୍ଧ ଓ ଦୁଗ୍ଧଜାତ ପଦାର୍ଥ ଏଠାରେ ପ୍ରଚୁର ଭାବରେ ମିଳେ । ସ୍ଥାନୀୟ ବ୍ୟକ୍ତିମାନେ ଦେଖିବାକୁ ଅପେକ୍ଷାକୃତ ସୁସ୍ଥ, ସବଳ ଓ ନାରୀ-ମାନଙ୍କର ଅବୟବ ସୁଗଠିତ । ଏଠାର ଲୋକମାନେ ଆଧୁନିକତା ସଙ୍ଗେ କାନ୍ଧ ମିଳାଇ ରକ୍ଷଣଶୀଳତା ଛାଡ଼ି ପାରିନାହାନ୍ତି ବୋଲି ମନେ ହେଲା । ମୁଷ୍ଟିମେୟ କେତୋଟି ହୋଟେଲ ଛାଡ଼ି ଦେଲେ ବାହିଲର ଜଳଖିଆ କିମ୍ବା ଅନ୍ୟାନ୍ୟ ଖାଦ୍ୟଦ୍ରବ୍ୟ ପ୍ରଭୃତି ଖାଇବା ଉପଯୋଗୀ ଦୋକାନ ନାହିଁ କହିଲେ ଚଳେ । ଏଠାରେ ଦ୍ୱାରକାଧୀଶ ମନ୍ଦିର ଓ ଅନ୍ୟ କେତେକ ପ୍ରାଚୀନ ପୌରାଣିକ ସ୍ଥାନ ଦର୍ଶନୀୟ । ମଥୁରାରେ ଗୋଟିଏ ସୁନ୍ଦର ମ୍ୟୁଜିୟମ୍ ଅଛି । ଏଠାରେ ସଂରକ୍ଷିତ ଅଧିକାଂଶ ପଦାର୍ଥ ବୁଦ୍ଧଦେବଙ୍କ ସମ୍ବନ୍ଧୀୟ ଓ ମୌର୍ଯ୍ୟ

କମ୍ବା ଗୁପ୍ତବଂଶ ଅମଳର । ତା ଛଡ଼ା ସଂରକ୍ଷିତ ସମସ୍ତ ପଦାର୍ଥର ବିବରଣୀ ଗୋଟିଏ ପୁସ୍ତକରେ ପ୍ରକାଶିତ ହୋଇ ବିକ୍ରୀତ ହୁଏ । ଆମ ପ୍ରଦେଶର ମ୍ୟୁଜିୟମ୍ ଏହି ଧରଣର ରକ୍ଷିତ ହେବା ବାଞ୍ଛନୀୟ ।

ମଥୁରାରୁ ବୃନ୍ଦାବନ ଯାତ୍ରା କଲୁ । ବାଟରେ ଶ୍ରୀମଦ୍ ଭଗବତ ଗୀତା ମନ୍ଦିର ଦର୍ଶନ କଲୁ । ଏ ମନ୍ଦିରଟି ଦିଲ୍ଲୀର ବିରଳା ମନ୍ଦିର ପରି ଆଧୁନିକ ଧରଣର ତିଆରି । ଗୋଟିଏ ସ୍ତମ୍ଭରେ ଗୀତାର ସମସ୍ତ ଶ୍ଳୋକ ଖୋଦିତ ହୋଇଅଛି । ତା ଛଡ଼ା ଐତିହାସିକ ଓ ସାଂସ୍କୃତିକ ବିଭିନ୍ନ ଚିତ୍ର ମଧ୍ୟ ମନ୍ଦିର ଗାତ୍ରରେ ଚିତ୍ରିତ ହୋଇଛି । ବୃନ୍ଦାବନର ରଙ୍ଗନାଥ ମନ୍ଦିର ପ୍ରାଙ୍ଗଣ ମଧ୍ୟରେ ଗୋଟିଏ ସ୍ୱର୍ଣ୍ଣସ୍ତମ୍ଭ ଅଛି । ଏହାର ଉଚ୍ଚତା ଗୁଳଶ ହାତ । ଏଠାରେ ସାଢ଼େ ବାର ମହଣ ସୁନା ଲାଗିଥିବାର ଶୁଣାଯାଏ । ଏଠାରେ ସାହାଜି ନାମକ ଏକ ହିନ୍ଦୁ ମନ୍ଦିର ଅଛି । ଏହା ତାଜମହଲ ଅନୁକରଣରେ ନିର୍ମିତ । ମନ୍ଦିରଟି ସର୍ବାଂଶ ଶ୍ୱେତ ମାର୍ବଲ ପ୍ରସ୍ତରରେ ନିର୍ମିତ ଓ ବୃନ୍ଦାବନ ମଧ୍ୟରେ ଏହା ସବୁଠାରୁ ସୁଦୃଶ୍ୟ । ବୃନ୍ଦାବନ ସହରଟି ମଥୁରା ଅପେକ୍ଷା ଟିକିଏ ଉନ୍ନତ ଧରଣର । ଏହାର ରାସ୍ତା ପ୍ରଶସ୍ତ ।

ମଥୁରାରେ ଥିଲାବେଳେ ଦୋଳ ଆରମ୍ଭ ହୋଇଗଲା । ଦୋଳ ଉତ୍ତର-ଭାରତର ଏକ ପ୍ରଧାନ ଉତ୍ସବ । ଠାଏ ଠାଏ ରଙ୍ଗପାଣି ଆମ ଉପରକୁ ପକାଇବାକୁ ସେଠା ପିଲମାନେ ଭୁଲି ନଥିଲେ ।

ମଥୁରାରୁ ଆଗ୍ରା ଅଭିମୁଖେ ଯାତ୍ରା କଲୁ । ଆଗ୍ରାଦୁର୍ଗ ଓ ତାଜମହଲ ନିକଟବର୍ତ୍ତୀ ଗୋଟିଏ ସ୍ଥାନ ସୁବିଧାଜନକ ହେବ ଭାବି ସେଠାରେ ରହିବାକୁ ପଡ଼ିଲା । ଆଗ୍ରା ଯମୁନାନଦୀ କୂଳରେ ଅବସ୍ଥିତ । ଆଗ୍ରାଦୁର୍ଗ ବାସ୍ତବିକ୍ ଦର୍ଶନୀୟ । କାରୁକାର୍ଯ୍ୟ, ସୌନ୍ଦର୍ଯ୍ୟ ସମସ୍ତ ଗୁଣରେ ଏହା ଲାଲକିଲ୍ଲା ଅପେକ୍ଷା ଉତ୍କୃଷ୍ଟ ସନ୍ଦେହ ନାହିଁ । ଦୁର୍ଗଟି ଯମୁନା ନଦୀ କୂଳରେ ନିର୍ମିତ ଓ ଗୋଟିଏ

ପରଖାଦ୍ୱାରା ବେଷ୍ଟିତ । ଦୁର୍ଗର ସୁଦୃଢ଼ ପ୍ରାଚୀର ଲୋହିତ ପ୍ରସ୍ତରରେ ନିର୍ମିତ । ଏହି ଦୁର୍ଗ ମଧ୍ୟରେ ଦେଓ୍ୱାନି ଆମ୍ ବା ଦରବାର ଗୃହ ଏକାନ୍ତ ରମଣୀୟ । ଏଠାରେ ସମ୍ରାଟଙ୍କ ସିଂହାସନ-ପିଣ୍ଡି ଗୋଟିଏ ବଡ଼ କାରୁକାର୍ଯ୍ୟମଣ୍ଡିତ ମାର୍ବଲ ପଥରରେ ତିଆରି । ରଙ୍ଗମହଲ, ଦେଓ୍ୱାନି ଖାସ୍ ବା ଦର୍ଶନ କକ୍ଷ, ବହୁ ମସ୍‌ଜିଦ୍, ମହଲ, ଉଦ୍ୟାନ ଓ ପୁଷ୍କରିଣୀ ମଧ୍ୟ ଦୁର୍ଗମଧ୍ୟରେ ରହିଛି । ଏଠାରେ ଗୋଟିଏ ବିଷୟ ଉଲ୍ଲେଖ ଯୋଗ୍ୟ । ଲାଲକିଲ୍ଲା ଓ ଆଗ୍ରା-ଦୁର୍ଗର ଅଧିକାଂଶ ମୂଲ୍ୟବାନ୍ ପଦାର୍ଥସମୂହ ମରହଟ୍ଟାମାନଙ୍କ ଦ୍ୱାରା ଲୁଣ୍ଠିତ ହୋଇଥିଲା ଓ ବହୁ କୀର୍ତ୍ତି ଭଗ୍ନାବସ୍ଥାରେ ଥିଲା । ବ୍ରିଟିଶ ଶାସନରେ ଲର୍ଡ କର୍ଜନ ଭାରତର ଏହି ପ୍ରାଚୀନ କୀର୍ତ୍ତି-ମାନଙ୍କର ଉଦ୍ଧାର ଓ ସଂରକ୍ଷଣ ଲାଗି ଚେଷ୍ଟିତ ହେଲେ ଓ ଏଥିଲାଗି ସ୍ୱତନ୍ତ୍ର ପ୍ରତ୍ନତତ୍ତ୍ୱ ବିଭାଗ ସ୍ଥାପନ କଲେ । ଫଳତଃ ବହୁ କୀର୍ତ୍ତି ଧ୍ୱଂସ-ମୁଖରୁ ରକ୍ଷା ପାଇଗଲା । ଆଗ୍ରା-ଦୁର୍ଗ ଓ ଲାଲକିଲ୍ଲାର ବହୁ କାରୁକାର୍ଯ୍ୟମୟ ପଦାର୍ଥ ଏହି ଭାବରେ ସଂରକ୍ଷିତ ହୋଇଛି ।

ଆଗ୍ରାରେ ଯମୁନା ନଦୀର ଅପର ପାର୍ଶ୍ୱରେ ଇତ୍‌ମଦ୍‌ଉଦ୍ଦୌଲା ମଧ୍ୟ ଗୋଟିଏ ରମଣୀୟ କୀର୍ତ୍ତି । ଏହା ଗୋଟିଏ ସମାଧି-ମନ୍ଦିର । ଅପୂର୍ବ କାରୁକାର୍ଯ୍ୟମଣ୍ଡିତ ହୋଇ ଏବେ ମଧ୍ୟ ଏହା ବିଦ୍ୟମାନ । ଗୋଟିଏ ଗୋଟିଏ କବର ଉପରେ ବହୁ ଅର୍ଥ ବ୍ୟୟରେ ଏପରି ସୁନ୍ଦର କୀର୍ତ୍ତିମାନ ନିର୍ମାଣ କରିବା ମୋଗଲ ବାଦସାହମାନଙ୍କର ଗୋଟାଏ ଖିଆଲ ଥିଲା । ମୋଗଲମାନଙ୍କର ଶ୍ରେଷ୍ଠ କୀର୍ତ୍ତିସମୂହ ଏହି ମୃତ ସମାଧି ଉପରେ ଗଠିତ । ଏହାର ଶ୍ରେଷ୍ଠ ଦୃଷ୍ଟାନ୍ତ ତାଜମହଲ ଓ ଆଗ୍ରାର ସିକନ୍ଦରସ୍ଥ ଆକବରଙ୍କ ସମାଧି ମଧ୍ୟ ଉଦାହରଣ ସ୍ୱରୂପ ଉଲ୍ଲେଖ କରାଯାଇପାରେ । ଇତ୍‌ମଦଉଦ୍ଦୌଲା ପରେ ତାଜମହଲ ଦେଖିବାକୁ ଗଲୁ । ଛାତ୍ରାବସ୍ଥାରୁ ପାଠ୍ୟ ପୁସ୍ତକ ମାଧ୍ୟମରେ ତାଜମହଲ

ସହ ପରିଚୟ ଘଟି ଯାଇଛି । ପୃଥିବୀବନ୍ଦିତ ପ୍ରେମର ଅମର ପ୍ରତିଗ୍ରହ ତାଜମହଲ ଦର୍ଶନ କରିବା ପୂର୍ବରୁ ମନରେ ସ୍ୱାଭାବିକ ଅବେଗ ଓ ଉତ୍କଣ୍ଠା ପ୍ରକାଶ ପାଇବା ସ୍ୱାଭାବିକ । ତାଜମହଲ ଦର୍ଶନ ପୂର୍ବରୁ 'ତାଜଗଞ୍ଜ' ପ୍ରବେଶ ଦ୍ୱାରର ବିଶାଳତା ଓ ମନୋହାରିତା ଦର୍ଶନ କରି ଦର୍ଶକ ମୁଗ୍ଧ ହୋଇଥାଏ ।

ଦିନେ ଯମୁନା ନଦୀ କୂଳରେ ଶ୍ରୀକୃଷ୍ଣ ସ୍ୱର୍ଗୀୟ ପ୍ରେମର ଲୀଳା କରି ଯାଇଥିଲେ ଓ ସେହି ଯମୁନାକୁ ସାକ୍ଷୀ ରଖି ମୋଗଲ ସମ୍ରାଟ ସାହାଜାହାନ ସ୍ତ୍ରୀୟ ପ୍ରାଣପ୍ରିୟା ମମତାଜଙ୍କ ସ୍ମୃତିଚିହ୍ନ ଗଢ଼ିଗଲେ— ପ୍ରେମର ଏହି ଅମର କୀର୍ତ୍ତି ଯମୁନା ପୁଳିନରେ । ତାଜମହଲ ବାସ୍ତବିକ ଶୁଭ୍ର ରଜନୀରେ ସୁଉପଭୋଗ୍ୟ । ଭାଗ୍ୟତଃ ଉକ୍ତଦିନ ଦୋଳ ପୂର୍ଣ୍ଣିମାର ପୂର୍ବ ଦିବସ ହୋଇଥିବାରୁ ସନ୍ଧ୍ୟାର ପରେପରେ ତାଜ ଅପୂର୍ବ ଶୋଭା ଧାରଣ କଲା । ସଙ୍ଗେସଙ୍ଗେ ଚନ୍ଦ୍ରଙ୍କର ସ୍ୱଚ୍ଛ କିରଣ ତାଜମହଲ ଗାତ୍ରରେ ସଂଯୋଜିତ ମୂଲ୍ୟବାନ୍ ପ୍ରସ୍ତରମାନଙ୍କରେ ପ୍ରତିଫଳିତ ହୋଇ ପରୀରାଜ୍ୟର କଳ୍ପନା ମନକୁ ଆଣିଦେଲା । ମନେହେଲା କ୍ଷଣକାଳ ନିମନ୍ତେ ସଂସାରର ନିରିଟ ବାସ୍ତବତାଠାରୁ ଦୂରରେ ରହି ଆମେ ସ୍ୱପ୍ନରାଜ୍ୟରେ ବିଚରଣ କରୁଛୁ । ବାସ୍ତବିକ୍ ତାଜମହଲଠାରେ ଦର୍ଶକ ଆତ୍ମବିସ୍ମୃତ ହୋଇଯାଏ । ଯେଉଁ ସାହାଜାହାନ ଲାଲକିଲ୍ଲା ମଧ୍ୟସ୍ଥ ସ୍ତ୍ରୀୟ ବାସଭୂମିକୁ ସ୍ୱର୍ଗ ରୂପରେ କଳ୍ପନା କରିଥିଲେ, ସେହି ସାହାଜାହାନଙ୍କ ନିର୍ଦ୍ଦେଶରେ ସ୍ୱର୍ଗର ପାରିଜାତ ଭଳି ଅନିନ୍ଦ୍ୟ ସୁନ୍ଦର କୀର୍ତ୍ତି ତାଜମହଲ ନିର୍ମିତ ହେବା ଅଧିକ ବିଚିତ୍ର ନୁହେଁ । ତାଜମହଲ ପ୍ରାଙ୍ଗଣରେ ଏହି ଦୃଶ୍ୟ ଉପଭୋଗରେ ତନ୍ମୟ ଥିଲାବେଳେ ଚକ୍ଷୁ ମୋର ସ୍ୱତଃ ହଜାର ମାଇଲ ଦୂରବର୍ତ୍ତୀ ବିରାଟ ବିଜନ ବେଳାରେ ଓଡ଼ିଶୀ ଶିଳ୍ପ ପରାକାଷ୍ଠାର ମୂକସାକ୍ଷୀରୂପେ ଦଣ୍ଡାୟମାନ କୋଣାର୍କ ମନ୍ଦିରର ଭଗ୍ନାବଶେଷ ପ୍ରତି ଆକର୍ଷିତ ହୋଇଗଲା । ତାଜମହଲ

ଦର୍ଶନ କରିବାର ଦୁଇବର୍ଷ ପୂର୍ବରୁ ଥରେ ଠିକ୍ ଏହିପରି ନିଶୀଥରେ ବନ୍ଧୁମାନଙ୍କ ଗହଣରେ କୋଣାର୍କ ଦର୍ଶନ କରିବାର ସୁଯୋଗ ମିଳିଥିଲା । କୋଣାର୍କ, ଭୁବନେଶ୍ୱର ପ୍ରଭୃତିରେ ପ୍ରସ୍ତରଖଣ୍ଡ ଯେପରି ଜୀବନ୍ତ ହୋଇଛନ୍ତି, ମନୁଷ୍ୟ ଜୀବନର କାର୍ଯ୍ୟକଳାପର ପ୍ରକାଶ ରୂପେ ଏଗୁଡ଼ିକ ଯେତେ ନିଖୁଣ ଓ ଅନବଦ୍ୟ ତାହା ତାଜମହଲ କିମ୍ବା ଅନ୍ୟନ କାହିଁ ? ଏଥିରେ କେବଳ ବାଦସାହୀ ଆଭିଜାତ୍ୟ ଛନେ ଛନେ ପ୍ରସ୍ଫୁଟିତ । କଳାରେ କମନୀୟତା ଓ ସୌଷ୍ଠବ ପରିବର୍ତ୍ତେ ଅପୂର୍ବ ସନ୍ଧୀକରଣ ଓ ଅତିରଞ୍ଜନ ଏଥିରେ ପ୍ରକାଶିତ । ତାଜର ସନ୍ଦର୍ଶନରେ ଶତ ଆକୃଷ୍ଟ ହେବା ପୂର୍ବରୁ ତହିଁରେ ବିସ୍ମୟ ଭାବର ଉଦ୍ରେକ ହୋଇଥାଏ । ପ୍ରବେଶଦ୍ୱାର ସମ୍ମୁଖରେ ଏକ ଉଦ୍ୟାନ ଅଛି । ଉଦ୍ୟାନର ଉତ୍ତର ଦିଗରେ ଲୋହିତ ପ୍ରସ୍ତରର ଏକ ବିରାଟ ଚତ୍ୱର ବିଦ୍ୟମାନ । ଉକ୍ତ ଚତ୍ୱରର ମଧ୍ୟ ଭାଗରେ ଶ୍ୱେତ ପ୍ରସ୍ତର ନିର୍ମିତ ଏକ ବେଦୀର ଉପରିଭାଗରେ ତାଜମହଲ ନିର୍ମିତ । ତାଜମହଲ ଶ୍ୱେତ ପ୍ରସ୍ତରଦ୍ୱାରା ଗମ୍ବୁଜ ଆକାରରେ ନିର୍ମିତ ହୋଇଅଛି । ଚାରିପାଖରେ ଚାରୋଟି ଶ୍ୱେତ ମର୍ମର ପ୍ରସ୍ତରର ସ୍ତମ୍ଭ ଓ ମଧ୍ୟ ସ୍ଥଳରେ ବିରାଟ ତାଜଗମ୍ବୁଜ । ସମାଧି ମନ୍ଦିର ଚାରିପାଖ ନାନା କାରୁକାର୍ଯ୍ୟରେ ମଣ୍ଡିତ । ପ୍ରାସାଦ ମଧ୍ୟରୁ ଭୂଗର୍ଭନିହିତ ମମତାଜଙ୍କ ସମାଧି ନିକଟକୁ ଯିବାକୁ ସୋପାନ ଅତିକ୍ରମ କରିବାକୁ ପଡ଼ିଥାଏ । ଏହି ସମାଧି କକ୍ଷଟି ବହୁ ମୂଲ୍ୟବାନ୍ ପ୍ରସ୍ତରର ନାନା କାରୁକାର୍ଯ୍ୟରେ ପରିଶୋଭିତ । ଗୋଟିଏ ଗୋଟିଏ ପୁଷ୍ପର ବିଭିନ୍ନ ପାଖୁଡ଼ା ବିଭିନ୍ନ ମଣି ମୁକ୍ତାଦ୍ୱାରା ନିର୍ମିତ ଓ ରଞ୍ଜିତ ।

ପରଦିନ ଫତେପୁର ଶିକ୍ରୀ ଦର୍ଶନ କରିବାକୁ ଯାଇଥିଲୁ । ଆଗ୍ରାଠାରୁ ଏହା ଏକୋଇଶ ମାଇଲ୍ ଦୂର । ଅକବର ଏଠାରେ ଦୁର୍ଗ

ନିର୍ମାଣ କରିଥିଲେ । ଏହାର ଐତିହାସିକ ପ୍ରାଧାନ୍ୟ ସାଧାରଣରେ ଅବିଦିତ ନୁହେଁ । ଏହି ଦୁର୍ଗ ମଧ୍ୟରେ କେତେକ ସମାଧି ଦର୍ଶନୀୟ ।

ଆଗ୍ରାଠାରୁ ଲକ୍ଷ୍ନୌ ଉତ୍ତରପ୍ରଦେଶର ରାଜଧାନୀରେ ପହଞ୍ଚିଲୁ । ଲକ୍ଷ୍ନୌ ଭାରତର ମନୋହର ନଗରୀମାନଙ୍କ ମଧ୍ୟରେ ଏକତମ । ରାସ୍ତାଗୁଡ଼ିକ ସୁନ୍ଦର ଓ ପ୍ରଶସ୍ତ । ଲକ୍ଷ୍ନୌ ନଗରୀକୁ 'ଭାରତର ଉପବନ' ବୋଲି କୁହାଯାଇଥାଏ । ଏଠାର ରେଲ ଷ୍ଟେସନ ଏକାନ୍ତ ସୁନ୍ଦର । ଏଠାରେ ଗୋଟିଏ ଚିଡ଼ିଆଖାନା ଓ ଗୋଟିଏ ଯାଦୁଘର ମଧ୍ୟ ଅଛି । ଲକ୍ଷ୍ନୌରେ ଗୋଟିଏ ଦୁର୍ଗ ଅଛି । ସିପାହୀ ବିଦ୍ରୋହ ସମୟରେ ଏଠାରେ ମଧ୍ୟ ବିଦ୍ରୋହ ଅଗ୍ନି ପ୍ରଜ୍ୱଳିତ ହୋଇଥିଲା । ଇମାମ୍‌ବାଡ଼ା ନାମକ ଏକ ପ୍ରାର୍ଥନା ମନ୍ଦିର ଏକାନ୍ତ ଦର୍ଶନୀୟ ସ୍ଥାନ । ନଗର ମଧ୍ୟରେ ସୁନ୍ଦର ପାର୍କ ଅଛି । ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟ ମଧ୍ୟ ଦର୍ଶନୀୟ । ବିଶ୍ୱବିଦ୍ୟାଳୟର ପାଠାଗାର ସୁନ୍ଦର ଓ ବିରାଟ । ଏଠାରେ ସଙ୍ଗୀତର ଉଚ୍ଚଶିକ୍ଷା ଲାଗି ଗୋଟିଏ ବିଶ୍ୱବିଦ୍ୟାଳୟ ଅଛି । ଏଠାରେ ସଙ୍ଗୀତରେ ଛାତ୍ରମାନେ ଉପାଧି ଲାଭ କରିଥାନ୍ତି । ତା ଛଡ଼ା ବାଳିକାମାନଙ୍କ ନିମନ୍ତେ ଏକ ସ୍ୱତନ୍ତ୍ର କଲେଜ । ସେଠାରେ ବିଭିନ୍ନ ବିଷୟରେ ସେମାନଙ୍କ ନିମନ୍ତେ ଏମ୍. ଏ. ଶିକ୍ଷାର ବ୍ୟବସ୍ଥା ଅଛି । ରାସ୍ତା ଓ ଷ୍ଟେସନର ଆଲୋକ-ସଜ୍ଜା ଚମତ୍କାର । ବାସ୍ତବରେ ଲକ୍ଷ୍ନୌର ରମଣୀୟତାରେ ଯେ କୌଣସି ଦର୍ଶକ ମୁଗ୍ଧ ହୋଇଥାଏ ।

ଲକ୍ଷ୍ନୌ ପରେ ଏଲାହାବାଦ । ଏଲାହାବାଦ ଉତ୍ତର-ପ୍ରଦେଶର ପୁରାତନ ରାଜଧାନୀ । ତେଣୁ ଏହା ଗୋଟିଏ ପୁରାତନ ନଗର । ନଗରଟି ପରିକଳ୍ପିତ ହୋଇ ନ ଥିଲେ ହେଁ ବା ରାସ୍ତାଗୁଡ଼ିକ ପ୍ରଶସ୍ତ । ବିଶେଷତଃ ସିଭିଲ୍‌ଲାଇନ୍, ବିଶ୍ୱବିଦ୍ୟାଳୟ ରୋଡ଼, କଚେରୀ ରୋଡ଼

ରାସ୍ତା ଗୁଡ଼ିକ ବଡ଼ ସୁନ୍ଦର । ଏଠା ବିଶ୍ୱବିଦ୍ୟାଳୟ ଆମ ଓଡ଼ିଆ ଛାତ୍ରଙ୍କ ନିକଟରେ ଅପରିଚିତ ନୁହେଁ । ପ୍ରାୟ ଶତସଂଖ୍ୟକ ଓଡ଼ିଆ ଛାତ୍ର ସେ ସମୟରେ ଏଠାରେ ଅଧ୍ୟୟନ କରୁଥିଲେ । ବିଦେଶରେ ପରିଚିତ ବନ୍ଧୁମାନଙ୍କ ସଙ୍ଗରେ ରହିବାର ସୁଯୋଗ ମିଳିବାରୁ ଏଲହାବାଦ ଏକାନ୍ତ ପରିଚିତ ସ୍ଥାନ ପରି ବୋଧ ହେଲା ।

ଏଲହାବାଦରେ ଗୋଟିଏ ଖୁବ୍ ବଡ଼ ପାର୍କ ଅଛି । ପାର୍କ ମଝିରେ ଗୋଟିଏ ପାଠାଗାର ଅଛି । ଦିଲ୍ଲୀଠାରୁ ଆରମ୍ଭ କରି ଉତ୍ତର ଭାରତର ଅନ୍ୟାନ୍ୟ ଶ୍ରେଷ୍ଠ ସହର ପର୍ଯ୍ୟନ୍ତ କେଉଁଠି ପାର୍କର ଅଭାବ ନାହିଁ । କର୍ମକ୍ଳାନ୍ତ, ନୀରସ ଜୀବନରେ ଆନନ୍ଦ ଆଣି ଦେବା ନିମନ୍ତେ ପାର୍କ ଗୁଡ଼ିକର ଆବଶ୍ୟକତା ଓ ଉପାଦେୟତା ଅଧିକ । ଏଲହାବାଦରେ ସ୍ୱରାଜଆଶ୍ରମ, କମଳା ନେହେରୁ ଚିକିତ୍ସାଳୟ ଓ ସାଧାରଣ ପାଠାଗାର ଦର୍ଶନୀୟ । ପ୍ରାଚୀନ କବିମାନଙ୍କର ଲେଖନୀରେ ଚର୍ଚ୍ଚିତ ହିନ୍ଦୁମାନଙ୍କର ପୁଣ୍ୟତୀର୍ଥ ରୂପେ କୀର୍ତ୍ତିତ ଗଙ୍ଗା ଯମୁନା ସଙ୍ଗମ ପ୍ରୟାଗ ଦେଖିବାର କଥା । ପ୍ରୟାଗଠାରେ ଗଙ୍ଗାର ଆବିଳ ଜଳ ଓ ଯମୁନାର ସ୍ୱଚ୍ଛ ନୀଳ ଜଳ ପରିଷ୍କାର ଭାବରେ ଜାଣିହୁଏ । ସଙ୍ଗମ ସ୍ଥଳ ହିନ୍ଦୁମାନଙ୍କର ଏକ ପ୍ରଧାନ ତୀର୍ଥ ସ୍ଥଳ । ଏହି ପ୍ରୟାଗରେ କୁମ୍ଭମେଳା ଅନୁଷ୍ଠିତ ହୁଏ । ସେ ସମୟରେ ଏଠାରେ ବିପୁଳ ଜନସମାଗମ ହୁଏ । ପ୍ରୟାଗ ତୀର୍ଥରେ ସ୍ନାନ କରି ନିକଟବର୍ତ୍ତୀ ପ୍ରୟାଗେଶ୍ୱର ମନ୍ଦିର ପ୍ରଭୃତି ଦର୍ଶନ କରିବାକୁ ପଡ଼େ । ମନ୍ଦିରଗୁଡ଼ିକ ବହୁ ପ୍ରାଚୀନ । ଏଲହାବାଦ ବିଶ୍ୱବିଦ୍ୟାଳୟ ଏକ ବିରାଟ ଶିକ୍ଷା-ଅନୁଷ୍ଠାନ । ଏଲହାବାଦ ଠାରୁ ପାଞ୍ଚ ମାଇଲ ଦୂରବର୍ତ୍ତୀ ନଇନି କୃଷି ଅନୁଷ୍ଠାନ ଗୋଟିଏ ଉଚ୍ଚ ଧରଣର କୃଷି ଶିକ୍ଷା କ୍ଷେତ୍ର । ଏଠାକାର ଓଡ଼ିଆ ଛାତ୍ରମାନଙ୍କର ସୌହାର୍ଦ୍ଦ୍ୟ ମନରେ ଅଧିକ ଆନନ୍ଦ ଦେଲା ।

ଏଲାହାବାଦରେ ଦୁଇଦିନ ରହିବା ପରେ କଲିକତା ଅସିବା ନିମନ୍ତେ ବମ୍ବେ ମେଲ୍‌ର ଆଶ୍ରୟ ନେବାକୁ ପଡ଼ିଲା । ସମୟର ଅଭାବ ଓ ଦୀର୍ଘ ବାରଦିନ ବିଭିନ୍ନ ସ୍ଥାନରେ ଭ୍ରମଣଜନିତ କ୍ଳାନ୍ତି ଏ ସମସ୍ତ ଯୋଗୁଁ କଲିକତାରେ ଅଧିକ ସମୟ ରହିବା ସମ୍ଭବ ହେଲା ନାହିଁ । ଦୁଇ ତିନି ଘଣ୍ଟା କଲିକତାର ବଜାରରେ ବୁଲି ପୁଣି ପୁରୀ ଏକ୍ସପ୍ରେସରେ କଟକ ମୁହାଁ ହେଲୁ । ବାରେଟି ଦିନର ଉତ୍ତର-ଭାରତ ଭ୍ରମଣ—ତା ସଙ୍ଗେ ଭାରତର ପ୍ରଧାନ କେତେକ ନଗର ଦର୍ଶନ-ଜନିତ ବ୍ୟାପକ ଅନୁଭୂତିକୁ ସମ୍ବଳ କରି କଟକ ଫେରି ଅସିଲୁ । ଦିଲ୍ଲୀ ନଗରୀର ପ୍ରଶସ୍ତ ରାସ୍ତାରେ ପଦଚାରଣ କରିଥିବାରୁ କଟକ ସହରର ସଂକୀର୍ଣ୍ଣ ପଥ ଦୁଇ ତିନିଦିନ ଯାଏ ନୂତନପରି ଜଣା ପଡ଼ିଲା । ଛାତ୍ର ଜୀବନରେ ସହପାଠୀ ବନ୍ଧୁମାନଙ୍କ ସଙ୍ଗରେ ପୂଜ୍ୟ ଅଧ୍ୟାପକଙ୍କ ତତ୍ତ୍ୱାବଧାନରେ ଭ୍ରମଣର ସୁଯୋଗଜନିତ ଆନନ୍ଦ ଛାତ୍ର ଜୀବନର ପରିସମାପ୍ତିରେ ବାସ୍ତବିକ୍ ଏକାନ୍ତ ଦୁର୍ଲ୍ଲଭ ।

ପ୍ରଶ୍ନ—୧ । 'ଭ୍ରମଣ ଦ୍ୱାରା ବିଭିନ୍ନ ସ୍ଥାନ ଦର୍ଶନ କରି ଆନନ୍ଦଲାଭ କରିବା ସଙ୍ଗେ ମାନସିକ ସଂକୀର୍ଣ୍ଣତା ଦୂରୀଭୂତ ହୋଇଥାଏ ଓ ବହୁ ଶିକ୍ଷଣୀୟ ପଦାର୍ଥ ସମ୍ବନ୍ଧରେ ଧାରଣା ଜନ୍ମେ ।' ପଠିତ ବିଷୟକୁ ଆଶ୍ରୟ କରି ଏହାର ସତ୍ୟାସତ୍ୟ ନିର୍ଣ୍ଣୟ କର ।

୨ । ଭାରତର ରାଜଧାନୀ ଦିଲ୍ଲୀ ବାସ୍ତବରେ ଏକ ସଦ୍ଦର୍ଶ୍ୟ ସ୍ଥାନ । ବର୍ଣ୍ଣିତ ବିବରଣୀରୁ ଦିଲ୍ଲୀ ନଗରୀ ସମ୍ବନ୍ଧରେ ତୁମର ଧାରଣାକୁ ରୂପ ଦିଅ ।

୩ । ତାଜମହଲ ବାଦସାହୀ ଅଭିଜାତ୍ୟ ଓ ଅପୂର୍ବ ଶିଳ୍ପ-ନୈପୁଣ୍ୟର ଏକ ସମନ୍ୱୟ । ଏହା କେତେଦୂର ସତ୍ୟ ?

---

# ଭାରତୀୟ ନୌଶିଳ୍ପ

ସାମାନ୍ୟ ପଦାର୍ଥରେ ସନ୍ତୋଷ ଲାଭ କରିବା ମନୁଷ୍ୟ ପ୍ରାଣୀର ସ୍ୱାଭାବିକ ପ୍ରବୃତ୍ତି ନୁହେଁ । କେବଳ ଜୀବନ ଧାରଣ କରିବା ନିମନ୍ତେ ଖାଦ୍ୟ ଓ ପରିଧେୟର ଆୟୋଜନ କରି ମନୁଷ୍ୟ ତୃପ୍ତ ରହିନାହିଁ । ମାନବର ଉନ୍ନତିପଥରେ ପ୍ରତିକୂଳ ଯେକୌଣସି ପ୍ରତିବନ୍ଧକକୁ ଅପସାରଣ କରିବା ନିମନ୍ତେ ସେ ଅନାଦିକାଳରୁ ସତତ ଉଦ୍ୟମଶୀଳ । କେବଳ ସ୍ଥଳରେ ବିଚରଣ କରି ମନୁଷ୍ୟ ସନ୍ତୁଷ୍ଟ ହୋଇ ନାହିଁ । ଜଳ, ସ୍ଥଳ ଓ ଆକାଶକୁ ଆୟତ୍ତକରିବା ନିମନ୍ତେ ବହୁ ସାହସୀ ବ୍ୟକ୍ତି ଅକ୍ଳାନ୍ତ ଉଦ୍ୟମକରି ନିଜର ଜୀବନ ବିନିମୟରେ ମଧ୍ୟ କୃତକାର୍ଯ୍ୟ ହୋଇଛନ୍ତି । ଫଳତଃ ମନୁଷ୍ୟ ସ୍ଥଳପଥରେ ରେଲ୍ ଓ ମଟର ପ୍ରଭୃତି ଦ୍ୱାରା ବହୁ ଦୂରବର୍ତ୍ତୀ ସ୍ଥାନକୁ ଖୁବ୍ କମ୍ ସମୟ ମଧ୍ୟରେ ଯାଇ ପାରୁଛି, ଜଳପଥରେ ସମୁଦ୍ରର ତରଙ୍ଗମାଳାବକ୍ଷରେ ପୋତଚାଳନା କରି ଏକଦେଶ ସହିତ ଅନ୍ୟ ଦେଶର ସମ୍ପର୍କ ସ୍ଥାପନ କରି ପାରୁଛି ଓ ଆକାଶପଥରେ ଶତ ଶତ କ୍ରୋଶ ଦୂରତାକୁ ସାମାନ୍ୟ କେତେ ଘଣ୍ଟା ସମୟରେ ଅତିକ୍ରମ କରିବାକୁ ସମର୍ଥ ହେଉଛି । ଶେଷୋକ୍ତ ପଥରେ ମନୁଷ୍ୟ ସର୍ବାପେକ୍ଷା ଦ୍ରୁତ ଗତିରେ ଯାତ୍ରା କରି ପାରୁଥିଲେ ହେଁ ଏହା ସହିତ ତାର ସମ୍ପର୍କ ଅଧିକ ଦିନର ନୁହେଁ । ସଭ୍ୟତାର ବହୁ ପ୍ରାଚୀନ କାଳରୁ ମନୁଷ୍ୟ ନଦୀ, ହ୍ରଦ ଓ ସମୁଦ୍ର ସହିତ ସମ୍ପର୍କ ସ୍ଥାପନ କରି ସେଗୁଡ଼ିକୁ ଅତିକ୍ରମ କରିବା ନିମନ୍ତେ ଉପାୟ ଉଦ୍ଭାବନ କରି ଆସିଛି । ଜଳପଥରେ ପୋତଚାଳନା କରି ଏକ ଦେଶର ସଭ୍ୟତା ଓ ସଂସ୍କୃତି ଅନ୍ୟଦେଶରେ ପ୍ରସାର କରିବା

ସଙ୍ଗେ ସଙ୍ଗେ ନିଜର ଅର୍ଥିକ ଅବସ୍ଥାକୁ ଉନ୍ନତ କରିବା ନିମନ୍ତେ ସଭ୍ୟଜାତି ମାନଙ୍କ ମଧ୍ୟରେ ପ୍ରତିଯୋଗିତାର ଅଭାବ ନାହିଁ ।

ଅତୀତ ଭାରତର ନୌବାଣିଜ୍ୟ ସମ୍ବନ୍ଧୀୟ ଗୌରବମୟ ପ୍ରସଙ୍ଗ ଅଜି ସାଧାରଣଙ୍କର ଅଜ୍ଞାତ ହେଲେ ସୁଦ୍ଧା ଇତିହାସ ଏହାର ଦୃଢ଼ ସାକ୍ଷୀ । ଭାରତୀୟ ଅର୍ଯ୍ୟମାନେ କେବଳ ଗଙ୍ଗା ଓ ସିନ୍ଧୁ ପରି ବୃହତ୍ ନଦୀ ମାନଙ୍କରେ ନୁହେଁ, ବରଂ ସାଗର-ବକ୍ଷରେ ମଧ୍ୟ ପୋତ ଚାଳନା କରିବାରେ ନିଯୁକ୍ତ ଥିଲେ । ବୃହତ୍ ନୌକା ବା ପୋତନିର୍ମାଣ କୌଶଳ ଭାରତୀୟମାନଙ୍କ ଠାରେ ଅଜ୍ଞାତ ଥିଲେ ସେମାନେ ନୌଯାତ୍ରା କରିବାରେ ସମର୍ଥ ହୋଇପାରି ନ ଥାନ୍ତେ । ସୁତରାଂ ସେ ସମୟରେ ଭାରତର ପୋତାଶ୍ରୟଗୁଡ଼ିକ ବିଭିନ୍ନ ଆକାରର ପୋତରେ ପୂର୍ଣ୍ଣଥିଲା ଓ ଏଠାରେ ପୋତସମୂହ ନିର୍ମିତ ହେଉଥିଲା । ମୌର୍ଯ୍ୟ ରାଜାମାନଙ୍କ ଶାସନକାଳରେ ଆମଦେଶରେ ପୋତନିର୍ମିତ ହେଉଥିବାର ଇତିହାସରୁ ସୂଚନା ମିଳେ । ଜାଭା, ସୁମାତ୍ରା, ବୋର୍ଣ୍ଣିଓ ପ୍ରଭୃତି ପୂର୍ବ-ଭାରତୀୟ ଦ୍ୱୀପପୁଞ୍ଜରେ ଭାରତର ଉପନିବେଶ ଥିଲା । ଚୀନ, ଜାପାନ, ବହ୍ମଦେଶ, ଆରବ ଓ ଆଫ୍ରିକା ଉପକୂଳ ପ୍ରଭୃତିକୁ ଭାରତର ପୋତସମୂହ ଯାତ୍ରାକରି ଉକ୍ତ ଦେଶ ସହିତ ବ୍ୟବସାୟ ବାଣିଜ୍ୟରେ ନିଯୁକ୍ତଥିଲେ । ଚତୁର୍ଥ ଶତାବ୍ଦୀଠାରୁ ସପ୍ତମ ଶତାବ୍ଦୀ ପର୍ଯ୍ୟନ୍ତ ତାମ୍ରଲିପ୍ତି ବିଶେଷଭାବରେ ନୌବାଣିଜ୍ୟର କେନ୍ଦ୍ର ଥିଲା । ଚୀନପରିବ୍ରାଜକ ହୁଏନସାଂ ତାମ୍ରଲିପ୍ତି ବାଟେ ଓଡ଼ିଶାକୁ ଆସିଥିବାର ତାଙ୍କର ବିବରଣୀରେ ଲିପିବଦ୍ଧ କରିଅଛନ୍ତି । ସେତେବେଳେ କଳିଙ୍ଗ ନୌବାଣିଜ୍ୟରେ ଅତ୍ୟନ୍ତ ଉନ୍ନତ ଓ ଅଧିକ ଉତ୍କର୍ଷ ଲାଭ କରିଥିଲା ।

ଆଧୁନିକ-ଭାରତର ଅର୍ଥନୈତିକ ଅବସ୍ଥା ତୁଳନାରେ ପ୍ରାଚୀନ ଭାରତର ଅଧିବାସୀମାନେ ବହୁ ପରିମାଣରେ ଉନ୍ନତ ଥିଲେ । ଭାରତରେ ଉତ୍ପନ୍ନ ବହୁ ପଦାର୍ଥ ବିଦେଶରେ ବିକ୍ରୟକରି ବିନିମୟରେ ଅନ୍ୟ ଦେଶରୁ ମୂଲ୍ୟବାନ୍ ପଦାର୍ଥ ଓ ସ୍ୱର୍ଣ୍ଣ ପ୍ରଭୃତି ଆଣି ଭାରତକୁ ସମୃଦ୍ଧ କରିଥିଲେ । ଭାରତର ଆବଶ୍ୟକ ପଦାର୍ଥ ବ୍ୟତୀତ ଉଦ୍‌ବୃତ୍ତ ବହୁ ପଣ୍ୟଦ୍ରବ୍ୟ ଇଉରୋପକୁ ପ୍ରେରିତ ହେଉଥିଲା । ଉତ୍ତର-ପଶ୍ଚିମ ଅଞ୍ଚଳର ପ୍ରସିଦ୍ଧ ପଶମ, କାଶ୍ମୀରର ପଶମ-ନିର୍ମିତ କାରୁକାର୍ଯ୍ୟଯୁକ୍ତ ବିଖ୍ୟାତ ଶାଲ୍‌ଗୁ ରୋମ ଓ ଆରବିଆ ପ୍ରଭୃତି ଦେଶରେ ଅଧିକ ଆଦୃତ ହେଉଥିଲା । ଢାକା ଓ ଭାରତର ଅନ୍ୟାନ୍ୟ ଅଞ୍ଚଳର ଉତ୍ପନ୍ନ ସିଲ୍‌କ ବିଦେଶରେ ଏକାନ୍ତ ସମ୍ମାନ ଲାଭ କରୁଥିଲା । ଦାକ୍ଷିଣାତ୍ୟର ମସଲା, ଲୁଣ, ଶିଳ୍ପନିର୍ମିତ ବାସନ, ତୁଳା ଓ ମୁକ୍ତା, କଳିଙ୍ଗର ବିଖ୍ୟାତ ହାତୀ ଦାନ୍ତ ପ୍ରଭୃତି ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟ ଭୂଖଣ୍ଡରେ ସମାଦୃତ ହେଉଥିଲା । ଫଳତଃ ସେତେବେଳେ ବଙ୍ଗୋପସାଗରର ଉପକୂଳବର୍ତ୍ତୀ ଅଞ୍ଚଳ ବାଣିଜ୍ୟରେ ଏକାନ୍ତ ସମୃଦ୍ଧ ଥିଲା ।

କେତେକ ଐତିହାସିକ କହନ୍ତି ଖ୍ରୀ: ପୂ: ସପ୍ତମ ଶତାବ୍ଦୀରୁ ଭାରତରେ ନୌବାଣିଜ୍ୟ ଆରମ୍ଭ ହୋଇଥିଲା । ଖ୍ରୀଷ୍ଟ ଚତୁର୍ଥ ଶତାବ୍ଦୀରେ ଚୀନପରିବ୍ରାଜକ ଫାହିଆନ ତାମ୍ରଲିପ୍ତି ବନ୍ଦରକୁ ଗୋଟିଏ ସୁଗଠିତ, କାର୍ଯ୍ୟବ୍ୟସ୍ତ ଓ ସମୃଦ୍ଧ ବନ୍ଦର ଭାବରେ ପରିଦର୍ଶନ କରିଥିଲେ । ଭାରତୀୟ ମୂଲ୍ୟବାନ୍ ପ୍ରସ୍ତର ଓ ମସଲା ପ୍ରଭୃତି ରୋମରେ ଆଦର ଲାଭ କରିଥିବା ବିଷୟ ପ୍ରାଚୀନ ରୋମୀୟ-ଲେଖକ ପ୍ଲିନି ସ୍ୱୀକାର କରିଅଛନ୍ତି । ଅକବରଙ୍କ ସମୟରେ ବିଭିନ୍ନ-ଆକାରର ପ୍ରାୟ ଚାଳିଶସହସ୍ର ନୌକା ସିନ୍ଧୁନଦରେ ବାଣିଜ୍ୟ କାର୍ଯ୍ୟରେ ନିଯୁକ୍ତ ଥିବାର ଇତିହାସରୁ ଜଣାଯାଏ ।

ଭାରତୀୟ ନୌବାଣିଜ୍ୟ ନାନା ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇ ଉତ୍ତରୋତ୍ତର ବିକାଶ ଲାଭ କରି ପାରି ନ ଥିଲା । ପାଶ୍ଚାତ୍ୟ ଭୂଖଣ୍ଡରେ ସମୟର ଅଗ୍ରଗତି ସଙ୍ଗେ ସଙ୍ଗେ ନୌଶିଳ୍ପର ଅଭିବୃଦ୍ଧି ସାଧିତ ହୋଇଥିଲେ ସୁଦ୍ଧା ଭାରତ ଏ କ୍ଷେତ୍ରରେ ଆଶାନୁରୂପ ଉନ୍ନତି ହେବାରେ ପଶ୍ଚାଦବର୍ତ୍ତୀ ହୋଇଥିଲା । ଉତ୍କଳରେ ନୌବାଣିଜ୍ୟର ବିଲୋପ କାହାଣୀ ଫକୀରମୋହନ ଏକାନ୍ତ ଦୁଃଖିତ ହୋଇ ବର୍ଣ୍ଣନା କରିଅଛନ୍ତି । ମୋଗଲ ସାମ୍ରାଜ୍ୟର ପତନ ପରେ ପରେ ବ୍ରିଟିଶ ଶାସନରେ ଭାରତୀୟ ନୌବହରର ଉନ୍ନତି ନିମନ୍ତେ ଉଦ୍ୟମ କରାଯାଇଥିଲା । ଇଂରେଜମାନେ ଏ ଦେଶକୁ ପ୍ରଥମେ ବଣିକ ଭାବରେ ଆଗମନ କରିଥିଲେ ଓ ସେମାନଙ୍କ ବାଣିଜ୍ୟର ସୁବିଧା ନିମନ୍ତେ ସୁରାଟଠାରେ ଗୋଟିଏ ବନ୍ଦର ସ୍ଥାପନ କରିଥିଲେ । ଏଠାରେ ଜୀର୍ଣ୍ଣ ଜାହାଜ ଗୁଡ଼ିକର ମରାମତି ଓ ଜାହାଜ ନିର୍ମାଣ ନିମନ୍ତେ ଏକ କେନ୍ଦ୍ର ପ୍ରତିଷ୍ଠିତ ହୋଇଥିଲା । ପରବର୍ତ୍ତୀ କାଳରେ ଏହି ଜାହାଜ ନିର୍ମାଣକେନ୍ଦ୍ର ବାଣିଜ୍ୟ ଓ ଅନ୍ୟାନ୍ୟ ବିଷୟର ଅଧିକ ସୁବିଧା ନିମନ୍ତେ ବମ୍ବେକୁ ସ୍ଥାନାନ୍ତରିତ କରାଯାଇଥିଲା । ଅଷ୍ଟାଦଶ ଶତାବ୍ଦୀର ଶେଷ ଆଡ଼କୁ କଲିକତାଠାରେ ପୋତ-ନିର୍ମାଣ କେନ୍ଦ୍ର ସ୍ଥାପନ କରାହେଲା । ୧୮୦୩ ରେ କଲିକତାର ଖିଦିରପୁରଠାରେ ପୋତ-ନିର୍ମାଣ କେନ୍ଦ୍ର ପ୍ରତିଷ୍ଠା କରାଗଲା ଓ ବହୁ ବର୍ଷ ପର୍ଯ୍ୟନ୍ତ ଇଷ୍ଟ ଇଣ୍ଡିଆ କମ୍ପାନୀଙ୍କର ପୋତଗୁଡ଼ିକ ଏଠାରେ ନିର୍ମିତ ହେଉଥିଲା ।

ବର୍ତ୍ତମାନ ଭାରତର ନୌଶିଳ୍ପ ଓ ନୌବାଣିଜ୍ୟ ବିଷୟ ଚିନ୍ତାକଲେ ହତାଶ ହେବାକୁ ପଡ଼ିଥାଏ । ଭାରତ, ବ୍ରହ୍ମଦେଶ ଓ ସିଂହଳ ଏକତ୍ର ପୃଥିବୀର ଲୋକସଂଖ୍ୟାର ଶତକଡ଼ା ୫୦ ଭାଗ-ବିଶିଷ୍ଟ ହେଲେ ସୁଦ୍ଧା ବ୍ୟବସାୟ ବାଣିଜ୍ୟରେ ଏହାର ସ୍ଥାନ

ଶତକଡ଼ା ତନାଭାଗ ମାତ୍ର । ବାସ୍ତବରେ ଇଉରୋପର ବାଣିଜ୍ୟ ପରସ୍ଥିତି ସହିତ ଏହାକୁ ତୁଳନା କଲେ ବିରାଟ ପାର୍ଥକ୍ୟ ଲକ୍ଷ୍ୟ କରି ବିସ୍ମିତ ହେବାକୁ ପଡ଼େ । ଇଉରୋପରେ ଲୋକସଂଖ୍ୟା ପୃଥିବୀର ଲୋକସଂଖ୍ୟାର ଏକ ପଞ୍ଚମାଂଶ ହେଲେ ସୁଦ୍ଧା ସମଗ୍ର ପୃଥିବୀର ବ୍ୟବସାୟ ବାଣିଜ୍ୟର ପ୍ରାୟ ଅର୍ଦ୍ଧେକ ସେମାନଙ୍କର ଅଧିକୃତ । ଆମେରିକା ଯୁକ୍ତରାଷ୍ଟ୍ରର ଲୋକସଂଖ୍ୟା ଭାରତର ଲୋକ ସଂଖ୍ୟାର ଏକତୃତୀୟାଂଶ ହେଲେ ସୁଦ୍ଧା ବ୍ୟବସାୟ ବାଣିଜ୍ୟ କ୍ଷେତ୍ରରେ ସେମାନେ ପ୍ରାୟ ଭାରତର ଚାରିଗୁଣ ଅଗ୍ରସର ହୋଇ ପାରିଛନ୍ତି । ସୁତରାଂ ଆଧୁନିକ ଭାରତର ଶୋଚନୀୟ ଆର୍ଥିକ ଦୁରବସ୍ଥା ମୂଳରେ ଏହାର ନୌବାଣିଜ୍ୟର ସମଧିକ ଓ ଆଶାନୁରୂପ ଉନ୍ନତିର ଅଭାବ ଯେ ଏକ କାରଣ ଏହା ନିଃସନ୍ଦେହ ଭାବରେ କୁହାଯାଇପାରେ ।

ଯନ୍ତ୍ରଶିଳ୍ପରେ ସମଧିକ ଓ ବସ୍ତୁଯୁକ୍ତିକ ବିକାଶ ପାଶ୍ଚାତ୍ୟ ଦେଶମାନଙ୍କର ବାଣିଜ୍ୟଗତ ଉନ୍ନତି ପଥରେ ସହାୟକ ଏହା ସ୍ୱୀକାର୍ଯ୍ୟ । ଭାରତରେ ଶିଳ୍ପର ବିକାଶ ନିମନ୍ତେ ମୌଳିକ ଉପାଦାନ ( କଞ୍ଚାମାଲ୍ ) ର ଅଭାବ ନାହିଁ । ପୁଣି ବର୍ତ୍ତମାନ ଆମଦାନୀ ଓ ରପ୍ତାନୀ ପରିସ୍ଥିତି ଦିଗରୁ ବିଚାର କଲେ ଭାରତର ନୌଶିଳ୍ପ ବା ବାଣିଜ୍ୟର ଉନ୍ନତି ନିମନ୍ତେ ଅନୁକୂଳ ପରିସର ଯଥେଷ୍ଟ ଏହା ସହ-ଜରେ ଜାଣିହେବ । ଅଧିକନ୍ତୁ ଭାରତର ପ୍ରାକୃତିକ ଅବସ୍ଥିତି ସାମୁଦ୍ରିକ ବାଣିଜ୍ୟ ନିମନ୍ତେ ଭାରତକୁ ଏକ ସୁବିଧାଜନକ ଭୌଗୋଳିକ ସ୍ଥାନରେ ଅବସ୍ଥାପିତ କରିଅଛି । ଭାରତମାତାଙ୍କର ପଦସ୍ପର୍ଶ କରୁଥିବା ଭାରତ ମହାସାଗର, ପୂର୍ବ ଓ ପଶ୍ଚିମରେ ଯଥାକ୍ରମେ ବଙ୍ଗୋପ-ସାଗର ଓ ଆରବ ଉପସାଗରକୁ ଚକ୍ଷୁ ସମକ୍ଷରେ ସ୍ଥାପନ କରି ବିଶାଳ ଭାରତ ପ୍ରତି ଦୃଷ୍ଟିପାତ କଲେ ସାମୁଦ୍ରିକ ବାଣିଜ୍ୟ ଭାରତ ପକ୍ଷରେ ଅଧିକ ଅନୁକୂଳ ଏହା ନିର୍ବିବାଦରେ ଗୃହୀତ ହେବ । ପୁଣି ଭାରତ

ମହାସାଗରର ଉଭୟ ପାର୍ଶ୍ୱରେ ଆଟଲାଣ୍ଟିକ ଓ ପ୍ରଶାନ୍ତ ମହାସାଗର ଭାରତକୁ ଅଧିକ ସୁବିଧାଜନକ ସ୍ଥାନ ପ୍ରଦାନ କରୁଅଛି । ଏହି କାରଣରୁ ବୈଦେଶିକ ବଣିକମାନେ ଭାରତ ପ୍ରତି ସ୍ୱତଃ ଆକୃଷ୍ଟ ହୋଇ ଏ ଦେଶକୁ ଆଗମନ କରିଥିଲେ । ଓଲନ୍ଦାଜ, ଦିନାମାର, ପର୍ତ୍ତୁଗୀଜ, ଫରାସୀ ଓ ଇଂରାଜୀ ବଣିକମାନେ ଗୋଟିକପରେ ଗୋଟିଏ ଭାରତକୁ ଆସିଥିବା ଅଧିକ ଶତାବ୍ଦୀର କଥା ନୁହେଁ । ସ୍ୱାଧୀନ ଭାରତରେ ଦେଶର ଆର୍ଥିକ ସ୍ଥିତିକୁ ଦୃଢ଼କରିବା ନିମନ୍ତେ ଏହି ଅନୁକୂଳ ପରିସ୍ଥିତିର ସୁବିଧା ଗ୍ରହଣ ଏକାନ୍ତ ଆବଶ୍ୟକ ବୋଲି ଅନୁଭୂତ ହୋଇ ଏଥିନିମନ୍ତେ ଉଦ୍ୟମ କରାଗଲାଣି ।

ଭୂମଧ୍ୟସାଗର ଓ ଲୋହିତ ଉପସାଗରକୁ ବିଚ୍ଛିନ୍ନ ରଖିଥିବା କ୍ଷୁଦ୍ର ସ୍ଥଳଭାଗରେ ସୁଏଜ କେନାଲ ଖୋଳିତ ହେବାପରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭୂଖଣ୍ଡ ସହିତ ଗମନାଗମନର ସୁବିଧା ଓ ବ୍ୟବସାୟ ବାଣିଜ୍ୟର ସୁବର୍ଣ୍ଣସୁଯୋଗ ଉପସ୍ଥିତ ହେଲା । ଏହି ଉଭୟ ସାଗର ସୁଏଜ କେନାଲ ଦ୍ୱାରା ସଂଯୁକ୍ତ ହେବା ପୂର୍ବରୁ ଭାରତ ଓ ବ୍ରିଟିଶ ଦ୍ୱୀପପୁଞ୍ଜ ମଧ୍ୟରେ ଗମନାଗମନ କରୁଥିବା ପୋତ ସମୂହ ଅଫ୍ରିକା ମହାଦେଶର ଉପକୂଳକୁ ପରିକ୍ରମା କରି ଉତ୍ତମାଶା ଅନ୍ତରୀପ ବାଟେ ଦେଇ ଯାତ୍ରା କରୁଥିଲେ । ସୁତରାଂ ଜଳପଥରେ ଦୀର୍ଘ ସମୟ ଓ ଅର୍ଥର ଅଯଥା ବ୍ୟୟ ହେଉଥିଲା । ପୁଣି ସୁଦୀର୍ଘ ଜଳଯାତ୍ରା ସେ ସମୟରେ ଆରାମପ୍ରଦ ନଥିଲା । କିନ୍ତୁ ସୁଏଜ କେନାଲ ଖନନ ଜଳଯାତ୍ରାକୁ ଅଧିକ ସୁଗମ ଓ ଆନନ୍ଦଦାୟକ କରି ଦେଲା ।

ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଭାରତର ଜାହାଜ କମ୍ପାନୀଗୁଡ଼ିକ ଇଂରେଜମାନଙ୍କଦ୍ୱାରା ପରିଚାଳିତ ହେଉଥିଲା । ବିଂଶ ଶତାବ୍ଦୀରେ କେତେକ ଭାରତୀୟ ବ୍ୟବସାୟୀଙ୍କ ଉଦ୍ୟମ ଓ ଦୃଢ଼ ମନୋଭାବ ଫଳରେ ସିନ୍ଧିଆ ପୋତଚାଳନା କମ୍ପାନୀ ଗଠିତ ହେଲା । ସେଠ

ନରୋତ୍ତମ ମୋରାରଜୀଙ୍କ ସାହସ ଓ ଉଦ୍ୟମ ଫଳରେ ୧୯୧୯ ମସିହା ମାର୍ଚ୍ଚ ମାସରେ ସିନ୍ଧିଆ କମ୍ପାନୀ ପ୍ରଥମେ କାର୍ଯ୍ୟ ଆରମ୍ଭ କଲେ । ପ୍ରଥମେ ଗୋଟିଏ ଜାହାଜ କ୍ରୟକରି ଏହି କମ୍ପାନୀ ନିଜର କାର୍ଯ୍ୟ ଆରମ୍ଭ କରିଥିଲେ । ପରେ ପରେ ଏହା ଆଶାତିରିକ୍ତ ଭାବରେ ଉନ୍ନତି କରି ବର୍ତ୍ତମାନ-ଭାରତର ଏକ ପ୍ରଧାନ କମ୍ପାନୀ ଭାବରେ ପ୍ରତିଷ୍ଠା ଲାଭ କରିଛି । ସିନ୍ଧିଆ କମ୍ପାନୀର ପ୍ରଚେଷ୍ଟାରେ ବମ୍ବେଠାରେ ଗୋଟିଏ ନୌଚାଳନା ଶିକ୍ଷାକେନ୍ଦ୍ର ସ୍ଥାପିତ ହୋଇଛି । ପୋତ ଚାଳନାରେ କର୍ମଚାରୀ ଓ ଇଞ୍ଜିନିୟର ହେବା ନିମନ୍ତେ ଭାରତୀୟ-ମାନଙ୍କୁ ଶିକ୍ଷିତ ଓ ପ୍ରବୀଣ କରାଇବା ଲାଗି ଏଠାରେ ଶିକ୍ଷାର ସମସ୍ତ ସୁବିଧା କରାଯାଇଛି ।

ନିଜର ଜୀର୍ଣ୍ଣ ପୋତଗୁଡିକୁ ସଂସ୍କୃତ କିମ୍ବା ନୂତନ ପୋତ-ଗୁଡ଼ିକୁ ନିର୍ମିତ କରିବାର ସାମର୍ଥ୍ୟ ନ ଥିଲେ ଏତେ ବଡ଼ କମ୍ପାନୀ ନିର୍ବିଘ୍ନରେ ଓ ସନ୍ତୋଷପ୍ରଦ ଭାବରେ କାର୍ଯ୍ୟ ଚଳାଇବା ଅସମ୍ଭବ । ସେଥିଲାଗି ବହୁ ବର୍ଷର ଉଦ୍ୟମ ପରେ ବିଶାଖାପାଟଣାଠାରେ ଏକ ଉପଯୁକ୍ତ ଓ ଦୀର୍ଘାୟତନବିଶିଷ୍ଟ ସ୍ଥାନ ନିର୍ବାଚିତ ହୋଇଥିଲା । ୧୯୪୧ ମସିହା ଜୁନ ୨୧ ତାରିଖରେ ଭାରତର ବର୍ତ୍ତମାନ ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ରପ୍ରସାଦ ଉକ୍ତ ସ୍ଥାନରେ ଭାରତୀୟ ଜାହାଜ ନିର୍ମାଣ କେନ୍ଦ୍ରର ଶୁଭ ଉଦ୍ଘାଟନ କରିଥିଲେ । ଏହି ଉତ୍ସବ ପ୍ରସଙ୍ଗରେ ଭାରତର ଅତୀତ ସମୁଦ୍ର-ନୌବାଣିଜ୍ୟ ବିଷୟ ସ୍ମରଣ କରି, ବର୍ତ୍ତମାନ-ଭାରତ ତା'ର ପୂର୍ବ ଗୌରବ ପୁନରୁଦ୍ଧାର କରିବାକୁ ସମର୍ଥ ହୋଇ ପାରିବ ଓ ଆନ୍ତର୍ଜାତିକ କ୍ଷେତ୍ରରେ ନିଜର ଶିକ୍ଷା, ସଂସ୍କୃତି ତଥା ବାଣିଜ୍ୟ ବ୍ୟବସାୟଗତ ସମ୍ପର୍କ ପ୍ରତିଷ୍ଠାକରି ପାରିବ ବୋଲି ବିଖ୍ୟାତ କବି ଓ ନାରୀନେତ୍ରୀ ଶ୍ରୀମତୀ ସରୋଜିନୀ ନାଇଡ଼ୁ ମତପ୍ରଦାନ କରିଥିଲେ । ବିଶାଖାପାଟଣାର ଏହି କେନ୍ଦ୍ରରେ ସମୁଦ୍ରରେ ଜଳଯାତ୍ରା କରୁଥିବା

ଵିଗ୍ରାଣ୍ଠରାକୁ ଆଧୁନିକ ଧରଣର ପୋତସମୂହ ନିର୍ମିତ ହୋଇଥାଏ । ପୋତ ନିର୍ମାଣ ସମ୍ବନ୍ଧୀୟ ବିଭିନ୍ନ ପ୍ରକାର କାରଖାନା ଓ କର୍ମାଳୟ ଏହି କେନ୍ଦ୍ର ମଧ୍ୟରେ ଅବସ୍ଥିତ ।

ଦ୍ୱିତୀୟ ମହାଯୁଦ୍ଧର ଅବସାନପରେ ଭାରତୀୟ ନୌବାଣିଜ୍ୟରେ କିପରି ଉନ୍ନତି ସାଧିତ ହୋଇପାରେ ତାହା ଅନୁସନ୍ଧାନ କରିବାକୁ ଭାରତସରକାର ଏକ କମିଟି ନିଯୁକ୍ତ କରିଥିଲେ । ଭାରତର ଆର୍ଥିକ ସ୍ଥିତିକୁ ଦୃଢ଼ କରିବାକୁ ହେଲେ ଭାରତର ପୃଥିବୀର ବିଭିନ୍ନ ଦେଶର ବାଣିଜ୍ୟ ବ୍ୟବସାୟ କ୍ଷେତ୍ରରେ ଯଥେଷ୍ଟ ଭାଗ ଗ୍ରହଣ କରିବା ଆବଶ୍ୟକ ବୋଲି ଉକ୍ତ କମିଟି ନିଜର ସୁଚିନ୍ତିତ ମନ୍ତବ୍ୟ ପ୍ରକାଶ କରିଥିଲେ ।

ଦ୍ୱିତୀୟ ମହାସମର ଅବସାନ ସମୟରେ ଭାରତରେ ଏଗାରଗୋଟି ପୋତଚାଳନ କମ୍ପାନୀ ଏଗୁଡ଼ିକ ମଧ୍ୟରେ ପ୍ରଧାନ ଥିଲା ।୧୯୪୯ ବେଳକୁ ଭାରତରେ ଷୋହଳଟି କମ୍ପାନୀ ଗଠିତ ହୋଇଥିଲା । ୧୯୪୮ରେ ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ଭାରତନିର୍ମିତ ଓ ଭାରତୀୟ ଅର୍ଥ ସାହାଯ୍ୟପୁଷ୍ଟ ଜଳୌଷା ଜାହାଜକୁ ବିଶାଖାପାଟଣା ଠାରେ ସମୁଦ୍ର ବକ୍ଷରେ ଭସାଇଥିଲେ । ବିଶାଖାପାଟଣା କେନ୍ଦ୍ର-ଭାରତର ପୂର୍ବ ଉପକୂଳରେ କେବଳ ଜାହାଜ ନିର୍ମାଣର ଅନୁଷ୍ଠାନ ନୁହେଁ, ଅନ୍ୟ ପକ୍ଷରେ ଏକ ବଳଶାଳୀ ନୌବାହିନୀର ପ୍ରତିଷ୍ଠା ମଧ୍ୟ ଏହାଦ୍ୱାରା ସମ୍ଭବ ହୋଇ ପାରିଛି । ଏହି ଉତ୍ସବରେ ପଣ୍ଡିତ ନେହେରୁ ନିଜେ ଯୁବକ ହୋଇଥିଲେ ନୌସେନାବାହିନୀରେ ଯୋଗ ଦିଅନ୍ତେ ବୋଲି ଇଚ୍ଛା ପ୍ରକାଶକରି ଭାରତୀୟ ଯୁବକମାନଙ୍କୁ ଏଥିରେ ଯୋଗ ଦେବାକୁ ଆହ୍ୱାନ କରିଥିଲେ । ଏହିବର୍ଷ ନଭେମ୍ବର ମାସରେ ଭାରତର ତତ୍କାଳୀନ ସହକାରୀ ପ୍ରଧାନମନ୍ତ୍ରୀ ସର୍ଦ୍ଦାର ପଟେଲ

ଏକସହସ୍ର ମାଇଲ ଦୂରବର୍ତ୍ତୀ ଦିଲ୍ଲୀ ନଗରୀରେ ଥାଇ ବୈଦ୍ୟୁତିକ ବ୍ୟବସ୍ଥା ସାହାଯ୍ୟରେ ବିଶାଖାପାଟଣା ବନ୍ଦରରୁ ଜଳପ୍ରଭା ନାମକ ଜାହାଜକୁ ପ୍ରଥମଥର ନିମନ୍ତ୍ରେ ଜଳରେ ଭସାଇଥିଲେ ।

ଯୁଦ୍ଧ ପୂର୍ବରୁ ଆଧୁନିକ ଧରଣର ଇସ୍ପାତ ନିର୍ମିତ ବିରାଟ ପୋତନିର୍ମାଣ କରିବାର ସାମର୍ଥ୍ୟ ଭାରତର ନ ଥିଲା । ସିନ୍ଧିଆ କମ୍ପାନୀ ଏ ଦିଗରେ ଆଶାନୁରୂପ ଅଗ୍ରଗତି କରିପାରିଛନ୍ତି ବୋଲି ମନେହୁଏ । ବର୍ତ୍ତମାନ ଭାରତରେ ଛଅଟି ପୋତନିର୍ମାଣ କାରଖାନା ଅଛି । ଏଥିମଧ୍ୟରୁ ସିନ୍ଧିଆ କାରଖାନା ବୃହତ୍ତମ । ସିନ୍ଧିଆ କମ୍ପାନୀ-ଚାଳିତ କାରଖାନା ଛଡ଼ା ଅନ୍ୟମାନେ ଜାହାଜ ମରାମତି କିମ୍ବା ଛୋଟ ଜାହାଜ ନିର୍ମାଣ କରୁଛନ୍ତି । ସିନ୍ଧିଆ କେବଳ ଗଭୀର ସମୁଦ୍ରରେ ଯାତ୍ରା କରୁଥିବା ବିରାଟ ଜାହାଜ ନିର୍ମାଣ କରିବାକୁ ସମର୍ଥ ।

ଖୁବ୍ ନିକଟରେ ପ୍ରାପ୍ତ ସମ୍ବାଦରୁ ଜଣାଯାଏ ବୈଦେଶିକ ବାଣିଜ୍ୟରୁ ଭାରତୀୟ ପୋତ କମ୍ପାନୀ ଗୁଡ଼ିକର ଆୟ ୧୯୪୫ରେ ପ୍ରାୟ ଶୂନ୍ ଥିଲା । ମାତ୍ର ବର୍ତ୍ତମାନ ୧୯୫୨ରେ ତାହା ଆଠକୋଟି ହୋଇପାରିଛି । ଉପକୂଳବର୍ତ୍ତୀ ଅଞ୍ଚଳରେ ଯାତ୍ରୀ ଓ ମାଲ୍ ବହନ କରୁଥିବା ପୋତଗୁଡ଼ିକର ଆୟ ଏହି ସମୟ ମଧ୍ୟରେ ପ୍ରାୟ ଛଅକୋଟିରୁ ସାଢ଼େ ଦଶକୋଟି ହୋଇ ପାରିଛି ।

ଭାରତୀୟ ନୌଶିଳ୍ପର ଆଲୋଚନା ପ୍ରସଙ୍ଗରେ ଅତୀତ ଉତ୍କଳର ଗୌରବମୟ ନୌବାଣିଜ୍ୟ ବିଷୟ ସ୍ମୃତି ପଥାରୂଢ଼ ହେବା ସ୍ୱାଭାବିକ । କଳିଙ୍ଗ ନୌବାଣିଜ୍ୟରେ ଏକାନ୍ତ ସମୃଦ୍ଧ ଥିଲା ଓ ଦିନେ ଭାରତରେ ଶୀର୍ଷ ସ୍ଥାନ ଲାଭ କରିଥିଲା । ଏ ସମ୍ବନ୍ଧରେ ବହୁ ଐତିହାସିକ ମତ ପ୍ରଦାନ କରିଅଛନ୍ତି । କଳିଙ୍ଗବାସୀ ନାବିକମାନେ ଜାଭା, ସୁମାତ୍ରା, ବ୍ରହ୍ମଦେଶ, ଚୀନ, ଜାପାନ, ମାଡ଼ାଗାସ୍କର ପ୍ରଭୃତିରେ

ବାଣିଜ୍ୟ କରୁଥିଲେ । ଉକ୍ତ ସ୍ଥାନଗୁଡ଼ିକରେ କଳିଙ୍ଗର ଉପନିବେଶ ସ୍ଥାପନ କରି ଉତ୍କଳୀୟ ସଭ୍ୟତା ଓ ସଂସ୍କୃତିକୁ ସେଠାରେ ପ୍ରସାର କରି ନିଜେ ବିଭବଶାଳୀ ଓ ସମୃଦ୍ଧ ହୋଇଥିଲେ । ଭୌଗୋଳିକ ପରିସ୍ଥିତି ଦିଗରୁ ଉତ୍କଳ ନୌବାଣିଜ୍ୟ ନିମନ୍ତେ ଏକାନ୍ତ ସୁବିଧା-ଜନକ ସ୍ଥାନରେ ଅବସ୍ଥିତ । ଅଶୋକ ଓ ଖାରବେଳଙ୍କ ସମୟରେ କଳିଙ୍ଗର ସମୃଦ୍ଧି ବିଷୟ ଚିନ୍ତା କଲାବେଳେ ତା ମୂଳରେ କଳିଙ୍ଗର ସମୃଦ୍ଧ ନୌବାଣିଜ୍ୟ ନିହିତ ଥିଲା, ଏହା ସ୍ପଷ୍ଟତଃ ଜାଣିହୁଏ । ସମୁଦ୍ର-ଯାତ୍ରା ଓ ସାମୁଦ୍ରିକ ବାଣିଜ୍ୟ କଳିଙ୍ଗ ରାଜକୁମାରମାନଙ୍କର ଶିକ୍ଷାବିଧାନର ଅନ୍ତର୍ଭୁକ୍ତ ଥିଲା ବୋଲି ଐତିହାସିକ ରାଧାକୁମୁଦ ମୁଖାର୍ଜି ମତ ପ୍ରଦାନ କରି ଅଛନ୍ତି । ମାଲକା ଓ ସିଙ୍ଗାପୁରର କ୍ଲିଙ୍ଗ ନାମକ ଅଧିବାସୀ ଅଛନ୍ତି । ସେମାନେ ପ୍ରାଚୀନ କଳିଙ୍ଗବାସୀଙ୍କ ବଂଶଧର ସନ୍ଦେହ ନାହିଁ । ଭୁବନେଶ୍ୱରର ବୋଇତାଳ ମନ୍ଦିରର ଗଠନାକୃତିରୁ ଉତ୍କଳରେ ସେ ସମୟରେ ନୌଯାତ୍ରାର ପ୍ରମାଣ ମିଳେ । ଓଡ଼ିଶାର ଗଳ୍ପ, କିମ୍ବଦନ୍ତୀ, ପର୍ବ ଓ ପର୍ବାଣୀରୁ ଜଣାଯାଏ ଉତ୍କଳୀୟ-ମାନେ ନୌବାଣିଜ୍ୟରେ ସୁପ୍ରସିଦ୍ଧ ଥିଲେ ।

ସୁଖର କଥା ନୌବାଣିଜ୍ୟ କ୍ଷେତ୍ରରେ ଉତ୍କଳର ଅନୁକୂଳ ପରିସ୍ଥିତି ସମ୍ବନ୍ଧରେ ଅବହିତ ହୋଇ ଭାରତସରକାର ମହାନଦୀର ମୁହାଣି ଅଞ୍ଚଳରେ ଏକ ବନ୍ଦର ନିର୍ମାଣ କରିବାର ଯୋଜନା କରିଛନ୍ତି । ଉକ୍ତ ଯୋଜନା କାର୍ଯ୍ୟକାରୀ ହେଲେ ବାଣିଜ୍ୟ କ୍ଷେତ୍ରରେ ଉତ୍କଳ ତାର ହୃତ ସମୃଦ୍ଧିକୁ ପୁଣି ଫେରାଇ ଆଣିବାକୁ ସମର୍ଥ ହେବ । ଉତ୍କଳର ଅତୀତ ସମୃଦ୍ଧି, ଆର୍ଥିକ ଦୃଢ଼ତା ଆନୟନ କରିବାକୁ ହେଲେ ଉତ୍କଳୀୟ ନୌବାଣିଜ୍ୟର ପୁନରୁତ୍ଥାନ ହେବା ଏକାନ୍ତ ଆବଶ୍ୟକ ।

ପ୍ରଶ୍ନ—୧ । ପ୍ରାଚୀନ ଭାରତ ନୌବାଣିଜ୍ୟରେ ଉନ୍ନତ ଥିଲା—
ଏହା ସତ୍ୟ କି ?

୨ । ଭାରତରେ ନୌଶିଳ୍ପର ବିକାଶ ନିମନ୍ତେ କି କି ଅନୁକୂଳ ପରିସ୍ଥିତି ଅଛି ଉଲ୍ଲେଖ କର ।

୩ । ଆଧୁନିକ ଭାରତରେ ନୌଶିଳ୍ପର ବିକାଶ ସମ୍ବନ୍ଧରେ ଏକ କ୍ଷୁଦ୍ର ପ୍ରବନ୍ଧ ଲେଖ ।

୪ । 'ଉତ୍କଳ ଅତୀତରେ ନୌବାଣିଜ୍ୟ ଓ ନୌଶିଳ୍ପରେ ଉତ୍କର୍ଷ ଲାଭ କରିଥିବାର ଜଣାଯାଏ' । ଏ ଉକ୍ତିର ସତ୍ୟତା ନିରୂପଣ କର ।

---

## ନଅଙ୍କ ଦୁର୍ଭିକ୍ଷ

ଦୀର୍ଘ ପଞ୍ଚାଅଶୀ ବର୍ଷ ତଳର କଥା । ବର୍ଷ ପରେ ବର୍ଷ କାଳ-ଗର୍ଭରେ ଲୁକ୍କାୟିତ ହୋଇଗଲାଣି । ତଥାପି ନଅଙ୍କ ନାଁ ଶୁଣିଲେ ଆଜି ଓଡ଼ିଶାବାସୀଙ୍କର ପ୍ରାଣରେ ଦାରୁଣ ଭୀତିର ସଞ୍ଚାର ହୋଇଥାଏ । ନଅଙ୍କର ଭୟାବହ ଲୋମହର୍ଷଣ ବୃତ୍ତାନ୍ତ ସ୍ମରଣ କରିବା ମାତ୍ରକେ ପ୍ରତି ଉତ୍କଳୀୟ ହୃଦୟରେ ଏକ ଗଭୀର ବେଦନା ସ୍ପଷ୍ଟ ଅନୁଭୂତ ହୋଇଥାଏ ।

ଇତିହାସ ସାକ୍ଷ୍ୟ ଦିଏ, ଉତ୍କଳ ଦିନେ ସମଗ୍ର ଭାରତ ମଧ୍ୟରେ ଗୌରବ ଓ ଉନ୍ନତିର ଶୀର୍ଷ ସ୍ଥାନରେ ଅରୂଢ଼ ହୋଇଥିଲା । ଉତ୍କଳର ସେ ପୂର୍ବ ବିଭବ, ଅତୀତ ସମ୍ପଦ ଆଜି ଲୁପ୍ତ ହେଲା କିପରି ? ଉତ୍କଳୀୟମାନେ ପତିତ, ଅନୁନ୍ନତ ଓ ନିଃସ୍ୱ କିପରି ହେଲେ ? ଉତ୍କଳର ଅର୍ଥନୈତିକ ଦୃଢ଼ତା ବା କିପରି ଶିଥିଳ ହେଲା ? ଏ

ସମସ୍ତର କାରଣ ଅନୁସନ୍ଧାନ କରିବାକୁ ହେଲେ ଇତିହାସର ଆଶ୍ରୟ ଗ୍ରହଣ କରିବାକୁ ପଡ଼ିବ ।

୧୫୬୮ ଖ୍ରୀଷ୍ଟାବ୍ଦରେ ଉତ୍କଳର ସ୍ୱାଧୀନତା ଲୁପ୍ତ ହେଲା । ପରେ ପରେ ଓଡ଼ିଶା ମୁସଲମାନ ଓ ମରହଟ୍ଟାମାନଙ୍କର ଶାସନାଧୀନ ହୋଇ ଶେଷରେ ଇଂରେଜମାନଙ୍କର ହସ୍ତଗତ ହୋଇଥିଲା । ଇଂରେଜମାନେ ୧୮୦୩ ରେ ମରହଟ୍ଟାମାନଙ୍କଠାରୁ ଓଡ଼ିଶା ଅଧିକାର କଲେ । ସେବର୍ଷ ଉତ୍କଳ ଦୁର୍ଭିକ୍ଷପ୍ରପୀଡ଼ିତ ଅବସ୍ଥାରେ ଇଂରେଜମାନଙ୍କ ଶାସନାଧୀନ ହୋଇଥିଲା । ମରହଟ୍ଟାମାନଙ୍କର ସୁଶାସନର ଅଭାବ, ଲୁଣ୍ଠନ ଓ ଅତ୍ୟାଚାର ଯୋଗୁଁ ଉତ୍କଳ ମରହଟ୍ଟା ରାଜତ୍ୱରେ ଏକାଧିକବାର ଦୁର୍ଭିକ୍ଷପୀଡ଼ିତ ହୋଇଥିବାର ଜଣାଯାଏ । ଇଂରେଜମାନେ ଶାସନଭାର ଗ୍ରହଣ କରିଥିଲେ ହେଁ ଉତ୍କଳର ଉନ୍ନତି ନିମନ୍ତେ ଆଶାନୁରୂପ ଉଦ୍ୟମ କରି ପାରି ନ ଥିଲେ । ଶାସନଗତ ସୁବିଧା ନିମନ୍ତେ ଉତ୍କଳର ଭାଗ୍ୟକୁ ବଙ୍ଗ ପ୍ରଦେଶ ସହିତ ଗ୍ରଥିତ କରାଯାଇଥିଲା । କଲିକତାର ଫୋର୍ଟ ଉଇଲିୟମ ଦୁର୍ଗ ସେତେବେଳେ ଶାସନକେନ୍ଦ୍ର ଥିଲା । ସେଠାରେ କର୍ମ କରୁଥିବା ବହୁ ବଙ୍ଗୀୟ କର୍ମଚାରୀ ଉତ୍କଳର ବହୁ ଜମିଦାରୀକୁ ନିଲାମସୂତ୍ରରେ ଅଧିକାର କରିଥିଲେ । ଉତ୍କଳୀୟ ପ୍ରଜାମାନଙ୍କର ଉନ୍ନତି ନିମନ୍ତେ ସେମାନେ ଚିନ୍ତିତ ହେଉ ନ ଥିଲେ । ଶାସନର ଉଚ୍ଚ ସ୍ଥଳରେ ପ୍ରତିଷ୍ଠିତ ଥିବା ଇଂରେଜ କର୍ମଚାରୀମାନଙ୍କର ଦେଶର ପ୍ରକୃତ ପରିସ୍ଥିତି ସମ୍ବନ୍ଧରେ ସୁସ୍ପଷ୍ଟ ଧାରଣା ନ ଥିଲା । ସେମାନେ ରାଜନୈତିକ ଅଧିକାରକୁ ଦୃଢ଼ କରିବା ବ୍ୟତୀତ ଦେଶର କଲ୍ୟାଣମୂଳକ କାର୍ଯ୍ୟ କିଛି କରି ପାରି ନଥିଲେ । ୧୮୦୩ରୁ ୧୮୬୬ ପର୍ଯ୍ୟନ୍ତ ଦୀର୍ଘ ଷାଠିଏ ପଅଁଷଠି ବର୍ଷ କାଳ ପର୍ଯ୍ୟନ୍ତ ଉତ୍କଳ ବ୍ରିଟିଶ ଶାସନରେ ଏକାନ୍ତ ଅବହେଳିତ ଅବସ୍ଥାରେ ଥିଲା । ଉତ୍କଳୀୟ

ସମସ୍ୟା ପ୍ରତି ଆଦୌ ଗୁରୁତ୍ୱ ଆରୋପିତ ହେଉ ନଥିଲା । ଫଳତଃ ନଅଙ୍କ ଦୁର୍ଭିକ୍ଷ ପୂର୍ବରୁ ଇଂରେଜ ରାଜତ୍ୱ ସମୟ ମଧ୍ୟରେ ବହୁବାର ଦୁର୍ଭିକ୍ଷର କରାଳଲୀଳା ଉତ୍କଳ-ରଙ୍ଗମଞ୍ଚରେ ଅଭିନୀତ ହୋଇ ଉତ୍କଳକୁ ଶ୍ରୀହୀନ ଓ ଦୁର୍ବଳ କରି ଦେଇଥିଲା । ଏହି ସମସ୍ତ ଦୁର୍ଭିକ୍ଷ ମଧ୍ୟରେ ୧୮୬୬ର ଦୁର୍ଭିକ୍ଷ ବୃହତ୍ତମ । ଆଜିସୁଦ୍ଧା ନଅଙ୍କ ନାମ ସ୍ମରଣରେ ଉତ୍କଳୀୟ ପ୍ରାଣରେ କମ୍ପନ ଆସିଥାଏ । ଏହି ଦୁର୍ଭିକ୍ଷ ପୁରୀରାଜା ଦିବ୍ୟସିଂହ ଦେବଙ୍କ ନଅ ଅଙ୍କରେ ପଡ଼ିଥିବାରୁ ଏହାକୁ ନଅଙ୍କ ନାମରେ ଅଭିହିତ କରି ଯାଇଥାଏ । କିନ୍ତୁ ନଅଙ୍କ କହିଲେ ଯେ କୌଣସି ବ୍ୟକ୍ତି ଦିବ୍ୟସିଂହ ଦେବଙ୍କ ବିଷୟ ସ୍ମରଣ କରିବା ପୂର୍ବରୁ ୧୮୬୬ ଦୁର୍ଭିକ୍ଷର ଭୟାବହ ଘଟଣା ଚିନ୍ତାକରି ଭୀତ ହୋଇଥାନ୍ତି ।

କେତେଗୁଡ଼ିଏ ଘଟଣାକୁ ଏହି ନଅଙ୍କ ଦୁର୍ଭିକ୍ଷର କାରଣ ସ୍ୱରୂପ ଗ୍ରହଣ କରାଯାଇପାରେ । ଆଗରୁ ସୂଚନା ଦିଆ ଯାଇଛି ସ୍ୱାଧୀନତାର ଅବସାନ ପରେ ଉତ୍କଳର ଜାତୀୟ ପ୍ରାଣରେ ଜଡ଼ତା ଏ ଅବସନ୍ନତା ପରିଲକ୍ଷିତ ହୋଇଥିଲା । ବର୍ଗୀମାନଙ୍କ ଲୁଣ୍ଠନ ଓ ଅତ୍ୟାଚାରରେ ଉତ୍କଳୀୟମାନେ ନିଃସ୍ୱ ହୋଇଥିଲେ । ଇଂରେଜ-ଶାସନରେ କଲିକତାର ବଙ୍ଗୀୟମାନେ ଓଡ଼ିଶାର ବହୁ ବଡ଼ ବଡ଼ ଜମିଦାରୀର ଅଧିନାୟକ ହୋଇଥିଲେ । କେବଳ ରାଜସ୍ୱ ଆଦାୟ କରି ସେମାନେ ସନ୍ତୁଷ୍ଟ ଥିଲେ । ପ୍ରଜାମାନଙ୍କ ସହିତ ସେମାନଙ୍କର ସଂପର୍କ ବହୁ ନଥିଲା । ଉକ୍ତ ଜମିଦାରମାନଙ୍କର ସ୍ୱଳ୍ପ-ବେତନ-ଭୋଗୀ ପ୍ରତିନିଧିମାନେ ଯଥେଚ୍ଛା ପ୍ରଜାଙ୍କଠାରୁ କର ଆଦାୟ କରୁଥିଲେ । ପୁଣି କଉଡ଼ି ପରିବର୍ତ୍ତେ ସରକାର ଟଙ୍କା ମାଧ୍ୟମରେ ରାଜସ୍ୱ ଗ୍ରହଣ କରିବାକୁ ନିୟମ କରିବାରୁ ପ୍ରଜାମାନେ ନାନା ଅସୁବିଧାର ସମ୍ମୁଖୀନ ହୋଇଥିଲେ । ସେତେବେଳେ ତ ଆଉ

ଅଜକାଲି ପରି ନୋଟ କିମ୍ବା ମୁଦ୍ରାର ଏତେ ଅଧିକ ପ୍ରଚଳନ ନ ଥିଲା । ତେଣୁ ଗରିବ ପ୍ରଜାମାନେ ଅନେକ ସ୍ଥଳରେ ଦ୍ରବ୍ୟଦ୍ୱାରା ପର୍ଯ୍ୟନ୍ତ ରାଜସ୍ୱ ଦେଉଥିଲେ । ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳର ଅଧିବାସୀମାନଙ୍କର ଲୁଣମରା ଏକ ପ୍ରଧାନ ବ୍ୟବସାୟ ଓ ଅର୍ଥାଗମର ପନ୍ଥା ଥିଲା । ଓଡ଼ିଶା ଅଧିକାର ସଙ୍ଗେ ଇଷ୍ଟଇଣ୍ଡିଆ କମ୍ପାନୀ ଲୁଣ ମରିବାରେ ଏକଚାଟିଆ ନୀତି ପୋଷଣ କରି ନିଜେ କାରବାର ଚଳାଇଲେ । ଦେଶୀୟ ଲୁଣ ଉପରେ ଅଧିକ କର ନିର୍ଦ୍ଧାରିତ ହେଲା । ଆଶ୍ଚର୍ଯ୍ୟର ବିଷୟ ବିଲାତୀ ଲିଭରପୁଲ ଲୁଣ ଏ ଦେଶରେ ସୁଲଭ ମୂଲ୍ୟରେ ବିକ୍ରୟ ହେବାରୁ ଓଡ଼ିଶାର ଲୁଣମରା ବ୍ୟବସାୟ ସମ୍ପୂର୍ଣ୍ଣ ଭାବେ ଲୁପ୍ତ ହେଲା । ଫଳତଃ ଲୁଣ ଉତ୍ପାଦନକୁ ଜୀବିକା ରୂପେ ଗ୍ରହଣ କରିଥିବା ଉପକୂଳବାସୀଙ୍କର ଆର୍ଥିକ ଅବନତି ହେବାରୁ ସେମାନେ ବାରମ୍ବାର ଦୁର୍ଭିକ୍ଷ କବଳରେ ପତିତ ହେବାର ପଥ ଉନ୍ମୁକ୍ତ ହୋଇଗଲା । ଏମାନଙ୍କର ଶୋଚନୀୟ ଦୁର୍ଗତି ନିମନ୍ତେ ତତ୍କାଳୀନ ଶାସକମାନଙ୍କର କୁଟନୀତି ବହୁ ପରିମାଣରେ ଦାୟୀ ।

ଏତଦ୍‌ବ୍ୟତୀତ ସେ ସମୟରେ ଉତ୍କଳରେ ରାସ୍ତା ଘାଟ ଆଦୌ ଉନ୍ନତ ନ ଥିଲା । ଆଜି ଯେଉଁ ସୁନ୍ଦର ଜଗନ୍ନାଥ ସଡ଼କ, ରେଲପଥ ଓଡ଼ିଶାକୁ ଭାରତର ଅନ୍ୟାନ୍ୟ ଅଞ୍ଚଳ ସହିତ ସୁସଂଯୁକ୍ତ କରିଅଛି, ସେତେବେଳେ ତାହା ବିଦ୍ୟମାନ ନ ଥିଲା । ନଅଙ୍କ ଦୁର୍ଭିକ୍ଷ ସମୟରେ ରାଧାନାଥ ଅଧ୍ୟୟନ ନିମନ୍ତେ ବାଲେଶ୍ୱରରୁ କଲିକତା ଅଭିମୁଖେ ଯାତ୍ରା କଲାବେଳେ ପଥ ଏକାନ୍ତ ବିପଦସଙ୍କୁଳ ଥିଲା । ଜଗନ୍ନାଥ ସଡ଼କ ଏତେ ଦୃଢ଼ ନ ଥାଇ ସାଧାରଣ ରାସ୍ତା ପରି ଥିବାରୁ ବର୍ଷାଦିନେ ଏକାନ୍ତ ଅଗମ୍ୟ ଥିଲା । ଅଧିକନ୍ତୁ ଉକ୍ତ ପଥ ଅରଣ୍ୟମୟ ଓ ଦସ୍ୟୁମାନଙ୍କ ଅତ୍ୟାଚାରରେ ସର୍ବଦା ଶଙ୍କିତପୂର୍ଣ୍ଣ ଥିଲା । ସୁତରାଂ ସ୍ଥଳପଥରେ ବିଭିନ୍ନ ସ୍ଥାନରୁ ଖାଦ୍ୟ

ଶସ୍ୟ ଅସିବା ଅତୌ ସମ୍ଭବପର ନ ଥିଲା । ପୁଣି ଇଂରାଜ ବଣିକ-ମାନଙ୍କର ଦୁରଭିସନ୍ଧି ନିମନ୍ତେ ବାଲେଶ୍ୱରର ସମୃଦ୍ଧ ଜାହାଜୀୟ କୌଶିଳ୍ପର ଉଚ୍ଛେଦ ସାଧନ କରାଯାଇଥିବାରୁ ସମୁଦ୍ରଯାତ୍ରା ମଧ୍ୟ ସୁବିଧାଜନକ ନ ଥିଲା । ବାଷ୍ପୀୟ ଜାହାଜର ନାମ ବାଲେଶ୍ୱର-ବାସୀମାନେ ଶୁଣି ଥିଲେ ସୁଦ୍ଧା ଏହାକୁ ଦେଖି ନ ଥିଲେ ।

ନଅଙ୍କ ଦୁର୍ଭିକ୍ଷର ଉପରଲିଖିତ କେତେଗୁଡ଼ିଏ କାରଣ ମାନବକୃତ ବୋଲି ଗୃହୀତ ହୋଇପାରେ । ତା ଛଡ଼ା କେତୋଟି ଦୈବୀ କାରଣ ମଧ୍ୟ ନଅଙ୍କ ଦୁର୍ଭିକ୍ଷ ମୂଳରେ ନିହିତ । ୧୮୬୫ ସାଲରେ ଓଡ଼ିଶାରେ ବୃଷ୍ଟିପାତ ସ୍ୱଳ୍ପ ହୋଇଥିଲା ଓ ଆବଶ୍ୟକ ସମୟରେ ମଧ୍ୟ ବୃଷ୍ଟି ଏକାନ୍ତ ଅଭାବ ହୋଇଥିଲା । ତେଣୁ ସାଧାରଣତଃ ଯାହା ଫସଲ ଉତ୍ପନ୍ନ ହେବାର କଥା ତହିଁ ପରିବର୍ତ୍ତେ ଏକ ତୃତୀୟାଂଶ ଫସଲ ଉତ୍ପନ୍ନ ହେଲା । ବହୁ ସ୍ଥଳରେ କୃଷୀକୁଳ ନିଜର ବାହାନ ଗଣ୍ଡାକ ଜମିରେ ସାରି ହତାଶ ହେଲେ । ତହିଁ ପୂର୍ବ-ବର୍ଷ ବାଲେଶ୍ୱର ଜିଲ୍ଲାରେ ଭଲ ଫସଲ ହୋଇ ନ ଥିଲା । ତଥାପି ୧୮୬୫ ରେ ଓଡ଼ିଶାର ତଥା ବାଲେଶ୍ୱର ଜିଲ୍ଲାରୁ ବହୁ ପରିମାଣରେ ଧାନ ବଙ୍ଗଦେଶକୁ ରପ୍ତାନୀ କରାଯାଇ ଥିଲା । ଏହି ବର୍ଷ ଓଡ଼ିଶାର କେତେକାଂଶ ବିଶେଷ ଭାବରେ ପୁରୀ ଅଞ୍ଚଳର କୃଷୀମାନେ ସୁବିଧା ଦର ଦେଖି ମହାଜନମାନଙ୍କୁ ଉଦ୍‌ବୃତ୍ତ ଶସ୍ୟ ବିକ୍ରୟ କରି ହାତରେ ଟଙ୍କା ଓ ସୁନା ରଖିଥିଲେ । ୧୮୬୬ରେ ପୁରୀ ଜିଲ୍ଲାର ପାଚିଲା ଧାନକ୍ଷେତ ଉପରେ ବଢ଼ିପାଣି ମାଡ଼ି ଯିବାରୁ ଫସଲ ନଷ୍ଟ ହୋଇଗଲା । ଫଳତଃ ବାଧ୍ୟ-ଅଭିପ୍ରେତ କେତେକ ଅବସ୍ଥା ମଧ୍ୟ ନଅଙ୍କ ଦୁର୍ଭିକ୍ଷ ସଂଘଟନର କାରଣ ହୋଇଥିଲା ।

୧୮୬୬ ସାଲ ମେ ମାସରେ ସରକାର ଦୁର୍ଭିକ୍ଷର ପ୍ରକୃତ ଗୁରୁତ୍ୱ ଉପଲବ୍ଧି କଲେ । ସେତେବେଳେ ଓଡ଼ିଶା କମିଶନରଙ୍କ

ଦ୍ୱାରା ଶାସିତ ଅଞ୍ଚଳ ଥିଲା ଓ ରେଭେନ୍‌ସା ସାହେବ ଓଡ଼ିଶାର କମିଶନର ଥିଲେ । ଅନାବୃଷ୍ଟି ଯୋଗୁଁ ଓଡ଼ିଶାରେ ଦୁର୍ଭିକ୍ଷ ପଡ଼ିବାର ସମ୍ଭାବନା ଅଛି କି ନାହିଁ, ତାହା ଜଣାଇବା ନିମନ୍ତେ ସରକାରଙ୍କ ରେଭେନ୍‌ସା ସାହେବଙ୍କ ପାଖକୁ ପତ୍ର ଆସିଲା । ଦୁର୍ଭିକ୍ଷ ପଡ଼ିଲେ କି ପ୍ରକାର ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣ କରାଯିବ ତାହା ଉଲ୍ଲେଖ କରିବା ନିମନ୍ତେ ରେଭେନ୍‌ସା ସାହେବଙ୍କ ନିକଟକୁ ମଧ୍ୟ ନିର୍ଦ୍ଦେଶ ଥିଲା । କମିଶନର ସାହେବ ଏଥିର ଉତ୍ତର ଦେବା ନିମନ୍ତେ ନିଜର କର୍ମଚାରୀବର୍ଗଙ୍କର ପରାମର୍ଶ ନେଇଥିଲେ । ସିରସ୍ତାଦାର, ପେସ୍କାର ମାନେ ପ୍ରକୃତ ପରିସ୍ଥିତି ସମ୍ବନ୍ଧରେ ସମ୍ଭବତଃ ଅଜ୍ଞ ଥିବାରୁ କିମ୍ବା କମିଶନରଙ୍କୁ ତୁଷ୍ଟ କରିବା ଉଦ୍ଦେଶ୍ୟରେ ରେଭେନ୍‌ସା ସାହେବଙ୍କୁ ଭୁଲ୍ ସମ୍ବାଦ ଦେଲେ । ଓଡ଼ିଶାରେ ଶସ୍ୟହାନି ହେତୁଁ ଦୁର୍ଭିକ୍ଷ ପଡ଼ିବାର ସମ୍ଭାବନା ଥିଲେ ମଧ୍ୟ ଉତ୍କଳର ବିଭିନ୍ନ ଜମିଦାର, ମହାଜନମାନଙ୍କର ଗଚ୍ଛିତ ଶସ୍ୟ ଦେଶର ଅଭାବ ମୋଚନ କରିବାକୁ ସମର୍ଥ ହେବ ବୋଲି ସେମାନେ ସାହେବଙ୍କୁ ଧାରଣା ଦେଲେ । ଫଳତଃ କମିଶନର ସରକାରଙ୍କୁ ଲେଖିଲେ, 'ଓଡ଼ିଶାରେ ଦୁର୍ଭିକ୍ଷର ସମ୍ଭାବନା ଥିଲେ ମଧ୍ୟ ଦେଶ ମଧ୍ୟରେ ବହୁ ଧାନ ଗଚ୍ଛିତ ଥିବାରୁ ସେଥିରେ ସ୍ୱଚ୍ଛନ୍ଦରେ ଏକ ବର୍ଷ ଚଳିଯାଇ ହେବ ।' କମିଶନର ରେଭେନ୍‌ସା ସାହେବ ଉତ୍କଳର ପରମବନ୍ଧୁ ଓ ହିତୈଷୀ ହେଲେ ସୁଦ୍ଧା ତାଙ୍କର ଏହି ଅପରିଣାମଦର୍ଶିତା ନଅଙ୍କ ଦୁର୍ଭିକ୍ଷର ଭୀଷଣତାର ଏକ ପ୍ରଧାନ କାରଣ ହେଲା । ପ୍ରକୃତ ଅନୁସନ୍ଧାନ କରି ଯଥାର୍ଥ ପରିସ୍ଥିତି ସମ୍ବନ୍ଧରେ ସରକାରଙ୍କୁ ସମ୍ବାଦ ଦେଇଥିଲେ ହୁଏତ ଦୁର୍ଭିକ୍ଷ ଏତେ ଭୀଷଣ ହୋଇ ନଥାନ୍ତା । ଫଳତଃ ଏହା କେତୋଟି ବିଷାଦମୟ ଘଟଣା ନଅଙ୍କ ଦୁର୍ଭିକ୍ଷର କାରଣ ଭାବରେ ଗୃହୀତ ହୋଇପାରେ ।

୧୮୬୬ର ପ୍ରଥମାର୍ଦ୍ଧରେ ଉତ୍କଳର ବିଭିନ୍ନ ସ୍ଥାନରେ ଦୁର୍ଭିକ୍ଷର ଦାରୁଣ ପ୍ରଭାବ ଅନୁଭୂତ ହେବାରୁ ଲୋକେ ନିଜ ନିଜର ପ୍ରତିବେଶୀ ଧନୀ ବ୍ୟକ୍ତି ମାନଙ୍କର ଗୃହ ଲୁଣ୍ଠନ କଲେ । ମେ ମାସରେ ବଜାର ସମସ୍ତ ଖାଲି ପଡ଼ିଗଲା ଓ ଜେଲଖାନାର କଏଦୀମାନଙ୍କୁ ଖାଇବାକୁ ଦେବାକୁ ସରକାର ଚାଉଳ ପାଇଲେ ନାହିଁ । ଏହି ସମୟରେ ରେଭେନ୍‌ସା ସାହେବ ପ୍ରକୃତ ପରିସ୍ଥିତିକୁ ହୃଦୟଙ୍ଗମ କରି ଏହାର ସମାଧାନ କଲେ ପ୍ରଭୂତ ପରିମାଣରେ ଧାନ ଚାଉଳ ପଠାଇବା ସକାଶେ ସରକାରଙ୍କୁ ପ୍ରାର୍ଥନା କଲେ । ସରକାର ରେଭେନ୍‌ସା ସାହେବଙ୍କ ପୂର୍ବ ପତ୍ର ବିଷୟ ସ୍ମରଣ କରି ଉତ୍ତର ଦେଲେ 'ଚାଉଳ ପଠାଇବା ନିମନ୍ତେ ଟେଲିଗ୍ରାମ କରିବା ସହଜ, ମାତ୍ର ଟେଲିଗ୍ରାମରେ ତ ଚାଉଳ ଯିବା ସମ୍ଭବ ନୁହେଁ ।' ସରକାରଙ୍କ ଏପରି ଉତ୍ତର-ମୂଳରେ ଅବଶ୍ୟ ଯଥାର୍ଥ କାରଣ ଥିଲା । ସେ ସମୟରେ ଦକ୍ଷିଣ-ମୌସୁମୀବାୟୁ ପ୍ରବାହ ଆରମ୍ଭ ହୋଇ ଯାଇଥିବାରୁ ଜଳପଥରେ କଲିକତା ଅଞ୍ଚଳରୁ ଓଡ଼ିଶାକୁ ଶସ୍ୟ ଆମଦାନୀ କରିବା ଏକାନ୍ତ ଅସମ୍ଭବ ଥିଲା । ବର୍ଷାଋତୁ ଆରମ୍ଭ ହେତୁଁ ସ୍ଥଳପଥର ଦୁର୍ଦ୍ଦଶା ମଧ୍ୟ ଅକଥନୀୟ ଥିଲା । ଏଥି ପୂର୍ବରୁ କେବଳ ଅନୁକୂଳ ବାୟୁ ପ୍ରବାହ ସମୟରେ ଜଳପଥରେ କଲିକତାକୁ ଶସ୍ୟ ରପ୍ତାନୀ କରା ହେଉଥିଲା ! ଫଳତଃ କଲିକତାରୁ ସାହାଯ୍ୟ ଆସି ପାରିଲା ନାହିଁ । ଦକ୍ଷିଣରେ ଗଞ୍ଜାମ ଜିଲ୍ଲା ଦୁର୍ଭିକ୍ଷକ୍ଳିଷ୍ଟ ହୋଇଥିବାରୁ ମାନ୍ଦ୍ରାଜ ପ୍ରଦେଶରୁ ସାହାଯ୍ୟ ପଥ ମଧ୍ୟ ରୁଦ୍ଧ ଥିଲା । ଫଳତଃ ଉତ୍କଳବାସୀମାନେ ଏକାନ୍ତ ନିଃସହାୟ ଭାବରେ 'ହା ଅନ୍ନ'ର ଚିତ୍କାରରେ ଉତ୍କଳ-ଆକାଶକୁ ବିଦୀର୍ଣ୍ଣ କଲେ ଓ ଦୁର୍ଭିକ୍ଷର କରାଳ-ଲୀଳାରେ ନିଜ ନିଜର ଜୀବନ ଉତ୍ସର୍ଗ କଲେ ।

ଦୁର୍ଭିକ୍ଷ ପୂର୍ବରୁ ଓଡ଼ିଶାରେ ଚାଉଳ ପ୍ରାୟ ଟଙ୍କାକୁ ବାଇଶସେର ଦେଢ଼ ମହଣ ଥିଲା, ମାତ୍ର ଦୁର୍ଭିକ୍ଷ ସମୟରେ ଟଙ୍କାକୁ ଦଶସେର ହୋଇଗଲା । କେତେଦିନ ଲାଗି ତିନି ଚାରି ସେର ମଧ୍ୟ ହୋଇ ଯାଇ ଥିଲା । ସରକାର ରେଙ୍ଗୁନରୁ ଚାଉଳ ଆଣି ବିକ୍ରୟ କରିବାରୁ ପୁଣି ଚାଉଳ ଦଶସେର ହୋଇଗଲା । ତଥାପି ସେ କାଳର ଅର୍ଥ-ନୈତିକ ପରିସ୍ଥିତିରେ ଲୋକଙ୍କର ଏତେ ମୂଲ୍ୟରେ ଚାଉଳ କିଣିବାର ସାମର୍ଥ୍ୟ ନ ଥିବାରୁ ବହୁ ବ୍ୟକ୍ତି ଜୀବନ ହରାଇଲେ । ଏହି ଚାଉଳ କେବଳ ସହରରେ ଯାହା ମିଳୁ ଥିଲା, ମାତ୍ର ମଫସଲରେ ତାହା ଏକାନ୍ତ ଦୁଷ୍ପ୍ରାପ୍ୟ ଥିଲା ।

ସାଧାରଣ ଶ୍ରମଜୀବୀ ଓ ମଧ୍ୟବିତ୍ତ ପରିବାରର ବ୍ୟକ୍ତିମାନେ ଏ ଦୁର୍ଭିକ୍ଷ ଦ୍ୱାରା ଏକାନ୍ତ ଶୋଚନୀୟ ଦଶାଗ୍ରସ୍ତ ହୋଇଥିଲେ । ଗାଈ, ବଳଦ, ଜମି, ସୁନା, ଟଙ୍କା ସମସ୍ତ ତୁଳନାରେ ଧାନ ଚାଉଳ ଅଧିକ ମୂଲ୍ୟବାନ ହୋଇଗଲା । ଦିନୁଁ ଦିନୁଁ ଅବସ୍ଥା ତୀବ୍ର ଓ ଜଟିଳ ହେବାରୁ ଗଛର କଅଁଳିଆ ପତ୍ର ପ୍ରଭୃତି ଲୋକେ ଭକ୍ଷଣ କରିବାକୁ ଲାଗିଲେ । ମନୁଷ୍ୟମାନଙ୍କୁ ମନୁଷ୍ୟ ରୂପରେ ଚିହ୍ନିବା କଷ୍ଟସାଧ୍ୟ ହେଲା । ଅନ୍ନା-ଭାବରେ ସେମାନେ ଶୀର୍ଣ୍ଣ, କ୍ଷୀଣକାୟ ଓ କଙ୍କାଳସାର ହୋଇଗଲେ । 'ଅନ୍ନଚିନ୍ତା ଚମତ୍କାରୀ' । ଅନ୍ନାଭାବରୁ ମନୁଷ୍ୟ, ମନୁଷ୍ୟ ମାଂସ ପର୍ଯ୍ୟନ୍ତ ଭକ୍ଷଣ କରିବାକୁ ପଶ୍ଚାତପଦ ହୋଇ ନଥିଲା ବୋଲି ଶୁଣା ଯାଇ-ଥାଏ । ଉଦରଜ୍ୱାଳା ଯୋଗୁଁ ମାନବ ହୃଦୟରୁ ସ୍ନେହ, ଦୟା, ପ୍ରୀତି, ସନ୍ତାନବାତ୍ସଲ୍ୟ ପ୍ରଭୃତି ମହତ୍ତମ ପ୍ରବୃତ୍ତି ସମସ୍ତ ଲୁପ୍ତ ହୋଇଗଲା । ଏହି ନଅଙ୍କ ଦୁର୍ଭିକ୍ଷକ୍ଳିଷ୍ଟ ନରନାରୀଙ୍କ ଶୋଚନୀୟ ଅବସ୍ଥା ବିଷୟ ପ୍ରତ୍ୟକ୍ଷଦର୍ଶୀ ଭାବରେ ଫକୀରମୋହନ ତାଙ୍କର ଆତ୍ମଜୀବନୀ ଓ ପ୍ୟାରୀମୋହନ ତାଙ୍କର ଓଡ଼ିଶା ଇତିହାସରେ ବର୍ଣ୍ଣନା କରି ଅଛନ୍ତି । ପ୍ୟାରୀମୋହନ ଲେଖିଛନ୍ତି—

"ସେ ସମୟରେ ଯେଉଁ ଭୀଷଣ ଲୋମହର୍ଷଣକାରୀ ବ୍ୟାପାରମାନ ଏହି ଉତ୍କଳ ଦେଶରେ ଅଭିନୀତ ହୋଇଥିଲା, ତାହା ସ୍ମରଣ କଲେ ହୃଦୟ ସ୍ତବ୍ଧ ଏବଂ ବିସ୍ମୟବିହ୍ୱଳ ହୋଇଯାଏ । କରାଳ ମୃତ୍ୟୁସମନ୍ୱିତ ଦୁର୍ଭିକ୍ଷ ଛବି ଅଙ୍କିତ କରିବା ମାନବୀ ଲେଖନୀର ଅସାଧ୍ୟ । ସେ ସମୟରେ ସହସ୍ର ସହସ୍ର କଙ୍କାଳପରିଣତ ନରନାରୀ-ମାନଙ୍କର ଆର୍ତ୍ତି ହାହାକାରରେ ନଗରମାନ ପରିପୂର୍ଣ୍ଣ ହୋଇଥିଲା । ନଗର ଓ ଗ୍ରାମମାନଙ୍କ ସମୀପସ୍ଥ ଶ୍ମଶାନମାନ ଅସଂଖ୍ୟ ନରଦେହରେ ପରିପୂରିତ ହୋଇଥିଲା ଏବଂ ଶକୁନ ଶୃଗାଳମାନେ ନରମାଂସ ଭକ୍ଷଣ କରି ଅସ୍ୱାଭାବିକ ରୂପେ ପରିତୃପ୍ତ ହୋଇଥିଲେ । କ୍ଷୁଧାର ପ୍ରଚଣ୍ଡ ଶାସନରେ ନରନାରୀମାନେ ସ୍ୱାଭାବିକ ହୃଦୟ-ବୃତ୍ତିମାନଙ୍କୁ ବିସର୍ଜ୍ଜନ କରିଥିଲେ । ଜନକଜନନୀ ଅସହାୟ ଶିଶୁ ସନ୍ତାନମାନଙ୍କୁ ହିଂସ୍ର ଅରଣ୍ୟ ଶ୍ୱାପଦମାନଙ୍କ ନିକଟରେ ନିକ୍ଷେପ କରିଥିଲେ । କେହି କେହି ଲୋକେ କ୍ଷୁଧାଜର୍ଜ୍ଜରିତ ହୋଇ ରାକ୍ଷସବତ୍ ନିଜ ନିଜ ସନ୍ତାନମାଂସ ସୁଦ୍ଧା ଭକ୍ଷଣ କରିଥିଲେ । ସେ ସମୟରେ ନରହତ୍ୟା, ଆତ୍ମହତ୍ୟା, ଉନ୍ମାଦ ପ୍ରଭୃତି ସାମାଜିକ ଅନାଚାରୟ ଅତ୍ୟନ୍ତ ପ୍ରବଳ ହୋଇଥିଲା । ଏକ ଏକ ଦିନ ଟଙ୍କାକୁ ଏକସେର ଚାଉଳ ମିଳିବାର ଦୁର୍ଘଟ ହୋଇଥିଲା । ସୁବର୍ଣ୍ଣ, ରୌପ୍ୟ ପ୍ରଭୃତି ଅତ୍ୟଳ୍ପ ମୂଲ୍ୟରେ ବିକ୍ରୀତ ହେଉଥିଲା । ଲୋକେ ଗେଣ୍ଡା, କାନଶିରୀ, ସାରୁନାଡ଼, ବୃକ୍ଷର ପତ୍ର ପ୍ରଭୃତି ଖାଇ ପ୍ରାଣ ବଞ୍ଚାଇ ଥିଲେ ।" ଉପର ଲିଖିତ ଅଂଶରୁ ଦୁର୍ଭିକ୍ଷ ସମୟର ପ୍ରକୃତ ଭୀଷଣ ଅବସ୍ଥା ସହଜରେ ଧାରଣା କରିହେବ ।

ସରକାର କଲିକତାରୁ ବଡ଼ ବଡ଼ ଜାହାଜ ଭଡ଼ା କରି ରେଙ୍ଗୁନ ଓ ବଙ୍ଗ ଦେଶରୁ ଓଡ଼ିଶାର ଦୁର୍ଭିକ୍ଷ-କ୍ଳିଷ୍ଟ ବ୍ୟକ୍ତିମାନଙ୍କ ସାହାଯ୍ୟ ନିମନ୍ତେ ଶସ୍ୟ ସାମଗ୍ରୀ ପ୍ରେରଣ କଲେ । କିନ୍ତୁ ସେତେ-

ବେଳକୁ ଅବସ୍ଥା ଯଥେଷ୍ଟ ଗୁରୁତର ଆକାର ଧାରଣ କରି ଅନାୟତ୍ତ ଅବସ୍ଥାକୁ ଆସିଥିଲା । ସ୍ଥାନେ ସ୍ଥାନେ ଅନ୍ନଛତ୍ର ଖୋଲାଗଲା । ପୁରୀ, କଟକ ଓ ବାଲେଶ୍ୱର ଜିଲ୍ଲା ଏହି ଦୁର୍ଭିକ୍ଷରେ ସମାନ ଭାବରେ ଆକ୍ରାନ୍ତ ହୋଇଥିଲେ । ଦକ୍ଷିଣରୁ ଚିଲିକା ହ୍ରଦ ବାଟେ ଚାଉଳ ଅଣାଯାଇ ପୁରୀଜିଲାରେ ସାହାଯ୍ୟ ଦିଆଗଲା । ଉତ୍କଳର କେତେକ ଧନୀ ମହାଜନ ଓ ସମ୍ଭ୍ରାନ୍ତ ଦୁର୍ଭିକ୍ଷକ୍ଲିଷ୍ଟ ବ୍ୟକ୍ତିମାନଙ୍କ ସାହାଯ୍ୟ ନିମନ୍ତେ ମଧ୍ୟ ଅନ୍ନଛତ୍ରମାନ ପ୍ରତିଷ୍ଠା କଲେ । ପୁରୀଜିଲାର ପୁରୀ, ଗୋପ, ପିପିଲି ପ୍ରଭୃତି ସ୍ଥାନରେ ସ୍ଥାପିତ ହେଲା । ଅନ୍ନଛତ୍ର ସ୍ଥାପନ ଯୋଗୁଁ ସୁଫଳ ସହିତ କୁଫଳ ମଧ୍ୟ ଦେଖାଗଲା । ବହୁ ଦିବସାବଧି ଅନାହାରକ୍ଲିଷ୍ଟ ବ୍ୟକ୍ତିମାନେ ଅନ୍ନଛତ୍ରକୁ ଆସିବା ବାଟରେ ପ୍ରାଣତ୍ୟାଗ କଲେ । ଯେଉଁମାନେ ଅନ୍ନଛତ୍ର ନିକଟରେ ପହଞ୍ଚିଲେ ସେମାନେ ଲୋଭ ସମ୍ବରଣ କରି ନ ପାରି ଅନ୍ନ ଭୋଜନ କରି ମୃତ୍ୟୁମୁଖରେ ପତିତ ହେଲେ । ବହୁଦିନରୁ ଅନାହାରରେ ରହି କ୍ରମ୍ପା ଅଖାଦ୍ୟ ଭୋଜନ କରି ସେମାନଙ୍କର ଶକ୍ତି ଲୋପ ପାଇଥିଲା । ଏହି ପୀଡ଼ିତ ବ୍ୟକ୍ତିମାନଙ୍କର ସେବା ଓ ଶୁଶ୍ରୂଷା କରିବା ମଧ୍ୟ ଏକ ସମସ୍ୟା ହେଲା । ଚିକିତ୍ସା ଓ ପଥ୍ୟର ଆୟୋଜନ କରାଗଲେ ସୁଦ୍ଧା ସେମାନେ ବହୁ ସଂଖ୍ୟାରେ ମୃତ ହେଲେ । ବାଲେଶ୍ୱରଠାରେ ମାସେ କି ଦେଢ଼ମାସ ପର୍ଯ୍ୟନ୍ତ ମେହେନ୍ତରମାନେ ପ୍ରତିଦିନ ତିନି ଚାରି ଖଣ୍ଡ ମଡ଼ା ବୋଝେଇ ଶଗଡ଼ ନଦୀଆଡ଼କୁ ନେଇ ଯିବା ଫକୀରମୋହନ ସ୍ୱଚକ୍ଷୁରେ ଦେଖିଥିଲେ ବୋଲି ଆତ୍ମ ଜୀବନୀରେ ସ୍ୱୀକାର କରି ଅଛନ୍ତି । ଏହି ଭାବରେ ଉତ୍କଳର ପ୍ରାୟ ଏକ ଚତୁର୍ଥାଂଶ ବା ତିରିଶ ଲକ୍ଷ ଲୋକ ନଅଙ୍କ ଦୁର୍ଭିକ୍ଷରେ ନିଜର ପ୍ରାଣ ହରାଇଥିଲେ ।

ଦୁର୍ଭିକ୍ଷକ୍ଲିଷ୍ଟ ବ୍ୟକ୍ତିମାନଙ୍କୁ ଖାଦ୍ୟ ସାମଗ୍ରୀ ଦେବା ସଙ୍ଗେ ସଙ୍ଗେ କର୍ମରେ ନିଯୁକ୍ତ କରିବାର ପ୍ରଚେଷ୍ଟା କରାଗଲା । ସରକାର

ଦୁର୍ଭିକ୍ଷର କାରଣ ଅନୁସନ୍ଧାନ କରି ସ୍ଥାୟୀଭାବରେ ଏହାର କାରଣ ନିମନ୍ତେ ପରାମର୍ଶ ଦେବାଲାଗି ଗୋଟିଏ ଦୁର୍ଭିକ୍ଷ ବୋର୍ଡ଼ ନିଯୁକ୍ତ କଲେ । ସେମାନଙ୍କ ସୁପାରିଶକ୍ରମେ ଉତ୍କଳରେ ଜଳସେଚନ ନିମନ୍ତେ କେନାଲ ଖୋଦନ ଓ ଗମନାଗମନ ପଥର ଉନ୍ନତି ବିଧାନ ନିମନ୍ତେ ଉଦ୍ୟମ ହେଲା । ଏହି କାର୍ଯ୍ୟସମୂହରେ ବହୁ ବ୍ୟକ୍ତିଙ୍କୁ ନିଯୁକ୍ତ କରି ସେମାନଙ୍କୁ ଭୋଜନ ସଙ୍ଗେ ସଙ୍ଗେ ସାମାନ୍ୟ ଅର୍ଥ ମଧ୍ୟ ପାରିଶ୍ରମିକ ସ୍ୱରୂପ ପ୍ରଦତ୍ତ ହେଉଥିଲା । ଚତୁରଆଡ଼ରୁ ସାହାଯ୍ୟ ଆସି ପହଞ୍ଚିବାରୁ ଓ ନୂଆ ଫସଲ ଅମଳ ହେବାରୁ ଅବସ୍ଥା ବହୁପରିମାଣରେ ଶାନ୍ତ ହେଲା ।

ଦୁର୍ଭିକ୍ଷ ସମୟରେ ଯେଉଁ ହିନ୍ଦୁମାନେ ସାଧାରଣ ଅନ୍ନ-ଛତ୍ରରେ ଖାଇଥିଲେ, ସେମାନଙ୍କ ପ୍ରତି ହିନ୍ଦୁସମାଜ କଠୋର ଶାସ୍ତିବିଧାନ କଲା । ସମାଜର କ୍ରୂର ନିୟମ ଫଳରେ ସେମାନେ ସମାଜଚ୍ୟୁତ ଭାବରେ ଛତ୍ରଖିଆ ନାମରେ ଆଖ୍ୟାତ ହୋଇ ଘୃଣ୍ୟ-ଦୃଷ୍ଟିରେ ପରିତ୍ୟକ୍ତ ହେଲେ । ଖ୍ରୀଷ୍ଟିଆନ ଧର୍ମପ୍ରଚାରକମାନେ ସେମାନଙ୍କୁ ଆଦରରେ ପାଳନ କରିବାରୁ ସେମାନେ ଖ୍ରୀଷ୍ଟିଆନ ଧର୍ମରେ ଦୀକ୍ଷିତ ହେଲେ । ଅବିବେକୀ ସମାଜର ଏହି ଦାରୁଣ ବ୍ୟବହାର ବାସ୍ତବରେ ହିନ୍ଦୁ ସାମାଜିକ ଜୀବନର ଏକ କଳଙ୍କ ।

ଦୁର୍ଭିକ୍ଷ ଚାଲିଗଲା, ମାତ୍ର ଉତ୍କଳର ଦୃଢ଼ ମେରୁଦଣ୍ଡକୁ ଭଗ୍ନ ଓ ଶିଥିଳ କରି ଦେଇଗଲା । ଉତ୍କଳ ଶ୍ମଶାନତୁଲ୍ୟ ବୋଧ ହେଲା । ଏହି ଶ୍ମଶାନ ମଧ୍ୟରୁ ନୂତନ ଜୀବନଗଠନର ଉପକ୍ରମ ଏକାନ୍ତ ଆୟାସସାଧ୍ୟ ଥିଲା । ଆଜି ଗମନାଗମନର ସୁବିଧା ପୂର୍ଣ୍ଣ ଯୁଗରେ ନଅଙ୍କ ପରି ଭୟାବହ ଦୁର୍ଭିକ୍ଷ ସଂଘଟିତ ହେବାର ଆଶଙ୍କା ନ ଥିଲେ ସୁଦ୍ଧା ପଞ୍ଚାଅଶୀ ବର୍ଷତଳେ ଉତ୍କଳରେ ଅଭିନୀତ ହୋଇଥିବା

ନଅଙ୍କ ଦୁର୍ଭିକ୍ଷର କରାଳ ଲୀଳା ବିଷୟ ସ୍ମରଣ କଲେ ଉତ୍କଳୀୟମାନଙ୍କର ଲୋମହର୍ଷଣ ହେବା ସ୍ୱାଭାବିକ ।

ପ୍ରଶ୍ନ—୧ । 'ନଅଙ୍କ'ର ନାମ ସ୍ମରଣରେ ପ୍ରତି ଉତ୍କଳୀୟ ପ୍ରାଣରେ ଭୀତି ସଞ୍ଚାର ହେବାର କାରଣ କଅଣ ?

୨ । ନଅଙ୍କ ଦୁର୍ଭିକ୍ଷ ସଂଘଟିତ ହେବା ମୂଳରେ କି କାରଣ ନିହିତ ?

୩ । 'ନଅଙ୍କ'ର ଭୟାବହ ଅବସ୍ଥା ବର୍ଣ୍ଣନା କର ।

୪ । ପଠିତ ବିଷୟର ଅବଲମ୍ବନରେ ତତ୍କାଳୀନ ଉତ୍କଳର ଆର୍ଥିକ, ସାମାଜିକ, ରାଜନୈତିକ ଓ ଦେଶର ଅଭ୍ୟନ୍ତରୀଣ ପରିସ୍ଥିତିର ଏକ ଚିତ୍ର ପ୍ରଦାନକର ।

---

## କୃଷି ଓ କୃଷକ

ପ୍ରାଗୈତିହାସିକ ଯୁଗରେ ମନୁଷ୍ୟ କିପରି ଅସଭ୍ୟ, ଅନୁନ୍ନତ ଓ ଅମାର୍ଜିତ ଥିଲା ତାହା ଆଜି ଭାବିଲେ ବିସ୍ମୟରେ ଅଭିଭୂତ ହେବାକୁ ପଡ଼େ । ସେହି ଆଦିମ ଯୁଗର ମଣିଷ ବଣର ଇତର ପ୍ରାଣୀମାନଙ୍କପରି ବନଜାତ ଫଳମୂଳ ଓ ଅସିଦ୍ଧ ମାଂସ ଭକ୍ଷଣ କରି ଜୀବନଧାରଣ କରୁଥିଲା । କ୍ରମେ ସେମାନଙ୍କର ବଂଶ ବୃଦ୍ଧିଲାଭ କଲା ଏବଂ ଏକ ସ୍ଥାନରେ ଆହାର୍ଯ୍ୟ ବସ୍ତୁ ସଂଗ୍ରହ କରିବା ସେମାନଙ୍କ ପକ୍ଷରେ ଅସମ୍ଭବ ହୋଇ ପଡ଼ିଲା । ତେଣୁ ଆହାର ଅନ୍ୱେଷଣରେ ଦଳବଦ୍ଧ ଭାବରେ ସେମାନେ ଇତସ୍ତତଃ ଭ୍ରମଣ କରିବାକୁ ବାଧ୍ୟ ହେଲେ । କାଳକ୍ରମେ ଆଦିମ ଯୁଗର ସେହି ଭ୍ରାମ୍ୟଜୀବୀ ମନୁଷ୍ୟ ଏକସ୍ଥାନରେ ଅବସ୍ଥାପନ କରି ଜମିରେ ଶସ୍ୟ ଉତ୍ପାଦନ କରି

ଶିଖିଲା । ଏହାପରେ କୃଷିକାର୍ଯ୍ୟ କରିବା ଦ୍ୱାରା ମନୁଷ୍ୟର ସ୍ୱତନ୍ତ୍ର କୃଷ୍ଟିର ସୂତ୍ରପାତ ହୋଇଅଛି ।

କିନ୍ତୁ ସେହି ଆଦିମ ଯୁଗର ମନୁଷ୍ୟକୁ ଭୂମିକର୍ଷଣ ପଦ୍ଧତି ଜଣା ନଥିଲା । ତେଣୁ ବନଭୂମିରେ ଅଗ୍ନି ସଂଯୋଗ କରି ସେହି ଭୂମିରେ ଶସ୍ୟୋତ୍ପାଦନ କରୁଥିଲା । ସେତେବେଳେ ଜନସଂଖ୍ୟାର ସ୍ୱଳ୍ପତା ଓ ସୁବିସ୍ତୃତ ସ୍ୱତ୍ୱହୀନ ଅରଣ୍ୟାବଳୀର ବିଦ୍ୟମାନତା ଯୋଗୁଁ ମନୁଷ୍ୟ କୃଷିଯୋଗ୍ୟ ଭୂମିର ଅଭାବ ଉପଲବ୍ଧି କରି ପାରୁ ନ ଥିଲା । ତେଣୁ ଗୋଟିଏ କ୍ଷେତ୍ରରେ ଏକାଧିକ ଶସ୍ୟୋତ୍ପାଦନର ଚିନ୍ତା ମନୁଷ୍ୟ କରୁ ନ ଥିଲା କିମ୍ବା କର୍ଷଣ ଓ ସାର ପ୍ରୟୋଗ ଦ୍ୱାରା ଜମିର ଉତ୍ପାଦିକା ଶକ୍ତି ବୃଦ୍ଧି ବିଷୟରେ ମଧ୍ୟ ସେ ଅବହିତ ନଥିଲା ।

କାଳକ୍ରମେ ଜନସଂଖ୍ୟା ବୃଦ୍ଧିଲାଭ କଲା ଓ ଭୂମିଉପରେ ଅଧିକାରିତ୍ୱ ସାବ୍ୟସ୍ତ ହେଲା । ତେଣୁ ଜମିରୁ ବାରମ୍ବାର ଶସ୍ୟୋତ୍ପାଦନ ଓ ଭୂମିର ଉତ୍କର୍ଷ ସାଧନର ପ୍ରୟୋଜନୀୟତା ଅନୁଭୂତ ହେଲା ।

ଅତି ପ୍ରାଚୀନ କାଳରୁ ଭାରତରେ କୃଷିକାର୍ଯ୍ୟର ପ୍ରଚଳନ ଥିଲା । ବୈଦିକ ଯୁଗର ବହୁ ପୂର୍ବେ, ଅନୁମାନିକ ତିନିହଜାର ବର୍ଷ ପୂର୍ବେ, ଭାରତବର୍ଷରେ କୃଷିକାର୍ଯ୍ୟ ପ୍ରଚଳିତ ଥିବାର ପ୍ରମାଣ ମିଳିଅଛି । ସିନ୍ଧୁ ପ୍ରଦେଶର ମହେଞ୍ଜୋଦାରୋରେ ଭୂଖୋଦନ ଫଳରେ ଏହା ପ୍ରମାଣିତ । ଗହମ ଓ ଯବ ସେଠାରେ ଉତ୍ପାଦିତ ହେଉଥିଲା । ପୃଥିବୀର ପ୍ରାଚୀନତମ ରଚନା ଋକ୍ ବେଦ, ଅଥର୍ବ-ବେଦ, ବ୍ରାହ୍ମଣ ଓ ଉପନିଷଦ ପ୍ରଭୃତି ଗ୍ରନ୍ଥରୁ ବୈଦିକ ଯୁଗର ପଶୁପାଳନ, ଭୂମିକର୍ଷଣ ଓ ଶସ୍ୟୋତ୍ପାଦନ ସଂପର୍କରେ ସବିଶେଷ ବିବରଣୀ ମିଳିଥାଏ । ଶତାବ୍ଦୀ ଶତାବ୍ଦୀ ଧରି ମନୁଷ୍ୟ ଏହି ଆଦିମ

ବୃତ୍ତିକୁ ଆଦରର ସହିତ ତାହାର ଜୀବନ ଧାରଣର ଏକାନ୍ତ ଅପରିହାର୍ଯ୍ୟ ଅଂଶ ରୂପେ ଗ୍ରହଣ କରି ଆସିଛୁ । ବହୁ ଯୁଗର ପରୀକ୍ଷା ଓ ବହୁ ବ୍ୟକ୍ତିଙ୍କର ଗବେଷଣା ଫଳରେ କୃଷିକାର୍ଯ୍ୟର ବହୁମୁଖୀ ବିକାଶ କ୍ରମଶଃ ସାଧିତ ହୋଇ ପାରିଛି ।

ହିସାବରୁ ଜଣାଯାଇଛି, ଆମର ଏହି ଭାରତବର୍ଷର ଦୁଇ ତୃତୀୟାଂଶରୁ ଅଧିକ ବ୍ୟକ୍ତି ଏହି କୃଷିକାର୍ଯ୍ୟକୁ ଅବଲମ୍ବନ କରି ଜୀବିକା ନିର୍ବାହ କରନ୍ତି । ଏହା ଆମର ଜାତୀୟ ସଂପଦର ପ୍ରଧାନ ଉପାଦାନ । କୃଷି ଉତ୍ପନ୍ନ ଦ୍ରବ୍ୟସକଳହିଁ ଭାରତର ପ୍ରଧାନ ରପ୍ତାନୀ ଦ୍ରବ୍ୟ ସମ୍ଭାର । ଚିନି ଓ ବସ୍ତ୍ରଶିଳ୍ପ ପ୍ରଭୃତି ଭାରତର ପ୍ରଧାନ ଶିଳ୍ପ ଗୁଡ଼ିକ କଞ୍ଚାମାଲ ପାଇଁ ଏହି କୃଷି ଉପରେହିଁ ନିର୍ଭର କରନ୍ତି । ସର୍ବୋପରି କୃଷିଜାତ ଦ୍ରବ୍ୟହିଁ ଏ ଦେଶର ୬୮ କୋଟି ଲୋକଙ୍କୁ ଖାଦ୍ୟ ଯୋଗାଇ ଥାଏ । ତେଣୁ ଭାରତରେ କୃଷି କାର୍ଯ୍ୟର ଗୁରୁତ୍ୱ କାହାରିକୁ ଅବିଦିତ ନାହିଁ ।

କିନ୍ତୁ ଆମ ଦେଶରେ କୃଷି ଓ କୃଷକର ଅବସ୍ଥା ଅତ୍ୟନ୍ତ ଶୋଚନୀୟ । ଅବଶ୍ୟ ମୋଟ ଉତ୍ପାଦନ ଦୃଷ୍ଟିରୁ ଓ ବିନିଯୁକ୍ତ କୃଷି ଜମିର ପରିମାଣ ଦୃଷ୍ଟିରୁ ଭାରତର ସ୍ଥାନ ପୃଥିବୀର ଅନ୍ୟାନ୍ୟ ଦେଶ ତୁଳନାରେ ନଗଣ୍ୟ ନୁହେଁ । ଉଦାହରଣ ସ୍ୱରୂପ ଗହମ ଓ ଚାଉଳ ଉତ୍ପାଦନରେ ଭାରତ ଦ୍ୱିତୀୟ ସ୍ଥାନ ଅଧିକାର କରିଅଛି । ପୃଥିବୀର ସବୁ ଦେଶ ଅପେକ୍ଷା ଭାରତରେ ବେଶୀ ଜମିରେ ଆଖୁଚାଷ ହୋଇ ଥାଏ । ଚିନାବାଦାମ, ଲଙ୍କା ପ୍ରଭୃତି ଉତ୍ପାଦନରେ ଭାରତ ପୃଥିବୀରେ ପ୍ରଥମ ସ୍ଥାନ ଅଧିକାର କରିଆସୁଛି । ଝୋଟ ଓ ତୁଳା ଉତ୍ପାଦନରେ ଭାରତର ସ୍ଥାନ ଦ୍ୱିତୀୟ । କିନ୍ତୁ ଏଥିରେ ଉଲ୍ଲସିତ ବା ଅସ୍ତୁଷ୍ଟାନ୍ୱିତ ହେବାର ଅବକାଶ ନାହିଁ, କାରଣ ଭାରତର ତିନିଚତୁର୍ଥାଂଶ ଲୋକ ଏହି କୃଷି କାର୍ଯ୍ୟରେ ଲିପ୍ତ ରହନ୍ତି ଏବଂ ଏହା ଉପରେ ନିର୍ଭର କରି ଚଳନ୍ତି ।

ଭାରତରେ କୃଷିହିଁ ଲୋକମାନଙ୍କର ସର୍ବୋତ୍ତମ ଏବଂ ଏକମାତ୍ର ଅବଲମ୍ବନ । ଏତଦ୍ ସତ୍ତ୍ୱେ ଭାରତର କୃଷିଜାତ ଉତ୍ପାଦନ ଭାରତ ପକ୍ଷେ ପର୍ଯ୍ୟାପ୍ତ ନୁହେଁ । ପରନ୍ତୁ, ଭାରତରେ ଏକର ପିଚ୍ଛ ଉତ୍ପାଦନ ବିଷୟ ଆଲୋଚନା କଲେ ଭାରତୀୟ କୃଷି ଶିଳ୍ପର ଦୁରବସ୍ଥା ଉତ୍ତମ ରୂପେ ହୃଦୟଙ୍ଗମ କରି ହୁଏ । ଏକ ଏକର ଗହମ ଜମିରୁ ଭାରତୀୟ ଚାଷୀ ୬୬୦ ପାଉଣ୍ଡ ମାତ୍ର ଗହମ ପାଉଥିବା ବେଳେ ମିଶର, ଜାପାନ ଓ ଚୀନ ଦେଶର ଚାଷୀ ଯଥାକ୍ରମେ ୧୯୧୮, ୧୭୧୩ ଓ ୮୯୮ ପାଉଣ୍ଡ ଗହମ ଉତ୍ପାଦନ କରିଥାନ୍ତି । ବିଶାଳ ଭାରତ ବର୍ଷରେ ଉତ୍ପାଦିତ ଆଖୁର ପରିମାଣ କ୍ଷୁଦ୍ରରାଜ୍ୟ ଜାଭାର ଇକ୍ଷୁ ଉତ୍ପାଦନର ଏକ ଚତୁର୍ଥାଂଶ



ମଧ୍ୟ ହେବ ନାହିଁ । ଏଥିରୁ ଭାରତୀୟ କୃଷି ଓ କୃଷକର ଦୁରବସ୍ଥା ସହଜରେ ଅନୁମେୟ । ଭାରତରେ ଏବେ ମଧ୍ୟ ସେଇ ଆଦିମ ବା ମଧ୍ୟ ଯୁଗର କୃଷି ବ୍ୟବସ୍ଥା ପ୍ରଚଳିତ । ଭାରତୀୟ କୃଷକ ଜମିର

ଜନସାଧାରଣଙ୍କ ବୃଦ୍ଧି ବିଷୟରେ ଯେପରି ଅନବହିତ, ସେହିପରି କୃଷି-ଶିଳ୍ପରେ ଉପଯୋଗୀ ଅର୍ଥ ବିନିଯୋଗ କରିବାକୁ ଅସମର୍ଥ । ଏହିପରି ବହୁ ଶତାବ୍ଦୀ ଧରି ଭାରତବର୍ଷରେ ଏହି ଅନୁନ୍ନତ କୃଷିବ୍ୟବସ୍ଥା ଯୋଗୁଁ ଜନସାଧାରଣ କେବେ ଅନଶନ ଓ କେବେ ଅର୍ଦ୍ଧାଶନ ଭିତରେ ଚଳି ଆସୁଥିଲେ । କିନ୍ତୁ ପୃଥିବୀ ମହାଯୁଦ୍ଧ ଆରମ୍ଭ ହେବା ପରେ ଭାରତ ଖାଦ୍ୟ ଶସ୍ୟ ପାଇଁ ବର୍ମା ପ୍ରଭୃତି ଅପର ଦେଶ ଉପରେ ନିର୍ଭର କରୁଥିବାର କୁପରିଣାମ ଉପଲବ୍ଧି କରିପାରିଲା । ଯଥା ସ୍ଥାନରେ ଖାଦ୍ୟ ଶସ୍ୟ ନମିଳିବାରୁ ଭାରତକୁ ଆମେରିକା ପ୍ରଭୃତି ସମୃଦ୍ଧ ଦେଶ ପାଖେ ଭିକ୍ଷୁକ ଭଳି ହାତ ପାତିବାକୁ ପଡ଼ିଲା ।

ଯୁଦ୍ଧୋତ୍ତର ସମୟରେ ମଧ୍ଯ ଏହି ଅବସ୍ଥା ଉତ୍କଟତର ହେବାକୁ ଲାଗିଲା । ଖାଦ୍ୟ ଶସ୍ୟର ଦରଦାମ ବୃଦ୍ଧିଯୋଗୁଁ ଭାରତ ସେ ସବୁ ପଦାର୍ଥ ବହୁ ମୂଲ୍ୟରେ ଅପର ଦେଶରୁ କିଣିବାକୁ ବାଧ୍ଯ ହେଉଛି ଏବଂ ତାହାକୁ ଦେଶର ଅଭାବଗ୍ରସ୍ତ ଅଂଚଳର ଜନସାଧାରଣଙ୍କୁ ହ୍ରାସ ମୂଲ୍ୟରେ ବିକିବାକୁ ପଡ଼ୁଛି । ଭାରତ ଦ୍ୱିଖଣ୍ଡିତ ହୋଇଯିବା ଫଳରେ ଭାରତର କୃଷି ଓ କୃଷକର ଅବସ୍ଥା ଆହୁରି ଶୋଚନୀୟ ହୋଇ ପଡ଼ିଛି । ସିନ୍ଧୁ ଓ ପଞ୍ଜାବରେ ଜଳସେଚନ ବ୍ୟବସ୍ଥା ସବୁଠାରୁ ଉନ୍ନତତର । ଅଥଚ ସେଇ ଦୁଇଟି ଭୂଖଣ୍ଡ ବର୍ତ୍ତମାନ ପାକିସ୍ଥାନର ଅନ୍ତର୍ଭୁକ୍ତ । ଉନ୍ନତ ଧରଣର କାର୍ପାସ ଓ ଗହମର ଉତ୍ପାଦନ କ୍ଷେତ୍ର ମଧ୍ଯ ପୂର୍ବୋକ୍ତ ଅଂଚଳରେ ବିଦ୍ୟମାନ । ପକ୍ଷାନ୍ତରରେ ପାକିସ୍ଥାନ ଅପେକ୍ଷା ଭାରତର ଖାଦ୍ୟୋପଯୋଗୀ ଶସ୍ୟ ଆମଦାନୀ କ୍ଷେତ୍ର ଅଧିକ ଥିଲେହେଁ ଭାରତ ଏକ ନିଅଣ୍ଟିଆ, ଅଭାବଗ୍ରସ୍ତ ଅଞ୍ଚଳ ହୋଇ ପଡ଼ିଛି । ଭାରତରେ ବାର୍ଷିକ ପ୍ରାୟ ଦୁଇଲକ୍ଷ ଟନ୍ ଖାଦ୍ୟ ଶସ୍ୟ ଅଭାବ ହୁଏ ।

ସେଥିପାଇଁ ଏହି ଖାଦ୍ୟାଭାବ ଦୂରୀକରଣାର୍ଥେ ଭାରତ ସରକାର ବିବିଧ ଯୋଜନା କରି ସେହି ଅନୁଯାୟୀ କାର୍ଯ୍ୟକାରୀ ହେଉଛନ୍ତି । 'ଅଧିକ ଖାଦ୍ୟ ଉତ୍ପାଦନ ଯୋଜନା', 'ପଞ୍ଚବାର୍ଷିକ ଯୋଜନା' ଆଦି ଏହାର ଅନ୍ତର୍ଗତ । ବିଦେଶରୁ ଖାଦ୍ୟ ଆମଦାନୀ ନ କରିବାକୁ ନିଷ୍ପତ୍ତି କରିଥିଲେହେଁ ନାନା ପ୍ରତିକୂଳ ପରିସ୍ଥିତିର ଗୂପରେ ଭାରତ ସରକାରଙ୍କୁ ବାଧ୍ୟ ହୋଇ ବିଦେଶରୁ ଖାଦ୍ୟ-ଶସ୍ୟ ଆଣିବାକୁ ପଡ଼ୁଛି । ଏପରି ନିଷ୍ପତ୍ତି କରିବାର ଉଦ୍ଦେଶ୍ୟ ହେଉଛି ଦେଶରେ ଶସ୍ୟୋତ୍ପାଦନ ବୃଦ୍ଧିକରି ଦେଶଙ୍କୁ ସ୍ୱାବଲମ୍ବୀ କରିବା ।

ଏଣୁ ଆଜି ଶସ୍ୟ ଉତ୍ପାଦନର ପରିମାଣ ବୃଦ୍ଧି କରିବା ନିମିତ୍ତ ଉନ୍ନତ ଧରଣର କୃଷି ବ୍ୟବସ୍ଥା ପ୍ରଚଳନ, ବହୁ ପତିତ ଜମି ଉଦ୍ଧାରକରି ସେଥିରେ କୃଷିକର୍ମ ସଂପାଦନ ଏବଂ ଜଳସେଚନ ବ୍ୟବସ୍ଥା ପ୍ରବର୍ତ୍ତନ ଆଦି ଅତ୍ୟନ୍ତ ଜରୁରୀ ହୋଇପଡ଼ିଛି । ପ୍ରଥମେ ଭାରତର ଯେଉଁ ଅଞ୍ଚଳରେ ଜଳସେଚନର ବ୍ୟବସ୍ଥା ଅଛି, ସେଠାରେ କୃଷକ-ମାନଙ୍କୁ ଉନ୍ନତ ଧରଣର ବିହନ ଓ ସାର ଯୋଗାଇଦେବା ଉଚିତ । ତଦ୍ଦ୍ୱାରା ସେଠାରେ ଶସ୍ୟ ଉତ୍ପାଦନର ପରିମାଣ ବୃଦ୍ଧିଲାଭ କରିବ । ଦ୍ୱିତୀୟରେ ସ୍ୱାବଲମ୍ବୀ ହେବାର ନିମିତ୍ତ ଅକର୍ଷିତ, ପତିତ ଜମିକୁ ଚାଷଯୋଗ୍ୟ କରିବା ଆବଶ୍ୟକ । ଭାରତବର୍ଷରେ ଏହିପରି ୮୫୦ଲକ୍ଷ ଏକର ଅବ୍ୟବହୃତ ପତିତ ଜମି ରହିଅଛି । କେନ୍ଦ୍ରୀୟ ଟ୍ରାକ୍ଟର ଅନୁଷ୍ଠାନ (Central Tractor Organ station)ର ସହଯୋଗତାରେ ସରକାର ତରଫରୁ ଏହିଭଳି ବହୁ ଲକ୍ଷ ଏକର ଜମି ଆବାଦଯୋଗ୍ୟ ହୋଇ ପାରିଛି । ତୃତୀୟତଃ ଜଳସେଚନର ସୁବ୍ୟବସ୍ଥାଲାଗି କୂପ-ଖନନ, କ୍ଷୁଦ୍ର କ୍ଷୁଦ୍ର ଜଳସେଚନ ବ୍ୟବସ୍ଥା ପ୍ରବର୍ତ୍ତନ ଓ ନଦୀ ବନ୍ଧ ଯୋଜନା କାର୍ଯ୍ୟକାରୀ ହେବା ଆବଶ୍ୟକ । ସେଥିପାଇଁ ଭାରତର

କେତୋଟି ନଦୀରେ ବନ୍ଧବାନ୍ଧିବା କାର୍ଯ୍ୟ ଖୁବ୍ ଦ୍ରୁତଗତିରେ ଆଗେଇ ଚାଲିଛି । ଆମ ଓଡ଼ିଶାରେ ହୀରାକୁଦ ବନ୍ଧର କାର୍ଯ୍ୟ ଶେଷ ହେଲେ ମହାନଦୀ ଅବବାହିକାର ବହୁ ଅଞ୍ଚଳରେ ଜଳସେଚନର ସୁବ୍ୟବସ୍ଥା ହୋଇପାରିବ ଓ ହଜାର ହଜାର ଏକର ପଡ଼ିଆଜମି କୃଷିକାର୍ଯ୍ୟର ଉପଯୋଗୀ ହୋଇପାରିବ ।

ଜମିକୁ ଉର୍ବର ଓ ପ୍ରଚୁର ଉତ୍ପାଦନକ୍ଷମ କରାଇବାକୁ ସାର ଏକାନ୍ତ ଆବଶ୍ୟକ । ଭାରତର କୃଷକ ତାହାର କୃଷିକ୍ଷେତ୍ରରେ ଯଥେଷ୍ଟ ପରିମାଣରେ ସାର ଦେଉ ନ ଥିବାରୁ ଭାରତର ଉତ୍ପାଦନ ଅତ୍ୟନ୍ତ କମ । ଏଥିପାଇଁ ଭାରତୀୟ କୃଷକର ଅଜ୍ଞତା ଓ ଅର୍ଥାଭାବ ଯେପରି ବହୁ ପରିମାଣରେ ଦାୟୀ, ସେହିପରି ଭାରତବର୍ଷରେ ଉନ୍ନତ ସାରର ଅଭାବ ମଧ୍ୟ ଏଥିପାଇଁ କମ୍ ଦାୟୀ ନୁହେଁ । ସୁଖର କଥା, ଭାରତ-ସରକାର ସାର ଯୋଗାଇଦେବା ଅଭି-ପ୍ରାୟରେ ବିହାରର ସିନ୍ଦ୍ରିଠାରେ ଯେଉଁ ସାର ଉତ୍ପାଦନ କାରଖାନା ସ୍ଥାପନ କରିଥିଲେ, ତାହା କାର୍ଯ୍ୟକାରୀ ହୋଇ ଦେଶକୁ ସାର ଯୋଗାଇବାକୁ କ୍ଷମ ହୋଇ ପାରୁଛି । ବିଭିନ୍ନ ପ୍ରାଦେଶିକ ସରକାର-ମାନେ ସ୍ୱ ସ୍ୱ ପ୍ରଦେଶର ଉତ୍ପାଦନ ବୃଦ୍ଧି ଉଦ୍ଦେଶ୍ୟରେ କମ୍ପୋଷ୍ଟସାରର ପ୍ରଭୂତ ବ୍ୟବହାର ଲାଗି ଉଦ୍ୟମ ଚଳାଇଛନ୍ତି । କୃଷି କାର୍ଯ୍ୟର ଉନ୍ନତି ସାଧନ ଲାଗି ଭାରତର କୃଷି ବୈଜ୍ଞାନିକମାନେ ମଧ୍ୟ ବହୁ ଗବେଷଣାରେ ବର୍ତ୍ତମାନ ନିଯୁକ୍ତ ହୋଇଛନ୍ତି ।

ସମଗ୍ର ପୃଥିବୀରେ ତଥା ଭାରତରେ ଜନସଂଖ୍ୟା ଅତି ଦ୍ରୁତ ଗତିରେ ବଢ଼ି ଚାଲିଛି । ସେହି ଅନୁପାତରେ ପ୍ରଚୁର ଶସ୍ୟ ଉତ୍ପାଦନ କରିବା ଆମର ଏକାନ୍ତ ପ୍ରୟୋଜନ । ତା ନୋହିଲେ ଦେଶରୁ ଅନ୍ନକଷ୍ଟ ଓ ଦାରିଦ୍ର୍ୟ ହାହାକାର ଦୂର ହେବାର ଆଶା ସୁଦୂର-ପରାହତ । ଦୀର୍ଘ କାଳ ଧରି ଆମେ କର୍ମବିମୁଖ ହୋଇ ପଡ଼ିଥିଲେ

ଏବଂ ଶାରୀରିକ ଶ୍ରମକୁ ଉପଯୁକ୍ତ ସମ୍ମାନ ଦେଉ ନ ଥିଲୁ । ସ୍ୱାଧୀନ ଭାରତରେ ଆଜି ଆମକୁ କର୍ମବିମୁଖତା ପରିବର୍ତ୍ତେ କାର୍ଯ୍ୟତତ୍ପର ହେବାକୁ ପଡ଼ିବ ଏବଂ କୃଷିକାର୍ଯ୍ୟ ପ୍ରତି ସମୁଚିତ ଦୃଷ୍ଟି ଦେବାକୁ ପଡ଼ିବ ।

ପ୍ରଶ୍ନ—୧ । ଭାରତ କୃଷିପ୍ରଧାନ ଦେଶ ହୋଇଥିଲେ ଖାଦ୍ୟାଭାବ ଭାରତରେ ଏକ ପ୍ରଧାନ ସମସ୍ୟା କାହିଁକି ? ଏହି ସମସ୍ୟାର ସମାଧାନ କିପରି ହୋଇ ପାରିବ ?

୨ । ଭାରତୀୟ କୃଷକମାନେ ଅନ୍ୟଦେଶର କୃଷକମାନଙ୍କ ତୁଳନାରେ ଏକାନ୍ତ ଦରିଦ୍ର । ସେମାନଙ୍କର ଆର୍ଥିକ ଅବସ୍ଥା ଉନ୍ନତ ହେବା ନିମନ୍ତେ କି ପନ୍ଥା ଗ୍ରହଣ କରାଯାଇପାରେ ?

୩ । ପଦ ପରିବର୍ତ୍ତନ କର ।

ଆହାର୍ଯ୍ୟ, ନିଯୁକ୍ତ, ପ୍ରୟୋଗ, ଅନୁଭୂତ, ଅବହିତ ।

୪ । ଶବ୍ଦାର୍ଥ ଲେଖ ।

ପ୍ରାଗୈତିହାସିକ, ଅଭିଭୂତ, ଅସିଦ୍ଧ, କୃଷ୍ଟି, ଅନ୍ୱେଷଣ, ବୃତ୍ତି, ଅବାଦତ, ସ୍ୱାବଲମ୍ବୀ, ସମୃଦ୍ଧ ଓ ସମୁଚିତ ।

---

## ଆମର ଅଦୃଶ୍ୟ ଶତ୍ରୁ

ବେଗବାନ, ସବଳ ଶରୀର ଓ ସୁସ୍ଥ, ଆନନ୍ଦିତ ମନ ନେଇ ଦୀର୍ଘଜୀବୀ ହେବାକୁ କିଏ ବା କାମନା ନ କରେ ? ସୁସ୍ଥ ଏବଂ ଦୀର୍ଘଜୀବୀ ହେବା ଲାଗି ପୃଥିବୀରେ ଚିରଦିନ ସାଧନା ଚାଲି ଆସିଛି । ବଞ୍ଚିବାର ଆନନ୍ଦ ଉପଭୋଗ ଲାଗି ମନୁଷ୍ୟର ସୁସ୍ଥ ଦେହ ଓ ସୁସ୍ଥ ମନ

ଉଭୟ ଏକାନ୍ତ ପ୍ରୟୋଜନ । ଏହିପରି ସୁସ୍ଥଦେହ ଓ ସୁସ୍ଥମନ-ବିଶିଷ୍ଟ ବ୍ୟକ୍ତିହିଁ ଜଗତରେ ସାଧାରଣତଃ ଦୀର୍ଘଜୀବୀ ହୋଇଥାନ୍ତି । ଯେଉଁ ଦେଶ ଓ ଜାତିରେ ଏହିଭଳି ବହୁ ସଂଖ୍ୟକ ବ୍ୟକ୍ତି ଦେଖା-ଯାନ୍ତି ସେ ଦେଶ ବାସ୍ତବିକ ଭାଗ୍ୟବାନ । କିନ୍ତୁ ନିଜକୁ ନୀରୋଗ ରଖିବାକୁ ଓ ନିଜର ଜୀବନକାଳ ଦୀର୍ଘ କରିବାକୁ ମନୁଷ୍ୟ ସର୍ବଦା ଉତ୍ସୁକ ଥିଲେହେଁ ନିଜର ଅଜ୍ଞତା, ଅଭାବ ଓ ନାନା ପ୍ରତିକୂଳ କାରଣରୁ ସେ ରୁଗ୍ଣ ଓ ଜରାଗ୍ରସ୍ତ ହୋଇ ଅବଶେଷରେ ମୃତ୍ୟୁ-ମୁଖରେ ପଡ଼ିଥାଏ ।

ଯୁଗ ଯୁଗ ଧରି କେତେକ ରୋଗର ଜୀବାଣୁ ମନୁଷ୍ୟ ଦେହରେ ରୋଗ ଉତ୍ପନ୍ନକରି ଆସୁଛନ୍ତି । ସେମାନଙ୍କୁ ଖାଲିଆଖିରେ ଦେଖିବା ଅସମ୍ଭବ । ମାତ୍ର ପ୍ରାୟ ଏକଶତବର୍ଷ ହେବ ଏମାନଙ୍କୁ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ନିର୍ଣ୍ଣୟକରିବା ସମ୍ଭବପର ହୋଇଅଛି । ଏହି ଅଣୁବୀକ୍ଷଣିକ ପ୍ରାଣୀମାନେହିଁ ପ୍ରକୃତରେ ଆମର ଅଦୃଶ୍ୟଶତ୍ରୁ । ଏମାନଙ୍କ ଶକ୍ତି ଅପ୍ରତିହତ ଏବଂ ଏମାନେ ଜଳ, ସ୍ଥଳ, ଅନ୍ତରୀକ୍ଷ ସର୍ବତ୍ର ପରିବ୍ୟାପ୍ତ ହୋଇ ରହିଛନ୍ତି । କେବଳ ମନୁଷ୍ୟସମାଜର ଯେ ଅପରିସୀମ କ୍ଷତିସାଧନ କରିଆସୁଛନ୍ତି ତାହାନୁହେଁ । ସମସ୍ତ ପ୍ରାଣୀ ଓ ଉଦ୍ଭିଦଜଗତ ମଧ୍ୟ ଏମାନଙ୍କର କ୍ରୂର ପ୍ରଭାବରୁ ମୁକ୍ତ ନୁହେଁ ।

ପ୍ରତ୍ୟେକ ଜୀବାଣୁ କିନ୍ତୁ ଆମର ତଥା ପ୍ରାଣିଜଗତର ଅନିଷ୍ଟ ସାଧନ କରନ୍ତିନାହିଁ । ଅସଂଖ୍ୟ ଅଦୃଶ୍ୟ ଶତ୍ରୁଭଳି ଅସଂଖ୍ୟ ଅଦୃଶ୍ୟ ମିତ୍ର ମଧ୍ୟ ପ୍ରାଣିଜଗତର ଅଶେଷ କଲ୍ୟାଣ ସାଧନ କରି ଆସୁଛନ୍ତି । କେବଳ ଏଇମାନଙ୍କ ବିଦ୍ୟମାନତାଯୋଗୁହିଁ ପ୍ରାଣିଜଗତର ଅସ୍ତିତ୍ୱ ସମ୍ଭବପର ହୋଇ ପାରିଛି । ଏହି ଅଦୃଶ୍ୟ ଶତ୍ରୁମାନଙ୍କର ବିଷୟହିଁ ଏଠାରେ ଆମ୍ଭର ଆଲୋଚ୍ୟ ।

ଜୀବାଣୁମାନଙ୍କର ଧ୍ୱଂସଲୀଳା ବାସ୍ତବିକ ବିସ୍ମୟକର । ସୁସ୍ଥ ଦେହରେ ପ୍ରବେଶ କରି ଏମାନେ ଯେଉଁ ବିଷ ସୃଷ୍ଟି କରନ୍ତି ତାହା ପ୍ରାଣୀର ଧ୍ୱଂସର କାରଣ ହୁଏ । ହଇଜା, ବସନ୍ତ, ପ୍ଲେଗ, ଇନ୍‌ଫ୍ଲୁଏଞ୍ଜା, ମ୍ୟାଲେରିଆ, ବାତଜ୍ୱର, ଧନୁଷ୍ଟଙ୍କାର, ଆମାଶୟ, ଆନ୍ତ୍ରିକ ଜ୍ୱର, ଯକ୍ଷ୍ମା, ନିଉମୋନିଆ, ଟାଇଫଏଡ଼ ପ୍ରଭୃତି ବହୁବିଧ ରୋଗ ଏହି ସବୁ ଜୀବାଣୁମାନଙ୍କ ଯୋଗୁଁ ସୁସ୍ଥ ଦେହରେ ଦେଖା ଦେଇଥାଏ । ୧୯୧୮ ଖ୍ରୀଷ୍ଟାବ୍ଦରେ ପ୍ରଥମ ମହାସମର ପରେ ଯେଉଁ ଇନ୍‌ଫ୍ଲୁଏଞ୍ଜା ରୋଗ ପ୍ରବଳ ମହାମାରୀ ରୂପେ ଦେଖାଦେଇ-ଥିଲା ସେଥିରେ ପୃଥିବୀରେ ସର୍ବମୋଟ ଲକ୍ଷ ଲକ୍ଷ ଲୋକ ମୃତ୍ୟୁମୁଖରେ ପତିତ ହୋଇଥିଲେ । ପ୍ରଥମ ମହାଯୁଦ୍ଧରେ ପୃଥିବୀର ସକଳ ଯୁଦ୍ଧ-କ୍ଷେତ୍ରରେ ସର୍ବ ସମେତ ଯେତେ ଲୋକ ନିହତ ହୋଇଥିଲେ, ତାହାର ତିନିଗୁଣ ଲୋକ ତିନି ଚାରିବର୍ଷ ମଧ୍ୟରେ ଉକ୍ତ ରୋଗରେ ପୀଡ଼ିତ ହୋଇ ପୃଥିବୀରୁ ନିଶ୍ଚିହ୍ନ ହୋଇ ଯାଇଥିଲେ । ଆମର ଭାରତବର୍ଷରୁ ମଧ୍ୟ ପ୍ରାୟ ପାଞ୍ଚଲକ୍ଷରୁ ଅଧିକ ଲୋକ ଏହି ଇନ୍‌ଫ୍ଲୁଏଞ୍ଜା ରୋଗ ଯୋଗୁଁ ମୃତ୍ୟୁମୁଖରେ ପଡ଼ିଥିଲେ ।

ଆଟଲାଣ୍ଟିକ ଓ ପ୍ରଶାନ୍ତ ମହାସାଗର ମଧ୍ୟବର୍ତ୍ତୀ ପାନାମା କେନାଲ ଖନନ ସମୟରେ ମଧ୍ୟ ୨୦ ହଜାର ଲୋକ ମ୍ୟାଲେରିଆ ଓ ପୀତ ଜ୍ୱରରେ ସାମାନ୍ୟ କେତେମାସ ମଧ୍ୟରେ ପ୍ରାଣତ୍ୟାଗ କରିଥିଲେ ଏବଂ ସହସ୍ର ସହସ୍ର ବ୍ୟକ୍ତି ଅକର୍ମଣ୍ୟ ହେବାରୁ କର୍ମତ୍ୟାଗ ପୂର୍ବକ ସ୍ୱଗୃହକୁ ପ୍ରତ୍ୟାଗମନ କରିଥିଲେ । ଯେଉଁ ଫରାସୀ ସଂଗଠକ ଦ୍ୟଲେସପ୍‌ସ ( De-lessps ) ଙ୍କ ଅଧିନାୟକତ୍ୱରେ ଏହି କାର୍ଯ୍ୟର ଦାୟିତ୍ୱ ଗ୍ରହଣ କରିଥିଲେ ତାହା ସର୍ବସ୍ୱାନ୍ତ ଓ ଅକୃତକାର୍ଯ୍ୟ ହୋଇଥିଲା । ସେତେବେଳେ ମ୍ୟାଲେରିଆ ଓ ପୀତଜ୍ୱରର ସଂକ୍ରମଣ ପ୍ରଣାଳୀ ତଥା ଜୀବାଣୁ ତତ୍ତ୍ୱ ଆବିଷ୍କୃତ ହୋଇ ନ ଥିଲା । କିନ୍ତୁ ଏଇ

ଘଣ୍ଟାର ଅବ୍ୟବହିତ ପରେ ମଶକ ଦଂଶନ ଉକ୍ତ ରୋଗର କାରଣ ବୋଲି ନିର୍ଣ୍ଣୀତ ହେବାରୁ ମଶକ-ପ୍ରତିଷେଧକ ପ୍ରଣାଳୀ ସର୍ବାଦୌ ପ୍ରବର୍ତ୍ତିତ ହୋଇ ପାନାମା କେନାଲ ଖନନ ସମ୍ଭବପର ହୋଇ ପାରିଥିଲା । ଶତାବ୍ଦୀ ଶତାବ୍ଦୀ ଧରି ମ୍ୟାଲେରିଆ ଯୋଗୁଁ ଉକ୍ତ ସ୍ଥାନର ଲୋକସଂଖ୍ୟା ଯେପରି ବିଲୁପ୍ତ ପ୍ରାୟ ହେଉଥିଲା, ତାହା ପ୍ରତିରୁଦ୍ଧ ହୋଇ ପାରିଥିଲା । ଗତ ମହାଯୁଦ୍ଧରେ ସେହିପରି ଯେଉଁ ଇଂରାଜ-ବାହିନୀ ତୁରସ୍କର ଟ୍ରାନ୍ସଜର୍ଡାନିୟା ଅଧିକାର କରିଥିଲେ, ସେମାନଙ୍କ ମଧ୍ୟରୁ ଅର୍ଦ୍ଧାଂଶ ବ୍ୟକ୍ତି ମ୍ୟାଲେରିୟାରେ ଆକ୍ରାନ୍ତ ହୋଇ ମୃତ୍ୟୁ ବରଣ କରିଥିଲେ ଏବଂ ଅନ୍ୟୂନ ବିଂଶ ସହସ୍ର ଇଂରାଜସୈନ୍ୟ ଏକମାତ୍ର ପ୍ରବାହିକା ( ଆମାଶୟ ) ରୋଗରେ ମୃତ୍ୟୁ ବରଣ କରିଥିଲେ ।

ବହୁବର୍ଷ ପୂର୍ବେ ଭାରତର ପୁରୀ, ଅଲ୍ଲାହାବାଦ, ବନାରସ ପ୍ରଭୃତି ତୀର୍ଥସ୍ଥାନମାନଙ୍କରେ ସେହିପରି ସମୟ ସମୟରେ ବହୁ ଲୋକଙ୍କର ସମାଗମ ହେତୁ ଅସଂଖ୍ୟ ଲୋକ ସଂକ୍ରାମକ ରୋଗରେ ଆକ୍ରାନ୍ତ ହୋଇ ମୃତ୍ୟୁମୁଖରେ ପଡ଼ୁଥିଲେ । ବହୁ ତୀର୍ଥ ସ୍ଥାନ କାଳକ୍ରମେ ପରିତ୍ୟକ୍ତ ଓ ଜନଶୂନ୍ୟ ହେବାର କାରଣ ଏହିପରି ଜନଧ୍ୱଂସକାରୀ ସଂକ୍ରାମକ ରୋଗ ବୋଲି ଅନେକ ପଣ୍ଡିତ ଅନୁମାନ କରନ୍ତି । ସମ୍ଭବତଃ ସେଥିପାଇଁ ଇଣ୍ଡୋଚିନର ସୁଦୃଶ୍ୟ ଅଙ୍କୋରଭାଟ ( Angokorvat ) ମନ୍ଦିର, ଜାଭାର ବୋରବୋଦୁର, ମିଶରର ପିରାମିଡ଼, ଭାରତର ଅଜନ୍ତା, ଇଲୋରା, କୋଣାର୍କ, ନାଳନ୍ଦା ପ୍ରଭୃତି ଅତୀତର ଜନବହୁଳ ସ୍ଥାନମାନ କ୍ରମେ ଜନଶୂନ୍ୟ ହୋଇ ପଡ଼ିଥିଲା । ଅନେକ ସ୍ଥାନର ଗୌରବ ମାନବର ସ୍ମୃତିପଟରୁ ବିଲୁପ୍ତ ହୋଇ ଯାଇଥିଲା । ଏଥିରୁ ଏହି ଅଦୃଶ୍ୟ ଶତ୍ରୁମାନଙ୍କର ମାରାତ୍ମକତା ସହଜରେ ଅନୁମେୟ !

ଅଧୁନା ଚିକିତ୍ସା-ବିଜ୍ଞାନର ଉନ୍ନତି ହେବା ଯୋଗୁଁ ମୃତ୍ୟୁହାର ବହୁ ପରିମାଣରେ କମି ଯାଇଅଛି । ସୁସଭ୍ୟ ଦେଶ ମାନଙ୍କରେ ଶିକ୍ଷା ବିସ୍ତାର, ପୁଷ୍ଟିକର ଖାଦ୍ୟ, ସ୍ୱାସ୍ଥ୍ୟପ୍ରଦ ଜୀବନ ଯାପନ ପ୍ରଣାଳୀର ପ୍ରବର୍ତ୍ତନ ଯୋଗୁ ସେଠାର ଅଧିବାସୀମାନଙ୍କର ଜୀବନକାଳ ବୃଦ୍ଧି ଲାଭ କରିଅଛି । ଗଣନାରୁ ଦେଖାଯାଇ ଅଛି ଯେ, ଯେଉଁ ଆମେରିକାବାସୀ ପୁରୁଷ ଓ ନାରୀଙ୍କର ପରମାୟୁ ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଯଥାକ୍ରମେ ୪୫ ଓ ୪୭ ବର୍ଷ ଥିଲା, ତାହା ୧୯୩୦ ମସିହା ବେଳକୁ ଯଥାକ୍ରମେ ୫୯ ଓ ୬୨ ବର୍ଷ ହୋଇଥିଲା । ଏହାପରେ ସେ ଦେଶ ଲୋକଙ୍କ ଉଦ୍ୟମ ଫଳରେ ସେମାନଙ୍କର ପରମାୟୁ କ୍ରମଶଃ ବଢ଼ି ଚାଲିଛି । କିନ୍ତୁ ଦୁଃଖର କଥା ଭାରତବର୍ଷରେ ଲୋକମାନଙ୍କର ସାଧାରଣ ଜୀବନକାଳ ମାତ୍ର ୨୭ ବର୍ଷ । ସୁଦୀର୍ଘ କାଳର ପରାଧୀନତା, ଅଭାବ, ଅଶିକ୍ଷା, ପାରିପାର୍ଶ୍ୱିକ ପ୍ରତିକୂଳତା ଯୋଗୁଁ ଭାରତୀୟ ଜନସାଧାରଣଙ୍କର ଜୀବନୀଶକ୍ତି କମି ଯାଇଅଛି ।

ମନୁଷ୍ୟ ଦୀର୍ଘାୟୁ ହେବାଲାଗି ପ୍ରଧାନତଃ ଗୁରି ଗୋଟି ବିଷୟର ପ୍ରୟୋଜନ । ସୁସ୍ଥ ଏବଂ ଦୀର୍ଘାୟୁ ପିତାମାତା, ଉପଯୁକ୍ତ ଖାଦ୍ୟପେୟ, ସ୍ୱାସ୍ଥ୍ୟକର ଓ ଅନୁକୂଳ ପରିବେଶ, ସଂକ୍ରାମକ ରୋଗ ଏବଂ ଦୁର୍ଘଟଣାରୁ ଆତ୍ମରକ୍ଷା କରିବାର ସୁବ୍ୟବସ୍ଥା ଇତ୍ୟାଦି ଥିଲେ ମନୁଷ୍ୟ ଅନାୟାସରେ ଦୀର୍ଘଜୀବୀ ହୋଇପାରେ । କିନ୍ତୁ ହିସାବରୁ ଜଣାଯାଇଛି, ପୃଥିବୀର ଜନସଂଖ୍ୟାର ଶତକଡ଼ା ୩୦ ଲୋକ ଏହି ଅଦୃଶ୍ୟ ଶତ୍ରୁ କବଳରେ ହୋଇଜୀବନ ଲୀଳା ସାଙ୍ଗ କରିଥାନ୍ତି ।

ସଂକ୍ରାମକ ରୋଗର ତଥା ଏହି ଅଦୃଶ୍ୟ ଶତ୍ରୁର ଆକ୍ରମଣରୁ ନିଜକୁ ସୁରକ୍ଷିତ କରିବାକୁ ହେଲେ ପ୍ରଥମେ ସେମାନଙ୍କୁ ଶରୀର ମଧ୍ୟକୁ ପ୍ରବେଶ କରିବାକୁ ନଦେବା ଉଚିତ । ଚର୍ମ, ଅନ୍ନନାଳୀ,

ଶ୍ୱାସନଳୀ, ରକ୍ତସ୍ରୋତ, ମୂତ୍ରନାଳୀ ପ୍ରଭୃତି ଏହି ପଞ୍ଚବିଧ ପଥରେ ସେମାନେ ଶରୀରମଧ୍ୟକୁ ପ୍ରବେଶ କରନ୍ତି । ସାଧାରଣତଃ ମ୍ୟାଲେରିଆ, ବାତଜ୍ୱର-ଜୀବାଣୁବାହୀ ମଶକସକଳ, ପ୍ରଥମେ ଚର୍ମକୁ ଦଂଶନ କରି ମନୁଷ୍ୟ ଶରୀରରେ ଉକ୍ତ ରୋଗମାନଙ୍କର ଜୀବାଣୁ ଛାଡ଼ି ଦିଅନ୍ତି । ଚର୍ମରୋଗମାନଙ୍କର ଜୀବାଣୁସକଳ ମଧ୍ୟ ଏହି ଚର୍ମ ମଧ୍ୟଦେଇ ଶରୀର ଅଭ୍ୟନ୍ତରକୁ ପ୍ରବେଶ କରିଥାନ୍ତି । ନିମୋନିଆ ଓ ଯକ୍ଷ୍ମାର ଜୀବାଣୁ ଶ୍ୱାସନଳୀ ପଥରେ ଶରୀରରେ ପ୍ରବେଶ କରି ଫୁସଫୁସ୍‌କୁ ଆକ୍ରମଣ କରନ୍ତି । ଅନ୍ନନାଳୀ ପଥରେ ହଇଜା ଓ ପ୍ରବାହିକା ସୃଷ୍ଟିକାରୀ ଜୀବାଣୁ ଶରୀରରେ ପ୍ରବେଶ କରନ୍ତି । ମୂତ୍ରନାଳୀ ପଥରେ ମଧ୍ୟ କେତେକ ଜୀବାଣୁ ଶରୀରରେ ପ୍ରବେଶ କରନ୍ତି ।

ଶରୀର ସବଳ ଓ ରୋଗ ପ୍ରତିରୋଧକ୍ଷମ ଥିଲେ, ଜୀବାଣୁ ଗୁଡ଼ିକ ଶକ୍ତିହୀନ ହୋଇ ସଙ୍ଗେ ସଙ୍ଗେ ଦେହର କ୍ଷତି ସାଧନ କରିବାକୁ ଅକ୍ଷମ ହୋଇ ପାରନ୍ତି; ମାତ୍ର ଜୀବାଣୁର ବହୁ, ତୀବ୍ର ଶକ୍ତିସଂପନ୍ନ ହୋଇଥିଲେ ଶରୀରର ଆଶୁ କ୍ଷତି ଅବଶ୍ୟମ୍ଭାବୀ । ପରିଣାମରେ ଶରୀର ଏହି ଶତ୍ରୁମାନଙ୍କ ବଶରେ ଜର୍ଜରିତ ହୋଇ ଅସଂଖ୍ୟ ରୋଗର ଆଧାର ହୁଏ । ଜଳ, ଖାଦ୍ୟ, ବାୟୁ ମାଧ୍ୟମରେ ଏମାନେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଏବଂ ଜଣକର ଦେହରୁ ଅନ୍ୟ ଜଣକ ଦେହକୁ ସଂକ୍ରମିତ ହୋଇଥାନ୍ତି । ସୁଯୋଗ ପାଇଲେ ଯୁକ୍ତିକର ପ୍ରାଣୀର କ୍ଷତିସାଧନ କରିବାରେ ଏମାନେ ସୁନିପୁଣ ।

ସେଥିପାଇଁ ଆଜି ଜୀବାଣୁ ସଂକ୍ରମଣ ପ୍ରତିରୋଧ ଲାଗି ବହୁ ବ୍ୟବସ୍ଥା ଗ୍ରହଣ କରାଯାଉଅଛି । ତଥାପି ଆଧୁନିକ ଯୁଗର ଅପ୍ରାକୃତିକ ଅସ୍ୱାସ୍ଥ୍ୟକର ଜୀବନଯାତ୍ରା, ଏହି ଅଦୃଶ୍ୟ ଶତ୍ରୁମାନଙ୍କର ଦ୍ରୁତ ଅଭିବୃଦ୍ଧିର ଅନୁକୂଳ ହୋଇଥିବାରୁ ଏହି ସମସ୍ତ ବ୍ୟବସ୍ଥା ସତ୍ତ୍ୱେ

ଅଶାନୁରୂପ ସୁଫଳ ମିଳୁନାହିଁ । ନାଗରିକ ଜୀବନର ବହୁ ତ୍ରୁଟିପୂର୍ଣ୍ଣ ଅସ୍ୱାସ୍ଥ୍ୟକର ପରିବେଶ ଏଥିପାଇଁ ମୁଖ୍ୟତଃ ଦାୟୀ । ସହର ଏବଂ ନଗର ଆଜି ସମସ୍ତଙ୍କୁ ଗ୍ରାମର ମୁକ୍ତ ପରିବେଶରୁ ବିଚ୍ଛିନ୍ନ କରି ଦେଉ-ଅଛି ଏବଂ ନାନା କାରଣରୁ ଆଜି ସମସ୍ତେ ସହର ଆଡ଼କୁ ଆକୃଷ୍ଟ ହେଉ ଅଛନ୍ତି । ସହରରେ ସ୍ଥାନାଭାବ ଯୋଗୁଁ ଏକ ସ୍ଥାନରେ ଏବଂ ଏକ ଗୃହରେ ବହୁ ଲୋକଙ୍କର ବସବାସ, ପ୍ରତ୍ୟହ ଚିତ୍ର-ଗୃହରେ ବହୁ ଜନସମାଗମ ଯୋଗୁଁ ଜଣେ ବ୍ୟକ୍ତିଦେହର ଜୀବାଣୁ ଅପର ବ୍ୟକ୍ତିଦେହରେ ପ୍ରବେଶ କରିବା ଅତି ସୁବିଧାଜନକ ହୋଇ ପଡ଼ୁଛି । ଏତଦ୍ ବ୍ୟତୀତ ଅତୀତରେ ମନୁଷ୍ୟ ଯେପରି ପ୍ରଚୁର ଶାରୀରିକ ପରିଶ୍ରମ କରୁଥିଲା, ସେହିପରି ପ୍ରଚୁର ବିଶ୍ରାମ ନେଉଥିଲା । କିନ୍ତୁ ବର୍ତ୍ତମାନ ଜୀବନ ଧାରଣ ଅପେକ୍ଷା ବିଳାସ ମନୁଷ୍ୟ ପକ୍ଷେ ପରମ କାମ୍ୟବସ୍ତୁ ହୋଇ ପଡ଼ୁଛି । ସ୍ୱାସ୍ଥ୍ୟ ଅପେକ୍ଷା ସଂପଦକୁ ଆମେ ଅଧିକ କାମନା କରୁଛୁ ଏବଂ ସ୍ୱାଭାବିକତା ପରିବର୍ତ୍ତେ କୃତ୍ରିମତାକୁ ବେଶୀ ପ୍ରାଧାନ୍ୟ ଦେଉଛୁ । ଏଣୁ ଆମେ ବେଶୀ ରୁଗ୍ଣ ହେବୁ ନାହିଁତ ଆଉ କିଏ ହେବ ? ନାଗରିକ ଜୀବନର ଅତିରିକ୍ତ ଯନ୍ତ୍ର-ନିର୍ଭରଶୀଳତା ଯୋଗୁଁ ଶ୍ରମବିମୁଖତା, ଅହରହ ବ୍ୟସ୍ତତା ଏବଂ ଆନୁସଙ୍ଗିକ ମାନସିକ ଦୁଃଖ କଷ୍ଟ ଓ ବ୍ୟର୍ଥତାବୋଧ ମାନବର ପ୍ରତିରୋଧର ଶକ୍ତିକୁ କ୍ଷୀଣ କରି ଦେଉଅଛି । ତେଣୁ ଅଦୃଶ୍ୟ ଶତ୍ରୁମାନଙ୍କ ଯୋଗୁଁ ରୋଗାକ୍ରାନ୍ତ ହେବା ମଧ୍ୟ ଆଜି ଅତି ସ୍ୱାଭାବିକ ହୋଇ ପଡ଼ୁଛି । ସେଥିପାଇଁ ଆଜି ପୁଣି ନଗର ଛାଡ଼ି ପ୍ରକୃତିକୋଳକୁ ଫେରିଯିବା ବାଞ୍ଛନୀୟ ବୋଲି ଅନେକ ପଣ୍ଡିତ ମତବ୍ୟକ୍ତ କରୁଛନ୍ତି ।

ଯାହା ହେଉ, ପୃଥିବୀରେ ଜୀବାଣୁ ଅଛନ୍ତି ବୋଲି ଆମେ ସର୍ବଦା ଆତଙ୍କିତ ହେବାର କୌଣସି କାରଣ ନାହିଁ । ସେହିପରି, ରୋଗ ପ୍ରତିରୋଧ ଲାଗି ଜୀବାଣୁ ସଂକ୍ରମଣର ପ୍ରତିରୋଧ କରିବା ମଧ୍ୟ

ଆମର ଏକମାତ୍ର ଲକ୍ଷ୍ୟ ହେବା ଉଚିତ ନୁହେଁ । ତଥାପି ଜୀବାଣୁ ପ୍ରତିରୋଧ କରିବା ସଙ୍ଗେ ସଙ୍ଗେ କେତେକ ସ୍ୱାସ୍ଥ୍ୟବିଧି ପ୍ରତିପାଳନ କରିବା ଆମର ଏକାନ୍ତ ବାଞ୍ଛନୀୟ । ଏହାଦ୍ୱାରା ଶରୀର ଶକ୍ତିଶାଳୀ, ଦୃଢ଼ ଓ ଜୀବାଣୁ-ପ୍ରତିରୋଧକ୍ଷମ ହୁଏ । ବାଲ୍ୟ ଓ କୈଶୋର ଅବସ୍ଥାରୁ ଏହି ବିଧିବ୍ୟବସ୍ଥା ଗୁଡ଼ିକୁ ଅଭ୍ୟାସ ଗତ କରିବା ଉଚିତ । ପ୍ରତ୍ୟହ ନିୟମିତ ଭାବେ ସ୍ୱୀୟ ଶରୀର ଉପଯୋଗୀ ସୁଖାଦ୍ୟ ଖାଇବା ଓ ଯଥେଷ୍ଟ ଜଳପାନ କରିବା, ସ୍ୱାସ୍ଥ୍ୟକର ସ୍ଥାନରେ ରହିବା, ଯଥେଷ୍ଟ ଆଲୋକ ଓ ନିର୍ମଳବାୟୁ ସେବନ କରିବା, ଶରୀରର ଆବର୍ଜନାଗୁଡ଼ିକୁ ପ୍ରତ୍ୟହ ନିଷ୍କାସିତ କରିବା, ଯଥେଷ୍ଟ ଶାରୀରିକ ବ୍ୟାୟାମ କରିବା ଓ ଯଥେଷ୍ଟ ବିଶ୍ରାମ ନେବା, ଶୈତ୍ୟ, ଉତ୍ତାପ ଓ ବୃଷ୍ଟିପାତ ଆଦି ଦୁର୍ଯୋଗରୁ ଶରୀରକୁ ଯଥାସମ୍ଭବ ରକ୍ଷା କରିବା ଏବଂ ଜୀବାଣୁ ଓ ରୋଗଆକ୍ରମଣରୁ ନିଜକୁ ମୁକ୍ତ ରଖିବାକୁ ଯଥାସାଧ୍ୟ ଉଦ୍ୟମ କରିବା ଏବଂ ସବୁ ଅବସ୍ଥାରେ ଶାନ୍ତ ଓ ସଂଯତମନା ହେବାକୁ ଅଭ୍ୟାସ କରିବା—ଇତ୍ୟାଦି ବିଷୟରେ ପ୍ରତ୍ୟେକ ବ୍ୟକ୍ତି ଯତ୍ନଶୀଳ ହେବା ଉଚିତ ।

ପ୍ରଶ୍ନ—୧ । କେଉଁମାନେ ଆମର ଅଦୃଶ୍ୟ ଶତ୍ରୁ ? ସେମାନଙ୍କ ଠାରୁ ରକ୍ଷା ପାଇବାକୁ ହେଲେ କି ବ୍ୟବସ୍ଥା ଗ୍ରହଣ କରିବାକୁ ପଡ଼ିବ ?

୨ । ଜୀବନକାଳ ମଧ୍ୟରେ ମନୁଷ୍ୟର କାମନା କଅଣ ? ଏହି କାମନା ପୂରଣ ହେବା ପଥରେ କି ପ୍ରତିବନ୍ଧକ ବିଦ୍ୟମାନ ?

୩ । ମନୁଷ୍ୟ ଦୀର୍ଘାୟୁ ହେବା ନିମନ୍ତେ କି କି ଉପାଦାନ ଆବଶ୍ୟକ ?

୪ । ଶେଷାର୍ଥ ନିରୂପଣ କର ।

ଅପ୍ରତିହତ, ପରିବ୍ୟାପ୍ତ, କ୍ରୂର, କବଳିତ, ସାଙ୍ଗ, •ଅହରହ, ଆନୁସଙ୍ଗିକ ଓ ଅବଶ୍ୟମ୍ଭାବୀ ।

———

## ପିରାମିଡ଼

ମିଶର ଦିନେ ଜ୍ଞାନ ବିଜ୍ଞାନରେ ବିଭିନ୍ନ ଦେଶ ମଧ୍ୟରେ ଅଗ୍ରଗଣ୍ୟ, ସମୃଦ୍ଧ ଓ ସମୁନ୍ନତ ଦେଶ ଥିଲା । ଏହି ମିଶରକୁ 'ପିରାମିଡ଼ର ଦେଶ' କୁହାଯାଏ । ହଜାର ହଜାର ବର୍ଷ ପୂର୍ବେ ଏ ଦେଶବାସୀ ପ୍ରସ୍ତରନିର୍ମିତ ତ୍ରିଭୁଜାକାର ଯେଉଁସବୁ ଅତିକାୟ କୀର୍ତ୍ତି ଗଢ଼ିଯାଇଛନ୍ତି ସେଗୁଡ଼ିକୁ ପିରାମିଡ଼ କହନ୍ତି । ମନୁଷ୍ୟର କାଳଜୟୀ କୀର୍ତ୍ତିମାନଙ୍କ ମଧ୍ୟରେ ପିରାମିଡ଼ ସର୍ବଶ୍ରେଷ୍ଠ ଆସନ ଲାଭ କରିଅଛି ।

ସେ କାଳରେ ମିଶର ଦେଶବାସୀ ବିଶ୍ୱାସ କରୁଥିଲେ ଯେ ମନୁଷ୍ୟର ଦୁଇଟି ଆତ୍ମା ଅଛି । ଗୋଟିକର ନାମ 'କା' ଏବଂ ଅନ୍ୟଟିର ନାମ 'ବାଇ' । ମୃତ୍ୟୁପରେ 'ବାଇ-ଆତ୍ମା' ଆକାଶ ଆରପାଖେ ଥିବା ସ୍ୱର୍ଗକୁ ଚାଲିଯାଏ ଏବଂ 'କା-ଆତ୍ମା' ମୃତ ଦେହ ସହିତ ରହିଯାଏ । ଯେତେଦିନଯାଏ "କା-ଆତ୍ମା" ସେହି ଦେହରେ ତୃପ୍ତ ହୋଇଥାଏ, ସେତେଦିନ 'ବାଇ-ଆତ୍ମା' ମଧ୍ୟ ସ୍ୱର୍ଗରେ ସୁଖରେ ରହିଥାଏ । ଜୀବିତ ଦେହରେ ରହି କା-ଆତ୍ମା ଯେଉଁ ସବୁ ଜିନିଷ ବ୍ୟବହାର କରୁଥିଲା, ସେଗୁଡ଼ିକ ମୃତ୍ୟୁପରେ ତାକୁ ବ୍ୟବହାର କରିବାକୁ ଦେଲେ କା-ଆତ୍ମା ତୃପ୍ତ ହୁଏ । ସେଥିପାଇଁ ମିଶରୀୟମାନେ ମୃତ ଦେହକୁ ଦାହ ନକରି, ତାହାର ଜୀବିତାବସ୍ଥାର ବ୍ୟବହୃତ ଦ୍ରବ୍ୟାଦିସହ ମୃତଦେହକୁ ଶବାଧାରରେ

ରଖି କବର ଦେଉଥିଲେ । ଶବାଧାର ମଧ୍ୟରେ ମୃତଦେହଟି ଯେପରି ପଚି ନ ଯାଏ, ସେଥିପାଇଁ ମୃତଦେହଙ୍କୁ ପଚନଶୀଳ ଅନ୍ତ୍ରମାନଙ୍କ ନିଷ୍କାସନ କରି ମୃତଦେହରେ ବହୁ ଅନୁଲେପନ ପ୍ରୟୋଗ କରୁଥିଲେ । ତତ୍‌ପରେ ମୃତଦେହକୁ ବସ୍ତ୍ରାବୃତକରି ଚର୍ଚ୍ଚିତ କାଷ୍ଠ ନିର୍ମିତ ଶବାଧାରରେ ରଖି ତାହାକୁ ଉତ୍ତମରୂପେ ବନ୍ଦ କରିଦେଉଥିଲେ । ଉକ୍ତ ଶବାଧାରଟିକୁ ପୁନଶ୍ଚ ଏକ ପ୍ରସ୍ତର ନିର୍ମିତ ଶବାଧାରରେ ରଖୁଥିଲେ । ଏହି ମୃତଦେହକୁ 'ମମି' କୁହାଯାଏ ।

ମିଶର ଦେଶର ରାଜା ବା ଶାସକଙ୍କୁ 'ଫାରାଓ' କୁହନ୍ତି । ସେମାନେ ଏକଦା ଖୁବ୍ ପ୍ରତିପତ୍ତିଶାଳୀ ଥିଲେ ଏବଂ ନିଜର ପ୍ରସ୍ତର-ନିର୍ମିତ ଶବାଧାରଟିକୁ ନିରାପଦ ଓ ସୁରକ୍ଷିତ କରିବା ନିମିତ୍ତ ନିଜର ଜୀବଦ୍ଦଶାରେ ଅତ୍ୟନ୍ତ ଯତ୍ନଶୀଳ ଥିଲେ । ସେଥିପାଇଁ ସେମାନେ ଗୋଟିଏ ଗୋଟିଏ ପିରାମିଡ଼ ଗଢ଼ି ଯାଉଥିଲେ । ଏଇ ପିରାମିଡ଼ଗୁଡିକ ସେଇ ପ୍ରାଚୀନ ରାଜାମାନଙ୍କ କବର ବା ରାଜକୀୟ ସ୍ମୃତି-ପ୍ରାସାଦ । ଏହା ଭିତରେ ମାଟିତଳେ ବଡ଼ ବଡ଼ ଘର ତିଆରି ହୋଇଥାଏ ଏବଂ ସେଇ ଘରେ ରାଜାଙ୍କର ବ୍ୟବହୃତ ଅବଶ୍ୟକ ଜିନିଷପତ୍ର ଥାକ ଥାକ ହୋଇ ସଜାହୋଇ ରହିଥାଏ । ରାଜା ଦେହତ୍ୟାଗ କଲେ, ତାଙ୍କର ଶବାଧାରଟିକୁ ପିରାମିଡ଼ମଧ୍ୟସ୍ଥ ଗୋପନ କକ୍ଷର ପ୍ରସ୍ତର-ଶବାଧାର ମଧ୍ୟରେ ସଯତ୍ନରେ ରଖାହୁଏ । ଜୀବିତ କାଳରେ ରାଜା-ଙ୍କର ବ୍ୟବହୃତ ସିଂହାସନ, ପରିଧେୟ, ଅଳଂକାର, ଅସ୍ତ୍ର ଶସ୍ତ୍ରସବୁ ପୂର୍ବରୁ ସେହି ନିଭୃତ କକ୍ଷରେ ସଜ୍ଜିତ ହୋଇ ଉକ୍ତ କକ୍ଷରେ ପ୍ରବେଶ କରିବାର ଗୋପନ ପଥଟି ବନ୍ଦକରି ଦିଆ ଯାଇଥାଏ । ପିରାମିଡ଼-ମଧ୍ୟସ୍ଥ ଗୋପନ କକ୍ଷ ଓ ଗୋପନ ପଥଟିର ସନ୍ଧାନ ମୃତ ରାଜାଙ୍କର ଦୁଇ ପାଞ୍ଚଜଣ ଅନ୍ତରଙ୍ଗଙ୍କ ବ୍ୟତୀତ ଆଉ କେହି ଜାଣୁନଥିଲେ । କାରଣ, ଆଉ କେହି ଜାଣିଲେ, କକ୍ଷ ମଧ୍ୟସ୍ଥ ମହାର୍ଘ ବସ୍ତୁସକଳ

ଲୁଣ୍ଠିତ ହେବାର ଆଶଙ୍କା ଥିଲା । ସେଥିପାଇଁ ଏପରି ସତର୍କ ବ୍ୟବସ୍ଥା ଗ୍ରହଣ କରାହେଉଥିଲା ।

ଭାରତବାସୀଙ୍କ ପରି ମିଶରବାସୀମାନେ ସେମାନଙ୍କ ରାଜାଙ୍କୁ ଈଶ୍ୱରଙ୍କ ଭଳି ଭକ୍ତି କରୁଥିଲେ । ସେଥିପାଇଁ ପ୍ରତ୍ୟେକ ଶ୍ରେଷ୍ଠ ରାଜାଙ୍କ ପିରାମିଡ଼ର ପୂର୍ବଦିଗରେ ଏକ ମନ୍ଦିର ନିର୍ମାଣ କରି ସେଥିରେ ଉକ୍ତ ମୃତରାଜାଙ୍କ ମୂର୍ତ୍ତି ସ୍ଥାପନପୂର୍ବକ ପୂଜାର ବ୍ୟବସ୍ଥା କରୁଥିଲେ ।

ବର୍ତ୍ତମାନ ମିଶରର କାଏରୋଠାରୁ ଦଶ ମାଇଲ ଦୂରରେ ନୀଳନଦୀ ତୀରରେ ଗିଜେ ( Gizeh) ନାମରେ ଗୋଟିଏ ଗ୍ରାମ ଅଛି । ଏହି ଗ୍ରାମ ନିକଟରେ ଏକ ମାଇଲ ପ୍ରସ୍ଥବିଶିଷ୍ଟ ଏକ କ୍ଷୁଦ୍ର ମରୁଭୂମି ଅବସ୍ଥିତ । ଏହି କ୍ଷୁଦ୍ର ମରୁଭୂମିଟିରେ ପ୍ରାଚୀନ ମିଶରର ଗୌରବ-ସୂଚକ ପିରାମିଡ଼ଗୁଡ଼ିକ ବିଦ୍ୟମାନ । ଏହିପରି ଏକ କ୍ଷୁଦ୍ର ସ୍ଥାନରେ ଯେତେ ଗୁଡ଼ିଏ ଅବିନଶ୍ୱର କୀର୍ତ୍ତିର ସମାବେଶ ଘଟିଛି ତାହାର ନିଦର୍ଶନ ପୃଥିବୀରେ ବିରଳ ।

ଆମ ଦେଶର ଲୋକେ ମୃତ ବ୍ୟକ୍ତିଙ୍କୁ ଅଳଂକାର ପ୍ରଭୃତିରେ ସଜ୍ଜିତ କରନ୍ତି ନାହିଁ । ତେଣୁ ଆମ ଦେଶର ଶ୍ମଶାନ ଖୋଦନ କଲେ ଆମେ କେବଳ ଭସ୍ମାବଶେଷ ବ୍ୟତୀତ ଆଉ କିଛି ପାଇବା ଅସମ୍ଭବ । କିନ୍ତୁ ସେମାନଙ୍କ ଶ୍ମଶାନ ଅର୍ଥାତ୍ ଏହି କବରଭୂମି ପିରାମିଡ଼ଅଭ୍ୟ-ନ୍ତରର ଗୋପନକକ୍ଷ ଖୋଦନ କଲେ ସେ ଯୁଗର ବହୁ ଜ୍ଞାତବ୍ୟ ବିଷୟ ଆମେ ପାଇପାରୁ । ଆଜି କାଲିକାର ଐତିହାସିକମାନେ ମାଟି ଖୋଳି ସେହି ସବୁ କବର ଭିତରୁ ଯେଉଁ ବସ୍ତୁସକଳ ଉଦ୍ଧାର କରିଛନ୍ତି, ସେଗୁଡ଼ିକ ସାହାଯ୍ୟରେ ହଜାର ହଜାର ବର୍ଷ ତଳର ପ୍ରାଚୀନ ମିଶର-ସଭ୍ୟତାର ଇତିହାସ ସଂକଳିତ ହୋଇଅଛି । ମନେ-ହୁଏ ଯେପରି ପ୍ରାଚୀନ ମିଶରୀୟମାନେ ପ୍ରାଚୀନ ଯୁଗରେ କିପରି ପୋଷାକ ପରିଧାନ କରୁଥିଲେ, କିପରି ଜୀବନଯାପନ କରୁଥିଲେ,

କ କ ଜିନଷ ତିଆର କର ଜାଣୁଥିଲେ, ସେ ସବୁ ଜଣାଇବାଲାଗି ସମସ୍ତ ବ୍ୟବସ୍ଥା କରି ମୃତ୍ୟୁ ବରଣ କରିଥିଲେ ।

ଏହି ପିରାମିଡ଼ମାନଙ୍କ ମଧ୍ୟରୁ ରାଜା ଖଫୁସଙ୍କର ପିରାମିଡ଼ଟି ବୃହତ୍ତମ । ଏହାର ଚତୁଷ୍କୋଣାକାର ତଳଟିର ପ୍ରତ୍ୟେକ ବାହୁର ଦୈର୍ଘ୍ୟ ୭୬୪ ଫୁଟ୍ । ବର୍ତ୍ତମାନ ଏହାର ଉଚ୍ଚତା ୪୫୦ ଫୁଟ୍ । ଏଥିରେ ୭୦ ମହଣ ଓଜନବିଶିଷ୍ଟ ପ୍ରାୟ ୨୩ ଲକ୍ଷ ଖଣ୍ଡ ପଥର



[ପିରାମିଡ଼୍]

ବ୍ୟବହୃତ ହୋଇଅଛି । ଏଥିରୁ ଏହାର ବିଶାଳତା ସହଜରେ ଅନୁମେୟ । ଏହି ପ୍ରସ୍ତରଟୁକଡ଼ାକୁ ମସଲା ସାହାଯ୍ୟରେ ପରସ୍ପର ସହିତ ଏତେ ସୁନ୍ଦର ଭାବେ ଯୋଡ଼ା ଯାଇଛି ଯେ ପ୍ରସ୍ତରମାନଙ୍କର ସଂଯୋଗରେଖା ନିର୍ଣ୍ଣୟ କରିବା ହଠାତ୍ କଷ୍ଟକର ହୁଏ । ଅଭ୍ୟନ୍ତରସ୍ଥ କକ୍ଷ ଓ ଗୋପନ ପଥଟି ବ୍ୟତୀତ ଏହି ସୁବିଶାଳ ପିରାମିଡ଼ଟି ଆମୂଳଚୂଳ ନିଦା ( Solid ) । ପୂର୍ବେ ଏହି ପିରାମିଡ଼ର ବହିର୍ଭାଗ ମସୃଣ ଥିଲା । ମାତ୍ର କାଳକ୍ରମେ ସ୍ଥାନୀୟ ଲୋକେ ନିଜର ଭୁଲ ପ୍ରୟୋଜନ

ସାଧନ ଲାଗି ପିରାମିଡ଼ରୁ ପ୍ରସ୍ତରଖଣ୍ଡମାନ ଅପସାରଣ କରିବାରୁ ପିରାମିଡ଼ର ପୂର୍ବ ମସୃଣତା ବ୍ୟାହତ ହୋଇଅଛି । ଅଧୁନା ସେହି ଭଗ୍ନସ୍ଥାନମାନଙ୍କ ସାହାଯ୍ୟରେ ପିରାମିଡ଼ର ଶୀର୍ଷ ଦେଶକୁ ଅନାୟାସ ରେ ଆରୋହଣ କରାଯାଇପାରେ ।

ଏଥିରେ ବ୍ୟବହୃତ ପ୍ରସ୍ତରଖଣ୍ଡମାନ ନୀଳନଦୀର ଅପରତୀର-ବର୍ତ୍ତୀ ଖଣି ମାନଙ୍କରୁ ଆନୀତ । ହଜାର ହଜାର ବର୍ଷ ପୂର୍ବେ କିପରି ଯେ ଏସବୁ ସମ୍ଭବ ହୋଇଥିଲା ଭାବିଲେ ଆଶ୍ଚର୍ଯ୍ୟ ବୋଧ ହୁଏ । ପିରାମିଡ଼-ଗୁଡ଼ିକର ନିର୍ମାଣପଦ୍ଧତି ସଂପର୍କରେ କୌଣସି ଲିପିବଦ୍ଧ ବିବରଣୀ ସେଇ ପ୍ରାଚୀନ ମିଶରୀୟମାନେ ରଖି ଯାଇନାହାନ୍ତି । ବହୁ ଶତାବ୍ଦୀ ପରେ ଗ୍ରୀକ୍ ଐତିହାସିକ ହେରୋଡୋଟାସଙ୍କ ସଂଗୃହୀତ ବିବରଣୀରୁ ପିରାମିଡର ନିର୍ମାଣପଦ୍ଧତି ସଂପର୍କରେ ଯାହା କିଛି ଜଣାଯାଇଅଛି । ସେଥିରୁ ଜଣାଯାଏ ଯେ ପିରାମିଡ଼ରେ ବ୍ୟବହୃତ ୭° ମହଣର ପଥର-ଖଣ୍ଡମାନ ନୀଳନଦୀ ବକ୍ଷରେ ବଡ଼ ବଡ଼ ଭେଳା ସାହାଯ୍ୟରେ ଆସୁଥିଲା । ବନ୍ୟା ସମୟରେ ସାଧାରଣତଃ ଏହି ପଥରମାନ ବୁହା ହେଉଥିଲା । ନଦୀକୂଳରୁ ପିରାମିଡର ପାଦଦେଶ ପର୍ଯ୍ୟନ୍ତ ଗୋଟିଏ କ୍ରମଶଃ-ଉଚ୍ଚ ଢାଲୁ ପଥ ନିର୍ମିତ ହେଉଥିଲା । ସେହି ଢାଲୁ ପଥଟି ପିରାମିଡକୁ ବେଷ୍ଟନକରି କ୍ରମଶଃ ଉଚ୍ଚ ଭାବେ ନିର୍ମିତ ହେଉଥିଲା । ଏଇ ପଥରଗୁଡ଼ିକୁ ନଦୀକୂଳରୁ ପିରାମିଡ଼ର ପାଦଦେଶ ପର୍ଯ୍ୟନ୍ତ ଗଡ଼ାଇ ନିଆହେଉଥିଲା । ତେଣୁ ସର୍ବପ୍ରଥମେ ଏଇପଥଟି ନିର୍ମିତ ହେଉଥିଲା । ବର୍ଷକର ତିନିମାସ, ଅର୍ଥାତ୍ ଯେଉଁ ସମୟରେ ନୀଳନଦୀର ବନ୍ୟା ହୋଇଥାଏ, ସେହି ସମୟରେ ଏଇ ପଥରଗୁଡ଼ିକୁ ଭେଳାରେ ଆଣି ନିରୂପିତ ସ୍ଥାନକୁ ଗଡ଼ାଇ ନିଆହେଉଥିଲା । କିନ୍ତୁ ସମସ୍ତ ବର୍ଷ ବ୍ୟାପି ବହୁ ଶ୍ରମିକ ପିରାମିଡ଼ ନିର୍ମାଣ କାର୍ଯ୍ୟରେ ନିଯୁକ୍ତ ରହୁଥିଲେ ।

ମିଶରରାଜ ଖଫୁସ୍‌ଙ୍କ ଆତ୍ମାର ଅନନ୍ତ ଆବାସଲାଗି ଯେଉଁ ସ୍ମୃତିସୌଧଟି ନିର୍ମିତ ହୋଇଥିଲା, ସେଥିରେ ପ୍ରାୟ ଲକ୍ଷାଧିକ ବ୍ୟକ୍ତି ଦୀର୍ଘ ୨୦ ବର୍ଷ କାଳ ନିଯୁକ୍ତ ରହୁଥିଲେ । ବର୍ଷା ଋତୁରେ ଏକଲକ୍ଷ ଶ୍ରମିକ ପଥରଗୁଡ଼ିକ ଆଣି ନିର୍ଦ୍ଦିଷ୍ଟ ସ୍ଥାନରେ ରଖୁଥିଲେ ଏବଂ ପ୍ରାୟ ସାତ୍ତ୍ୱବର୍ଣ୍ଣ ଗୃହହଜାର ସ୍ଥପତି ଏହି ପ୍ରସ୍ତରମାନଙ୍କ ସାହାଯ୍ୟରେ ପିରାମିଡ଼ ନିର୍ମାଣ କାର୍ଯ୍ୟରେ ନିଯୁକ୍ତ ରହୁଥିଲେ । ଖଫୁସ୍‌ଙ୍କ ଏହି ପିରାମିଡ଼ର ଭୂଗର୍ଭସ୍ଥ ରାଜକକ୍ଷଟି ଅତ୍ୟନ୍ତ ଗୋପନୀୟ ସ୍ଥାନରେ ଅବସ୍ଥିତ ଥିଲା । ଏଠାରେ ପହଞ୍ଚିବାକୁ ହେଲେ ପ୍ରଥମେ ୩୦୦ ଫୁଟ ଦୀର୍ଘ ଏକ ଗୋପନ ପଥରେ ନିମ୍ନାବତରଣ କରିବାକୁ ହୁଏ । ତା’ ପରେ ଗୋଟିଏ କକ୍ଷରେ ଉପସ୍ଥିତ ହୋଇ ସେଠାରୁ ପୁଣି କିଛି ଦୂର ଉଠିଲେ ଏହି ରାଜକକ୍ଷର କ୍ଷୁଦ୍ର ଦ୍ୱାର ସମ୍ମୁଖରେ ପଡ଼େ । ରାଜକକ୍ଷର ଉପରେ ୫ଟି କୋଠରୀ ନିର୍ମିତ । ଏମାନଙ୍କ ମଧ୍ୟରୁ କେଉଁଟି ରାଣୀଙ୍କ ଲାଗି ଓ କେଉଁଟି ତାଙ୍କର ଅପର କେଉଁ ପ୍ରିୟ ବ୍ୟକ୍ତିଙ୍କ ଲାଗି ନିର୍ଦ୍ଦିଷ୍ଟ ଥିଲା । ଏହି ଘର ଗୁଡ଼ିକର ଚଟାଣ, ଛାତ ଓ ପ୍ରାଚୀର ଯେପରି ନାନା ବର୍ଣ୍ଣର ପ୍ରସ୍ତରନିର୍ମିତ ସେହିପରି ଅପୂର୍ବ କାରୁକାର୍ଯ୍ୟଶୋଭିତ ।

ଭାରତର ମୋଗଲ ସମ୍ରାଟ ସାହାଜାହାନ ପ୍ରିୟତମାପତ୍ନୀ ମମତାଜଙ୍କର ସ୍ମୃତିକୁ ଅବିନଶ୍ୱର କରିବାଲାଗି ୧୭ଶ ଶତାବ୍ଦୀରେ ଯେଉଁ ଅପୂର୍ବ ସ୍ମୃତିମନ୍ଦିର ‘ତାଜ ମହଲ’ ନିର୍ମାଣ କରିଥିଲେ ତାହା ଜଗତରେ ଏକ ପରମ ବିସ୍ମୟ ହୋଇ ରହିଛି । ଏଥିରେ ୫୦ ଲକ୍ଷ ଟଙ୍କା ବ୍ୟୟିତ ହୋଇ ୨୦ ବର୍ଷରେ ସୁସମାପ୍ତ ହୋଇଥିଲା । ସେହିପରି ୧୩ଶ ଶତାବ୍ଦୀରେ ନରସିଂହଦେବଙ୍କ ଆଦେଶରେ ଚନ୍ଦ୍ରଭାଗାର ସାଗରସୈକତରେ ଯେଉଁ ଉତ୍ତୁଙ୍ଗ ସୂର୍ଯ୍ୟମନ୍ଦିର ନିର୍ମିତ ହୋଇଥିଲା, ତାହା ୪୦ କୋଟି ଟଙ୍କା ବ୍ୟୟରେ ୧୬ ବର୍ଷରେ ୧୨ ଶହ ସ୍ଥପତି-ଙ୍କର ଅବିଶ୍ରାନ୍ତ ସାଧନାରେ ସମାପ୍ତ ହୋଇଥିଲା । କୋଣାର୍କମନ୍ଦିର

ଅଜ୍ ଜୀର୍ଣ୍ଣ, ବିକଳାଙ୍ଗ ଓ ଭୂଲୁଣ୍ଠିତ ପ୍ରାୟ । ତାଜମହଲର ମଣି-ମାଣିକ୍ୟର ଦୀପ୍ତି ଅଜ ନଷ୍ଟ ହୋଇଯାଇଛି । କିନ୍ତୁ ଆକାରର ବିଶାଳତା, ପ୍ରାଚୀନତା, ଶିଳ୍ପନୈପୁଣ୍ୟ ଓ କାରିଗରୀକୌଶଳ ଦୃଷ୍ଟିରୁ ଏହି ସବୁ ପିରାମିଡର ସ୍ଥାନ ପୃଥିବୀରେ ଅଦ୍ୱିତୀୟ । ଏହି ପିରାମିଡ଼ ଗୁଡ଼ିକ ପ୍ରାୟ ୭ ହଜାର ବର୍ଷ ତଳେ ନିର୍ମିତ ହୋଇଥିଲି ବୋଲି ଅନୁମିତ ହୁଏ । କିନ୍ତୁ ସହସ୍ର ସହସ୍ର ବର୍ଷଧରି କାଳର ଧ୍ୱଂସକାରୀ ଶକ୍ତି ବିରୁଦ୍ଧରେ ଉନ୍ନତ ମସ୍ତକରେ ଦଣ୍ଡାୟମାନ ହୋଇ ଏ ଗୁଡ଼ିକ ମନୁଷ୍ୟ ନିର୍ମିତ କୀର୍ତ୍ତିର ଗୌରବ ଘୋଷଣା କରୁଅଛି ।

ପ୍ରଶ୍ନ—୧ । ପିରାମିଡ଼ ସମ୍ବନ୍ଧରେ ତୁମର ଧାରଣା ସରଳ ଭାବରେ ବ୍ୟକ୍ତ କର ।

୨ । 'ଆକାରର ବିଶାଳତା, ପ୍ରାଚୀନତା, ଶିଳ୍ପନୈପୁଣ୍ୟ ଓ କାରିଗରୀକୌଶଳ ଦୃଷ୍ଟିରୁ ପିରାମିଡ଼ର ସ୍ଥାନ ପୃଥିବୀରେ ଅଦ୍ୱିତୀୟ ।' ଏହି ଉକ୍ତିର ସାର୍ଥକତା ପ୍ରତିପାଦନ କର ।

୩ । ଭାରତରେ ପିରାମିଡ଼ ସଦୃଶ ଅପୂର୍ବ କୀର୍ତ୍ତି ଅଛି କି ?

୪ । ଶବାଧାର, ରାଜକୀୟ, ପ୍ରାସାଦ, ମହାର୍ଘ, ଅବିନଶ୍ୱର, ସଙ୍କଳିତ, ଅନୁମେୟ, ନୈପୁଣ୍ୟ ଏହି ଶବ୍ଦମାନଙ୍କର ମୌଳିକ ଅର୍ଥ ନିରୂପଣ କର ।

୫ । ପଦ ପରିବର୍ତ୍ତନ କର !
ବ୍ୟବହୃତ, ଗୋପନ, ଅବସ୍ଥିତ, ଉଦ୍ଧାର, ଖୋଦନ, ନିରୂପିତ ଓ ସଂଯୋଗ ।

---

# ଆମ ଆଦିବାସୀଙ୍କର ସଂସ୍କାର

—୧—

ଆଜି ଉତ୍କଳର ବିସ୍ତୃତ ବନାଞ୍ଚଳମାନଙ୍କରେ ଯେଉଁ ସାନ୍ତାଳ, ହୋ, କୋହ୍ଲ, କନ୍ଧ, ଗେଣ୍ଡ୍, ମୁଣ୍ଡା, ସଉରା, କୋୟା ପ୍ରଭୃତି ଜାତିର ମନୁଷ୍ୟ ବାସ କରୁଛନ୍ତି, ସେହି ମାନେହିଁ ଏ ଦେଶ ମାଟିର ପ୍ରଥମ ସନ୍ତାନ। ଭାରତକୁ ଦ୍ରାବିଡ଼ ଏବଂ ଆର୍ଯ୍ୟମାନେ ଆସିବାର ବହୁପୂର୍ବରୁ ଏ ଦେଶ ଏହି ଆଦିମ ଅଧିବାସୀଙ୍କର ଜନ୍ମଭୂମି ଓ କ୍ରୀଡ଼ାସ୍ଥଳୀ ଥିଲା। ଉତ୍କଳ ଖଣ୍ଡରେ ଯେଉଁମାନେ ଆଜି ଆଦିବାସୀ ନାମରେ ଖ୍ୟାତ, ସେମାନେ ଭାରତର ସେହି ଆଦିମ ଅଧିବାସୀଙ୍କର ବଂଶଧର।

ଭାରତୀୟ ଆଦିମମାନଙ୍କର ସଂସ୍କାର ପୃଥିବୀର ଅନ୍ୟାନ୍ୟ ସ୍ଥାନର ଆଦିମମାନଙ୍କ ସଂସ୍କାର ସହିତ ପ୍ରାୟ ସମାନ ଥିଲା। କାରଣ ବିବର୍ତ୍ତନ ଗତିରେ ପ୍ରାୟ ଏକ ସମୟରେ ପୃଥିବୀର ବିଭିନ୍ନ ସ୍ଥାନରେ ଆଦିମ ଜାତିର ସୃଷ୍ଟି ହୋଇଛି ଏବଂ ଏକ ପ୍ରାକୃତିକ ନିୟମାବଳୀତଳେ ସମସ୍ତ ସ୍ଥାନର ଆଦିମମାନଙ୍କୁ ନିଜର ଜୀବନ ଗଠନ କରିବାକୁ ହୋଇଛି। ତୁଷାର-ଯୁଗରେ ଆଦି ମନୁଷ୍ୟମାନଙ୍କର ସମସ୍ତ ଶକ୍ତି କେବଳ ଖାଦ୍ୟ ଆହରଣ ଏବଂ ଆତ୍ମରକ୍ଷାପାଇଁ ନିୟୋଜିତ ହେଉଥିଲା। ପ୍ରତ୍ନ-ପ୍ରସ୍ତର ଯୁଗରେ କମେ ମନୁଷ୍ୟ ଅଳ୍ପ ଟିକିଏ ଉନ୍ନତ ହୋଇ କାଷ୍ଠ ଏବଂ ପ୍ରସ୍ତରର ଅସ୍ତ୍ର ତିଆରି କରିବା ଶିଖି ପାରିଥିଲା। ମଧ୍ୟ-ପ୍ରସ୍ତର ଯୁଗରେ ଏହି ଅସ୍ତ୍ରଗୁଡ଼ିକ ଆଉ ଟିକିଏ ଉନ୍ନତ ଧରଣର ହୋଇ ପାରିଥିଲା। ପରବର୍ତ୍ତୀ ପ୍ରସ୍ତରଯୁଗ ବା ପ୍ରସ୍ତର ଯୁଗର ଶେଷବେଳକୁ ମନୁଷ୍ୟ ଅନେକ ଉନ୍ନତ ହୋଇଯାଇଥିଲା ଏବଂ ପାହାଡ଼-ପର୍ବତର ଗୁହା କିମ୍ବା କ୍ଷୁଦ୍ର କ୍ଷୁଦ୍ର କୁଡ଼ିଆକୁ

ନିଜର ଗୃହରୂପେ ବ୍ୟବହାର କରିବା, ନିଆଁର ବ୍ୟବହାର କରିବା, ଖାଦ୍ୟ ଆହରଣ ତଥା ଖାଦ୍ୟ ସଞ୍ଚୟ ଆଦି ଶିଖିବା, ବିଭିନ୍ନ ପ୍ରକାର ମାଟି କମ୍ବା ପଥରର ଅଳଙ୍କାର ବ୍ୟବହାର କରିବା, ଗଛର ବଲ୍‌କଲ ଇତ୍ୟାଦି ସାହାଯ୍ୟରେ ନିଜର ଲଜ୍ଜା ନିବାରଣ କରିବା, ନାନା କୌଶଳରେ ବନ୍ୟ ହିଂସ୍ରଜନ୍ତୁ ଶିକାର କରିବା, ଗ୍ରୀଷ୍ମ ଏବଂ ଶୀତର ପ୍ରଭାବରୁ ନିଜକୁ ରକ୍ଷା କରିବା, ବିବାହ ଏବଂ ପରିବାର ପୋଷଣ କରିବା, ଇଙ୍ଗିତ ସାହାଯ୍ୟରେ କଥାବାର୍ତ୍ତା ନ କରି ନିଜ ମଧ୍ୟରେ ଏକପ୍ରକାର ଭାଷା ପ୍ରଚଳନ କରିବା ଇତ୍ୟାଦି ଅନେକ ବିଷୟରେ ମନୁଷ୍ୟ ଦକ୍ଷତା ଲାଭ କରି ପାରିଥିଲା । ଏହି ଯୁଗରେ ଆଦିମମାନଙ୍କ ମଧ୍ୟରେ ଏକପ୍ରକାର ଆଦିମ ଧର୍ମର ସୃଷ୍ଟି ହୋଇଥିଲା ଏବଂ କ୍ରମେ କ୍ରମେ ସଂସ୍କୃତିର ଅଙ୍ଗ ରୂପେ କଳା ଏବଂ ସଂଗୀତର ମଧ୍ୟ ଉଦ୍ଭାବନ ଏବଂ ପ୍ରଚଳନ ହୋଇଥିଲା । ପ୍ରତ୍ୟେକ ସଭ୍ୟତାର ଆରମ୍ଭ ଠିକ୍ ଏହିପରି ଭାବରେହିଁ ହୋଇଛି । ଆଜି ଯେଉଁମାନେ ନାନା ବେଶ-ଭୂଷାରେ ପରିଶୋଭିତ ହୋଇ ବହୁବିଧ ଯାନବାହନରେ ବିଚରଣ କରି ସଭ୍ୟତାର ଅଗ୍ରଧ୍ୱଜୀ ହୋଇଛନ୍ତି ସେମାନଙ୍କର ଆଦି-ପିତା-ମାନେ ମଧ୍ୟ ଦିନେ ଉଲଗ୍ନ ଅବସ୍ଥାରେ ବଣ ଜଙ୍ଗଲରେ ପଶୁପକ୍ଷୀ ଶିକାର କରି ଜୀବିକା ପୋଷଣ କରୁଥିଲେ ।

ତେବେ ଆଦିମମାନଙ୍କର ସଭ୍ୟତା ଏବଂ ଆମ୍ଭମାନଙ୍କ ସଭ୍ୟତା ମଧ୍ୟରେ ଏତିକି ପାର୍ଥକ୍ୟ ଯେ ଗୋଟିଏ ସରଳ ଜୀବନଯାପନ ପାଇଁ ଯେତିକି ଦୂର ଅଗ୍ରସର ହେବା ଦରକାର, ଠିକ୍ ସେତିକି ଦୂର ଅଗ୍ରସର ହୋଇ ଆଦିମ ସଭ୍ୟତା ତା'ର ଅଗ୍ରଗତି ବନ୍ଦ କରିଦେଇଛି, ଅଥଚ ଆମ୍ଭମାନଙ୍କର ସଭ୍ୟତା ଅସରନ୍ତି ମାର୍ଗରେ ଅଗେଇ ଚାଲିଛି । ତାହା କ୍ରମେ ଜଟିଳରୁ ଜଟିଳତର ହୋଇ ଶେଷରେ ନିଜର ବିସ୍ତୃତ

ପରିସର ମଧ୍ୟରେ ବନ୍ଧୁ ବାନ୍ଧବ ଭାବଧାରା ଏବଂ ଆବର୍ଜନାକୁ ପ୍ରଶ୍ରୟ ଦେଇଛନ୍ତି ।

ସରଳ ଜୀବନଯାପନ, ଅଳ୍ପରେ ସନ୍ତୋଷ, ଏବଂ ନାଚଗୀତ ଆମୋଦ ପ୍ରମୋଦ ଏହି କେତୋଟିକୁ ମୂଳଦୁଆକରି ଆଦିମମାନେ ନିଜର ଜୀବନ ତିଆରି କରିନେଇଛନ୍ତି । ପ୍ରସ୍ତର ଯୁଗରେ ଆଦିମ-ମାନେ ପର୍ବତ ପାହାଡ଼ର ପ୍ରାକୃତିକ ଗୁମ୍ଫାଗୁଡ଼ିକରେ ଆଶ୍ରୟ ନେଇ ନିଜକୁ ହିଂସ୍ରଜନ୍ତୁମାନଙ୍କର ଆକ୍ରମଣରୁ ତଥା ଶୀତ ଏବଂ ଗ୍ରୀଷ୍ମର ପ୍ରକୋପରୁ ରକ୍ଷା କରୁଥିଲେ । ପରବର୍ତ୍ତୀ ଯୁଗରେ ସେହି ଗିରିଗୁହା-ଗୁଡ଼ିକ ସେମାନଙ୍କର ବାସଗୃହରୂପେ ବ୍ୟବହୃତ ହେଲା । କ୍ରମେ ଜନବୃଦ୍ଧି ଫଳରେ ଯେତେବେଳେ ସୀମାବଦ୍ଧ ଗୁହା ଗୁଡ଼ିକରେ ସ୍ଥାନାଭାବ ଘଟିଲା, ସେତେବେଳେ ଗୁହାମାନଙ୍କର ଅନୁକରଣ କରି ଆଦିମମାନେ ଗଛର ଡାଳପତ୍ର ସାହାଯ୍ୟରେ ଛୋଟ ଛୋଟ କୁଡ଼ିଆ ନିର୍ମାଣ କରିବା ଶିଖିଲେ । ବଂଶ ପରମ୍ପରା ଧରି ଆଦିମମାନେ ପ୍ରଥମେ ଗିରିଗୁହା ଏବଂ ପରେ ପର୍ଣ୍ଣକୁଟୀରରେ ବସବାସ କରି ନିଜର ଦିନାତିପାତ କରି ଆସୁଅଛନ୍ତି । ଏ କୁଟୀରସଭ୍ୟତା ଅନ୍ୟମାନଙ୍କ ଚକ୍ଷୁରେ ଯେତେ ହେୟ ହେଉନା କାହିଁକି ଏହା ପଛରେ ଯେଉଁ ସରଳ ଆନନ୍ଦ ଟିକକ ରହିଛି ସେ ଆନନ୍ଦ ଅନ୍ୟ ଜାତିମାନଙ୍କର ଆକାଶଚୁମ୍ବୀ-ତୁଙ୍ଗ-ସୌଧ-ସଭ୍ୟତା ପଛରେ ନାହିଁ ।

ସେମାନଙ୍କର ଖାଦ୍ୟ ବ୍ୟବସ୍ଥା ମଧ୍ୟ ସେହିପରି ସହଜ । ପ୍ରତ୍ୟେକ ଜାତିକୁ ତା'ର ଇତିହାସର ଆରମ୍ଭରେ ଶିକାରଜୀବୀରୂପେ ଦେଖିବାକୁ ମିଳେ । ପ୍ରତ୍ୟେକ ମନୁଷ୍ୟକୁ ସର୍ବପ୍ରଥମେ ତା'ର ସମସ୍ତ ଶକ୍ତି କେବଳ ଖାଦ୍ୟ ଆହରଣରେ ନିୟୋଜିତ କରିବାକୁ ହୋଇଥିଲା ଏବଂ ସାଧାରଣତଃ ଏହି ଖାଦ୍ୟଆହରଣରେ ଅର୍ଥ ଥିଲା ଶିକାର । ଅତୀତକାଳରୁ ଆଜି ପର୍ଯ୍ୟନ୍ତ ଆଦିମମାନେ ଶିକାରଜୀବୀ ।

ଅବଶ୍ୟ ଖୁବ୍ ପୁରୁଣା ଯୁଗରେ ଆଦିମମାନେ ସଭ୍ୟ ଜାତିମାନଙ୍କଠାରୁ କ୍ଷୁଦ୍ର ପରିମାଣରେ କୃଷିବିଦ୍ୟା ଶିକ୍ଷା କରିବାକୁ ଚେଷ୍ଟା କରିଥିଲେ, ଏଥିରେ ସନ୍ଦେହ ନାହିଁ । ଆଜିକାଲି ଭାରତ ତଥା ଉତ୍କଳର ଅନେକ ସ୍ଥାନରେ ଆଦିମମାନଙ୍କ କୃଷି ଦ୍ୱାରା ଜୀବିକା ନିର୍ବାହ କରିବାର ଦେଖାଯାଏ । ଏମାନେ ଅତୀତରେ ଆର୍ଯ୍ୟମାନଙ୍କ ପାଖରୁ କୃଷି-ସଭ୍ୟତାର ଅନୁକରଣକରି ଆଜି କୃଷିବିଦ୍ୟାଦ୍ୱାରା ଜୀବିକା ନିର୍ବାହ କରିବାପାଇଁ ଊଣାଅଧିକ ସମର୍ଥ ହୋଇଅଛନ୍ତି । କିନ୍ତୁ କୃଷିବିଦ୍ୟାରେ ଯେତେ ଅଗ୍ରସର ହେଲେସୁଦ୍ଧା ଶିକାର-ଜୀବିକା ତ୍ୟାଗ କରିବାକୁ ସମର୍ଥ ହୋଇପାରି ନାହାନ୍ତି । ଶିକାରର ପ୍ରଧାନ ଅସ୍ତ୍ର ଧନୁ ଏବଂ ଶର ।

ଧାତୁଯୁଗ ଆଗରୁ ଅନୁନ୍ନତ ଧରଣର ପ୍ରସ୍ତରନିର୍ମିତ ହତିଆର ସାହାଯ୍ୟରେ ଆଦିମମାନେ ଶିକାର କରୁଥିଲେ । କିନ୍ତୁ କ୍ରମେ ଯେତେବେଳେ ଲୁହାର ବ୍ୟବହାର ମନୁଷ୍ୟକୁ ଜଣାଗଲା ସେତେବେଳେ ଲୌହଯୁକ୍ତ ଶରସାହାଯ୍ୟରେ ଶିକାର କାର୍ଯ୍ୟ ସହଜ ହୋଇଗଲା । ଆଜି ପ୍ରତ୍ୟେକ ଆଦିମ ପରିବାରରେ ଧନୁଶର ନିଶ୍ଚୟ ଦେଖିବାକୁ ମିଳେ । ଆଦିମମାନେ ମାଂସାଶୀ, ପାଶ୍ଚାତ୍ୟ ଜଗତର ସଭ୍ୟଜାତି ସମୂହ ମଧ୍ୟ ମାଂସାଶୀ । ପାଶ୍ଚାତ୍ୟ ଅଧିବାସୀମାନେ ମାଂସାଶୀ; କାରଣ ଶୀତପ୍ରଧାନ ଜଳବାୟୁରେ ମାଂସର ଆବଶ୍ୟକତା ଅପରିହାର୍ଯ୍ୟ । ଆଦିମମାନେ ମାଂସାଶୀ, କାରଣ ସେମାନେ ସୃଷ୍ଟିର ଆଦିମ ମନୁଷ୍ୟ ଏବଂ ସୃଷ୍ଟିର ପ୍ରତ୍ୟେକ ଆଦିମ ମନୁଷ୍ୟକୁ ଶିକାରଦ୍ୱାରାହିଁ ଜୀବିକା ନିର୍ବାହ କରିବାକୁ ପଡ଼ିଥିଲା । ଏପରିକି ଅତୀତକାଳରେ ଆର୍ଯ୍ୟ ମୁନି, ଋଷି, ରାଜା, ସମ୍ରାଟମାନେ ମଧ୍ୟ ମାଂସାଶୀ ଥିଲେ; କାରଣ କୃଷି-ଜୀବିକା ସେମାନଙ୍କୁ ଜଣାଥିଲେ ସୁଦ୍ଧା ଶିକାର-ଜୀବିକା ସେମାନଙ୍କର ସୁଦୂର

ପୂର୍ବପୁରୁଷମାନଙ୍କର ଜୀବନପନ୍ଥା ଥିଲା ଓ ଏହାକୁ ଆଦିମମାନେ ଏକାବେଳକେ ଭୁଲି ପାରି ନଥିଲେ । ଅତି ଅତୀତ କାଳରେ ପ୍ରତ୍ୟେକ ଜାତିକୁ ପ୍ରଧାନତଃ ମାଂସାଶୀ ରୂପେ ଜୀବିକା ନିର୍ବାହ କରିବାକୁ ପଡ଼ିଛି । ପରବର୍ତ୍ତୀ ଯୁଗରେ ମାଂସ ପରିବର୍ତ୍ତେ ଶସ୍ୟ ମନୁଷ୍ୟର ପ୍ରଧାନ ଖାଦ୍ୟରେ ପରିଣତ ହୋଇଛି । ଆଜି ଆଦିମମାନେ ମଧ୍ୟ ଶସ୍ୟକୁ ସେମାନଙ୍କର ମୁଖ୍ୟ ଖାଦ୍ୟରେ ପରିଣତ କଲେଣି । ଯଦିଚ ସେମାନେ କୃଷିବିଦ୍ୟାରେ ସେପରି ବିଶେଷ ପାରଗତା ଲାଭ କରି ପାରି ନାହାନ୍ତି, ତଥାପି ଅନ୍ୟ ପ୍ରତିବେଶୀ ଜାତିମାନଙ୍କ ସଂସର୍ଗରେ ଆସିବା ଯୋଗୁଁ ସେମାନଙ୍କୁ ଶସ୍ୟ ସଂଗ୍ରହ କରିବାକୁ ସେପରି କଷ୍ଟ ହେଉନାହିଁ । କିନ୍ତୁ ଯେତେ ଯାହାହେଉ, ଯେଉଁ ଆଦିମ ଅଧିବାସୀମାନେ ସମତଳ ପ୍ରଦେଶମାନଙ୍କ ପାଖରୁ ବହୁ ଦୂର ଦୂରାନ୍ତର ଅଗମ୍ୟ ପର୍ବତ ପାହାଡ଼ ମଧ୍ୟରେ ବସବାସ କରୁଛନ୍ତି ସେମାନଙ୍କର ଆଜିସୁଦ୍ଧା ମାଂସହିଁ ପ୍ରଧାନ ଖାଦ୍ୟ ଏବଂ ଶିକାରହିଁ ଶ୍ରେଷ୍ଠ ଜୀବିକା ।

ଆଦିମମାନଙ୍କର ପୋଷାକ ପରିଚ୍ଛଦ ମଧ୍ୟ ଯେତେଦୂର ସମ୍ଭବ ସରଳ ଏବଂ ସଂକ୍ଷେପ । ସୃଷ୍ଟିର ଆରମ୍ଭରେ ମନୁଷ୍ୟକୁ ଉଲଗ୍ନ ରୂପେହିଁ ଦେଖିବାକୁ ମିଳନ୍ତି । କ୍ରମଶଃ ସେହି ଉଲଗ୍ନ ମନୁଷ୍ୟ ଲଜ୍ଜା ନିବାରଣ ପାଇଁ ଗଛର ପତ୍ର ଏବଂ ବଲ୍କଳ ପ୍ରଭୃତିକୁ ନିଜର ପରିଚ୍ଛଦ ରୂପେ ବ୍ୟବହାର କରିଛି । ସଭ୍ୟତାର ଅଗ୍ରଗତି ସଙ୍ଗେ ସଙ୍ଗେ ସେ ସୂକ୍ଷ୍ମ ବସ୍ତ୍ରର ବ୍ୟବହାର କରିଛି । ତା'ପରେ ସେମାନେ ଗଛର ପତ୍ର ଏବଂ ବଲ୍କଳ ବ୍ୟବହାର କରି ଲଜ୍ଜା ନିବାରଣ କଲେ । କ୍ରମେ କ୍ରମେ ଅପର ଜାତିମାନଙ୍କର ସଂସର୍ଗରେ ଆସି ସାମାନ୍ୟ ମାତ୍ରାରେ ଲୁଗାପଟା ପିନ୍ଧି ଶିଖିଲେ । ଊନବିଂଶ ଶତାବ୍ଦୀର ଶେଷ ଭାଗରେ ବିଖ୍ୟାତ ଐତିହାସିକ ଓ ତଥ୍ୟସଂଗ୍ରାହକ

ସାର ଡଇଲ୍‌ୟୁମ ହଣ୍ଟର୍ ଓଡ଼ଶାର ପାର୍ବତ୍ୟ ଅଞ୍ଚଳରେ 'ଜୁଆଙ୍ଗ' ବା 'ପତୁଆ' ନାମକ ଏକ ଆଦିମ ସମ୍ପ୍ରଦାୟର ଲୋକଙ୍କୁ ଦେଖି ଥିଲେ—ଯେଉଁମାନେକ ସେ ପର୍ଯ୍ୟନ୍ତ ଲୁଗାର ବ୍ୟବହାର ଜାଣି ନ ଥିଲେ ଏବଂ ଗଛର ପତ୍ର ସାହାଯ୍ୟରେ ଲଜ୍ଜା ନିବାରଣ କରୁଥିଲେ । ସନ ୧୮୭୨ ମସିହାର ଜନ-ସୁମାରି ବେଳେ ଏହି ଜୁଆଙ୍ଗ-ସମ୍ପ୍ରଦାୟର ଲୋକସଂଖ୍ୟା କେବଳମାତ୍ର ଦଶ ହଜାର ଥିଲା । ବ୍ରିଟିଶସରକାର ଏହି ସଂପ୍ରଦାୟର ଲୋକମାନଙ୍କ ମଧ୍ୟରେ ଲୁଗାର ପ୍ରଚଳନ କରିବା ପାଇଁ ଚେଷ୍ଟା କରିସୁଦ୍ଧା ସଫଳକାମ ହୋଇ ପାରି ନ ଥିଲେ ।

ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଜୁଆଙ୍ଗମାନେ ଧାତୁର ବ୍ୟବହାର ଜାଣି ନ ଥିଲେ ଏବଂ ସେମାନଙ୍କ ସ୍ଵ ଭାଷାରେ ଲୁହା କିମ୍ବା ଅନ୍ୟ କୌଣସି ଧାତୁର ପ୍ରତିଶବ୍ଦ ମଧ୍ୟ ନ ଥିଲା । କିନ୍ତୁ ଏହି ଜୁଆଙ୍ଗ ରାଇଜରେ ପ୍ରସ୍ତର ନିର୍ମିତ ବହୁବିଧ ଅସ୍ତ୍ରଶସ୍ତ୍ର ଦେଖିବାକୁ ମିଳେ । ସେମାନଙ୍କର କୁଡ଼ିଆ ମନୁଷ୍ୟର ସବୁଠାରୁ ସଂକୀର୍ଣ୍ଣ ଏବଂ କ୍ଷୁଦ୍ର ବାସସ୍ଥଳୀମାନଙ୍କ ମଧ୍ୟରେ ଅନ୍ୟତମ । ହଣ୍ଟର୍ ସାହେବଙ୍କ ଭାଷାରେ ଏହି ଜୁଆଙ୍ଗମାନେ ଏ ଯୁଗପାଇଁ ସୁଦୂର ପ୍ରସ୍ତର-ଯୁଗର ଅବଶିଷ୍ଟାଂଶ ମାତ୍ର । ସେ ଯାହାହେଉ, ସ୍ୱଳ୍ପରେ ଲଜ୍ଜା ନିବାରଣ କରି ଆଦିମ ନରନାରୀ ଚିରଦିନ ସେମାନଙ୍କର ସ୍ୱାସ୍ଥ୍ୟବାନ ଅଙ୍ଗ-ସୌଷ୍ଠବକୁ ବାରମାସ, ଷଡ଼ଋତୁ, ଶୀତ, ଗ୍ରୀଷ୍ମ, ବର୍ଷା, ବସନ୍ତର ବିଭିନ୍ନ ପ୍ରାକୃତିକ ପ୍ରକୋପ ମଧ୍ୟରେ କର୍ମବ୍ୟସ୍ତ ରଖିଛନ୍ତି । ସେମାନଙ୍କର ମାଂସପେଶି ପ୍ରଚଣ୍ଡ ସୂର୍ଯ୍ୟରଶ୍ମିରେ ଦୃଢ଼ୀଭୂତ, ବର୍ଷାର ମୂଷଳଧାରା ପାଇଁ ଅଭ୍ୟସ୍ତ ଏବଂ ଶୀତର ଦାରୁଣ ପ୍ରକୋପ ପାଇଁ ମଧ୍ୟ ପ୍ରସ୍ତୁତ । ପ୍ରକୃତି-ଗହଣରେ ଆଦିମମାନଙ୍କର ଉଲଙ୍ଗ, ଅର୍ଦ୍ଧନଗ୍ନ ଶରୀରହିଁ ସେମାନଙ୍କର ଶ୍ରେଷ୍ଠ ବେଶଭୂଷା ।

ଏ ତଳ ଆଦିବାସୀମାନଙ୍କ ବାସସ୍ଥଳୀ, ଆହାର ଓ ବେଶ ଉପରେ ଅତି ସଂକ୍ଷେପରେ ପଢ଼େ । ବର୍ତ୍ତମାନ ସେମାନଙ୍କର ଧର୍ମ, ବିଶ୍ୱାସ ଏବଂ କଳା-କୌଶଳ ଉପରେ ସଂକ୍ଷେପରେ ଆଲୋଚନା କରାଯାଉ । ଆଦିମମାନଙ୍କର ଧର୍ମ ପୃଥିବୀର ପ୍ରାଚୀନତମ ଧର୍ମ ଏବଂ ଏ ଧର୍ମର ମେରୁଦଣ୍ଡ ହେଉଛି ପ୍ରକୃତି-ପୂଜା । ଆଦିମାନବ ପ୍ରକୃତିର ପ୍ରଚଣ୍ଡ ରୂପରେ ଭୟତ୍ରସ୍ତ ହୋଇ ଆକାଶ, ପବନ, ଝଞ୍ଜା, ଅଗ୍ନି, ପର୍ବତ, ନଦୀ ପ୍ରଭୃତିର ଆରାଧନା କରନ୍ତି । ବିଶେଷଜ୍ଞମାନଙ୍କ ମତରେ ଆଦିମମାନେ ଏକ ସର୍ବଶକ୍ତିମାନ୍ ଈଶ୍ୱରଙ୍କର ଅବସ୍ଥିତି



ଉପରେ ବିଶ୍ୱାସ କରିପାରି ନାହାନ୍ତି । ଏକେଶ୍ୱରବାଦ ସେମାନଙ୍କୁ ଆଜିସୁଦ୍ଧା ଅଜଣା, କାରଣ ପ୍ରକୃତିର ବିଭିନ୍ନ ରୂପକୁ ବିଭିନ୍ନ ଶକ୍ତିରୂପେ ବିଶ୍ୱାସ କରି ଆଦିମମାନେ ଅନେକ ଦେବଦେବୀର କଳ୍ପନା କରିଅଛନ୍ତି । ଆକାଶ-ଦେବତା, ଅଗ୍ନି-ଦେବତା, ନଦୀ-

ଦେବତା, ଅରଣ୍ୟଦେବତା, ପର୍ବତଦେବତା ଇତ୍ୟାଦି ଅନେକାନେକ ଦେବତା ଆଦିମମାନଙ୍କର ପୂଜ୍ୟ । ବିବର୍ତ୍ତନପଥରେ ପ୍ରତ୍ୟେକ ଧର୍ମର ଆରମ୍ଭ ଠିକ୍ ଏହି ପ୍ରକୃତି ପୂଜା ପାଖରୁ ।

ଅତୀତର ବୈଦିକ ଆର୍ଯ୍ୟ ମୁନିଋଷିମାନେ ମଧ୍ୟ ବେଦର ଅମର ପଂକ୍ତିରେ ପ୍ରକୃତିର ରୂପ ବର୍ଣ୍ଣନା କରି ଅଗ୍ନି, ବରୁଣ, ପବନପ୍ରଭୃତି ଦେବତାମାନଙ୍କର ସୃଷ୍ଟି କରି ଯାଇଥିଲେ । ତେବେ ବୈଦିକ ପ୍ରକୃତି-ପୂଜା ଏବଂ ଆଦିମ ପ୍ରକୃତିପୂଜା ମଧ୍ୟରେ ପାର୍ଥକ୍ୟ ଏହି ଯେ ବୈଦିକ ଆର୍ଯ୍ୟମାନେ ପ୍ରକୃତିର ବିଭିନ୍ନ ଅବୟବ ଯଥା ଅଗ୍ନି, ପବନ, ଆକାଶ, ବର୍ଷା ପ୍ରଭୃତିକୁ ମାନବହିତୈଷୀ ଦେବତାରୂପେ କଳ୍ପନାକରି ସେମାନଙ୍କର ଗୁଣ ବର୍ଣ୍ଣନା କରୁଥିଲେ ଏବଂ ସଦାସର୍ବଦା ମାନବର ଉପକାର ପାଇଁ ଏହି ଦେବତାମାନଙ୍କୁ ପୂଜା, ଆରାଧନା ଏବଂ ସ୍ତୁତିଗାନଦ୍ୱାରା ସନ୍ତୁଷ୍ଟ ରଖିବାକୁ ଚେଷ୍ଟା କରୁଥିଲେ । କିନ୍ତୁ ଆଦିମମାନଙ୍କ ପାଖରେ ପ୍ରକୃତି ଭୟାବହ, ଭୟଙ୍କର ଏବଂ ଶର-ପ୍ରଳୟଙ୍କରୀ । ଅରଣ୍ୟ ଦେବତାକୁ ବନ୍ଧୁ କିମ୍ବା ହିତୈଷୀ ଦେବତାରୂପେ ଦେଖିବା ଅସମ୍ଭବ, କାରଣ ଅରଣ୍ୟଦେବତାର ଗହନ ଗର୍ଭରେ କେତେ ଭୟଙ୍କର ହିଂସ୍ରଜନ୍ତୁ ସତେ ଯେପରି ମନୁଷ୍ୟକୁ ଗ୍ରାସ କରିବାକୁ ଦେବତା ପାଖରୁ ଆଦେଶ ପାଇ ଅପେକ୍ଷା କରିଛନ୍ତି । ପର୍ବତଦେବତା ମଧ୍ୟ ଉଗ୍ରରୂପ ଭୟଙ୍କର । ବର୍ଷା, ବାତ୍ୟା କଅଣ ଆଦିମମାନଙ୍କର କ୍ଷୁଦ୍ର ପର୍ଣ୍ଣକୁଟୀର ଧ୍ୱସ୍ତ ବିଧ୍ୱସ୍ତ କରି ଦିଏନା ? ଅଗ୍ନି ଦେବତାଙ୍କ କୋପରେ ଆଦିମମାନଙ୍କ ବାସାଞ୍ଚଳ ପୋଡ଼ି ଧ୍ୱଂସ ହୋଇଯାଏ, ତେଣୁ ସେ ମଧ୍ୟ ଭୟଙ୍କର ।

ଅବଶ୍ୟ ଦେବତାମାନଙ୍କ ପ୍ରତି ଏହି ପ୍ରବଳ ଭୟ ଆଦିମମାନଙ୍କୁ ଧର୍ମଭୀରୁ କରିଛି ଏବଂ ଏହି ଧର୍ମଭୟ ସେମାନଙ୍କର ନୈତିକ ମେରୁଦଣ୍ଡ ସବଳ କରିଛି । ଅପରାଧ, ଅନ୍ୟାୟ

ଇଲେ ନିଷ୍ଟୟ ଦେବତ. ପାଖରୁ ଦଣ୍ଡ ମିଳିବ, ସୁତରାଂ ଅନ୍ୟାୟ, ଅବିଗ୍ଭର ପାଖରୁ ଦୂରରେ ରହିବାକୁ ପଡ଼ିବ । ପାପକଲେ ସୁଦ୍ଧା ଦେବତାଙ୍କୁ ସନ୍ତୁଷ୍ଟ କରି ସେ ପାପରୁ ମୁକ୍ତ ପାଇବାର ଯେଉଁ ଅଭିପ୍ରାୟ ଏହା ଆମର ଧର୍ମର ଗୋଟିଏ ଅଙ୍ଗ, ଏହାଦ୍ୱାରା ପାପକୁ ପ୍ରଶ୍ରୟ ଦିଆଯାଉଛି ଏବଂ ଦେବତାଙ୍କୁ ମଧ୍ୟ କଳଙ୍କିତ କରାଯାଉଛି । ଶକ୍ତିଶାଳୀ ଦେବତାଙ୍କୁ ଆଦିମମାନଙ୍କର କେତେ ପ୍ରବଳ ଭୟ ସେ ବିଷୟରେ ହଣ୍ଟର ସାହେବ ଏ କାଳର ଜନୈକ ଆଦିମର ଦୃଷ୍ଟାନ୍ତ ଦେଇ ଗୋଟିଏ ଘଟଣାର ଉଲ୍ଲେଖ କରିଅଛନ୍ତି ।

---

## ଆମ ଆଦିବାସୀଙ୍କର ସଂସ୍କାର

—୨—

ଥରେ ଜଣେ ଖ୍ରୀଷ୍ଟିୟାନ ଧର୍ମପ୍ରଗ୍ଭରକ ସର୍ବଶକ୍ତିମାନ ଈଶ୍ୱରଙ୍କର ଗୁଣାବଳୀ କୀର୍ତ୍ତନକରି ସାନ୍ତାଳମାନଙ୍କ ଆଗରେ ଖ୍ରୀଷ୍ଟିୟାନ ଧର୍ମସମ୍ବନ୍ଧରେ ବକ୍ତୃତା ଦେଉଥିଲେ । ଈଶ୍ୱରଙ୍କର ଶକ୍ତି ବିଷୟ ଶୁଣିସାରିଲା ପରେ ଶ୍ରୋତାମାନଙ୍କ ମଧ୍ୟରୁ ଜଣେ ସାନ୍ତାଳ ପଗ୍ଭରିଲା, "ଯଦି ସେହି ସର୍ବଶକ୍ତିମାନ ଈଶ୍ୱର ମୋତେ ଖାଇ ଯାଆନ୍ତି ତେବେ ?" ସୁତରାଂ, ଯାହା ପାଖରେ ଶକ୍ତି ଅଛି ତା' ପାଖରୁ ଅଶଙ୍କା କରିବାର ମଧ୍ୟ ଯଥେଷ୍ଟ କିଛି ଅଛି, ଏହା ଏ ପର୍ଯ୍ୟନ୍ତ ଆଦିମ ମାନଙ୍କର ବିଶ୍ୱାସ । ପ୍ରକୃତିପୂଜା ଛଡ଼ା ଆଦିମମାନଙ୍କ ଅନ୍ୟ ଦେବତା, ଯଥାଃ— ନିଜର ବଂଶ-ଦେବତା, ଗୃହ-ଦେବତା, ଜାତି-ଦେବତା ଇତ୍ୟାଦି ଅନ୍ୟାନ୍ୟ ଦେବତାମାନଙ୍କୁ ମଧ୍ୟ ପୂଜା କରିବାକୁ ପଡ଼େ । ଦେବତା-ମାନଙ୍କ ଛଡ଼ା ପୂର୍ବପୁରୁଷମାନଙ୍କର ପ୍ରେତାତ୍ମାମାନଙ୍କୁ ମଧ୍ୟ ସନ୍ତୁଷ୍ଟ ରଖିବାକୁ ହୁଏ । ଆଦିମମାନଙ୍କ ବିଶ୍ୱାସରେ ପୃଥିବୀରେ ଅଗଣିତ

ଭୂତ, ପ୍ରେତ, ପିଶାଚ, ରାକ୍ଷସମାନଙ୍କର ବସବାସ ରହିଛି, ଯେଉଁ-ମାନେକି ମନୁଷ୍ୟମାନଙ୍କର ଅନିଷ୍ଟ କରିବା ପାଇଁ ସର୍ବଦା ଚେଷ୍ଟିତ । ଏମାନଙ୍କ କୋପରୁ ରକ୍ଷା ପାଇବା ପାଇଁ ଆଦିମମାନେ ସଦା ସର୍ବଦା ବ୍ୟସ୍ତ । ଆଦିମମାନଙ୍କର ପୂଜା ପଦ୍ଧତିର ସଂଖ୍ୟା ଯଥେଷ୍ଟ । ସେମାନଙ୍କ ନିଜ ମତରେ ସେମାନେ ସେମାନଙ୍କର ଉତ୍ସବ ଇତ୍ୟାଦି ପାଳନ କରନ୍ତି । ଦେବତାମାନଙ୍କର ସନ୍ତୋଷ ପାଇଁ ଆଦିମମାନେ କେବଳ ପୂଜା, ଉପାସନା ବ୍ୟତୀତ ରକ୍ତ-ଦାନରେ ମଧ୍ୟ ବିଶ୍ବାସ କରୁଥିଲେ ଏବଂ କରନ୍ତି ।

ଓଡ଼ିଶାର ସାନ୍ତାଳମାନେ ଆଜି ପର୍ଯ୍ୟନ୍ତ ଛେଳି, କୁକୁଡ଼ା ପ୍ରଭୃତିର ରକ୍ତରେ ନିଜର ଦେବାତାମାନଙ୍କୁ ସନ୍ତୁଷ୍ଟ କରନ୍ତି । କିନ୍ତୁ କେବଳ ପଶୁ ପକ୍ଷୀର ରକ୍ତରେ ଆଦିମ ମନ ସନ୍ତୁଷ୍ଟ ନ ଥିଲା । ଦେବତାର ପୂଜା ପାଇଁ ନରରକ୍ତ ଦାନ କରିବା ପାଇଁ ମଧ୍ୟ ସେମାନେ ଅଭ୍ୟସ୍ତ ଥିଲେ । ଉତ୍କଳ ଖଣ୍ଡର କନ୍ଧମାନେ ନରରକ୍ତ ଦାନ ବା ନରବଳି ପାଇଁ ପ୍ରସିଦ୍ଧ । ଏହି କନ୍ଧସମ୍ପ୍ରଦାୟ ବହୁ ପୁରୁଣା କାଳରୁ ଓଡ଼ିଶାର ପାର୍ବତ୍ୟାଞ୍ଚଳ ବିଶେଷତଃ ଦକ୍ଷିଣରେ ଗଞ୍ଜାମ; ଭୁଇଁଜାଗ ଜିଲ୍ଲାମାନଙ୍କରେ ବସବାସ କରି ଆସୁଛନ୍ତି । ଦେଢ଼ହଜାର ବର୍ଷ ପୂର୍ବେ ଗ୍ରୀକ୍ ଭୌଗୋଳିକମାନେ କନ୍ଧମାନଙ୍କୁ ଭାରତର ଏହି ଉତ୍କଳ ଅଞ୍ଚଳରେହିଁ ବସବାସ କରୁଥିବାର ଦେଖିଥିଲେ । ତା’ ବହୁ ପୂର୍ବରୁ ଆର୍ଯ୍ୟମାନଙ୍କ ଦ୍ୱାରା ବିତାଡ଼ିତ ହୋଇ କନ୍ଧମାନେ ବୋଧହୁଏ ଉତ୍କଳର ପର୍ବତ ପାହାଡ଼ ମଧ୍ୟରେ ଆଶ୍ରୟ ନେଇଥିଲେ । ଅନ୍ୟାନ୍ୟ ଆଦିମ ସମ୍ପ୍ରଦାୟମାନଙ୍କ ପରି କନ୍ଧମାନେ ମଧ୍ୟ ଅନେକ ଦେବା-ଦେବୀ, ଭୂତ, ପ୍ରେତ, ରାକ୍ଷସ ଇତ୍ୟାଦିରେ ବିଶ୍ବାସ କରୁଥିଲେ ଏବଂ ସେମାନଙ୍କୁ ସନ୍ତୁଷ୍ଟ କରିବାକୁ ନାନାପ୍ରକାର ପୂଜା ପର୍ବ ପାଳନ କରୁଥିଲେ । ସବୁ ଦେବତା ମଧ୍ୟରେ କନ୍ଧମାନେ ମାଟି ଦେବତା

ବା ପୃଥିବୀ ଦେବତାକୁ ଅଧିକ ମାତ୍ରାରେ ଭୟ କରୁଥିଲେ ଏବଂ ସେମାନଙ୍କ ବିଶ୍ୱାସ ଅନୁଯାୟୀ ଏହି ଦେବତାକୁ ସନ୍ତୁଷ୍ଟ କରିବାର ଏକମାତ୍ର ଉପାୟ ଥିଲା ନରବଳି । ଯାହାକୁ ବଳି ଦିଆଯାଉଥିଲା ସେ 'ମେରିହା' ନାମରେ ଖ୍ୟାତ । ଏହି ମେରିହାକୁ ବଳି ଦିଆଯାଇ ସାରିଲା ପରେ ପରେ ତାହାର ମାଂସକୁ ଖଣ୍ଡ ଖଣ୍ଡ କରି କାଟି ଏଯୁଗର କନ୍ଧମାନେ ନିଜ ନିଜର ଶସ୍ୟ କ୍ଷେତ୍ରରେ ସେ ମାଂସଖଣ୍ଡକୁ ପୋତି ଦେଉଥିଲେ । ତଦ୍ଦ୍ୱାରା ସେ କ୍ଷେତ୍ରରେ ଉର୍ବରା ଶକ୍ତି ବଢ଼ିବ ବୋଲି ସେମାନଙ୍କର ବିଶ୍ୱାସ ଥିଲା । କନ୍ଧମାନଙ୍କର ଏହି ନରବଳି ପ୍ରଥା ଧର୍ମ ନାମରେ ଏକ ଚରମ ନୃଶଂସତାର ଦୃଷ୍ଟାନ୍ତ ଏଥିରେ ସନ୍ଦେହ ନାହିଁ । କିନ୍ତୁ ଏପରି ନୃଶଂସତା ଅପରାପର ଧର୍ମରେ ମଧ୍ୟ ଦେଖାଯାଏ । ନରବଳି ପ୍ରଥା କେବଳ ଯେ କନ୍ଧମାନଙ୍କର ଧର୍ମର ଗୋଟିଏ ଅଙ୍ଗ ତାହା ନୁହେଁ, ପରନ୍ତୁ, ପୃଥିବୀର ବହୁ ପୁରାତନ ଧର୍ମରେ ନରବଳି ପ୍ରଥାର ପ୍ରଚଳନ ଥିଲା—ଏହାର ଭୂରି ଭୂରି ପ୍ରମାଣ ରହିଛି ।

ପୌରାଣିକ ଯୁଗରେ ଆର୍ଯ୍ୟମାନଙ୍କ ସମାଜରେ ନରବଳି ପ୍ରଥାର ପ୍ରଚଳନ ଥିଲା, ଏ କଥାର ପ୍ରମାଣ ପୁରାଣମାନଙ୍କରୁ ମିଳେ । ପ୍ରାଚୀନ ଗ୍ରୀକ୍ ସଭ୍ୟତାରେ ମଧ୍ୟ ନରବଳିର ଦୃଷ୍ଟାନ୍ତ ରହିଛି । ମେକ୍ସିକୋ ଦେଶର ନରବଳି ପ୍ରଥା ପୃଥିବୀ ପ୍ରସିଦ୍ଧ, କାରଣ ଦେବତା ଉଦ୍ଦେଶ୍ୟରେ ଏପରି ଅଗଣିତ ସଂଖ୍ୟାରେ ନିରୀହ ନରନାରୀଙ୍କୁ ବଳିପୀଠରେ ହତ୍ୟା କରିବାର ଅନ୍ୟ କୌଣସି ଧର୍ମରେ ବା ଦେଶରେ ଦେଖା ଯାଇ ନାହିଁ । ଦକ୍ଷିଣ ଆମେରିକାର ଲୋହିତ ଭାରତୀୟମାନଙ୍କ ମଧ୍ୟରେ ନରବଳି ପ୍ରଥାର ପ୍ରଭୂତ ପ୍ରଚଳନ ଥିଲା । ଆଫ୍ରିକା ମହାଦେଶର ନିଗ୍ରୋମାନେ ମଧ୍ୟ ନରବଳିରେ ବିଶ୍ୱାସ କରୁଥିଲେ । ଫିଲିପାଇନ ଦ୍ୱୀପପୁଞ୍ଜର ସ୍ଥାୟୀ ଅଧିବାସୀମାନଙ୍କ ମଧ୍ୟରେ ଏ ପ୍ରଥାର ପ୍ରଚଳନ ଥିଲା । ପ୍ରାଚୀନ ଆରବମାନଙ୍କର ନରବଳିରେ ବିଶ୍ୱାସ

ଥିଲା । ମିଶର ଦେଶରେ ପ୍ରାଚୀନ ମିଶରୀୟମାନେ ସେମାନଙ୍କର ଶସ୍ୟ କ୍ଷେତ୍ରରେ ନରବଳି ଦେଉଥିଲେ । ବୋର୍ଣ୍ଣିଓ ଦ୍ୱୀପରେ ମଧ୍ୟ ଏହିପରି ଶସ୍ୟକ୍ଷେତ୍ରରେ ନରବଳି ଦେବାର ପ୍ରଥା ଥିଲା । ଏ ସବୁ ଦେଶ ଛଡ଼ା ଅନ୍ୟାନ୍ୟ ଅନେକ ଦେଶରେ ମଧ୍ୟ ନରବଳି ପ୍ରଥାର ଯଥେଷ୍ଟ ପ୍ରଚଳନ ଥିଲା । ସୁତରାଂ ନରବଳି ପରି ନୃଶଂସ ପ୍ରଥା ପାଇଁ କେବଳ କନ୍ଧମାନଙ୍କୁ ଦୋଷାରୋପ ନ କରି ପୃଥିବୀର ଅନ୍ୟାନ୍ୟ ଅନେକ ଜାତିଙ୍କୁ ମଧ୍ୟ ସ୍ୱଚ୍ଛନ୍ଦରେ ଦୋଷ ଦିଆଯାଇପାରେ । ଏବେ ସୁଦ୍ଧା ହିନ୍ଦୁ ସମାଜରେ ନରମେଧ ଯଜ୍ଞ ନ ହେଉଥିଲେ ସୁଦ୍ଧା ଦେବତାମାନଙ୍କୁ କ୍ଷୁଦ୍ର ବୃହତ୍ ଅନେକ ପ୍ରକାରର ପଶୁମାନଙ୍କର ରକ୍ତରେ ସନ୍ତୁଷ୍ଟ କରାଯାଉଛି । ଏହା ମନୁଷ୍ୟର ଏକ କୁସଂସ୍କାର ଓ ଅନ୍ଧ ବିଶ୍ୱାସ । ଯାହାହେଉ ୧୮୩୫ ମସିହାରେ ଓଡ଼ିଶାର କନ୍ଧମାନେ ଇଂରାଜ ଶାସନ ଭିତରକୁ ଆସିଲା ଦିନୁ, ସେମାନଙ୍କ ମେରିହା ପ୍ରଥା ବା ନରବଳୀ ସରକାରୀ ଆଇନ ଦ୍ୱାରା ବନ୍ଦ ହୋଇଅଛି । ତଦବଧି କନ୍ଧମାନେ ନରରକ୍ତ ପରିବର୍ତ୍ତେ ଛାଗମହିଷାଦି ପଶୁରକ୍ତରେ ସେମାନଙ୍କ ଧରଣୀଦେବୀ ବା ଦେବତାଙ୍କୁ ସନ୍ତୁଷ୍ଟ କରାଉଛନ୍ତି ।

ଆଦିମ କଳାକୌଶଳ ଉନ୍ନତ ଏବଂ ମାର୍ଜିତ । ସରଳ ସଂଗୀତର ମୂର୍ଚ୍ଛନା, ସୁମଧୁର ବାଦ୍ୟଯନ୍ତ୍ରର ସୁଲଳିତ ତାନ, ତଥା ଆଦିମ ନୃତ୍ୟର କଳାପୂର୍ଣ୍ଣ ଛନ୍ଦ, ଏସବୁ ଆଦିମମାନଙ୍କର ଅତି ଅତୀତର ସମ୍ପଦ ଏବଂ ସଂସ୍କୃତିର ଗୌରବ । କି ପର୍ବତନିବାସୀ, କି ପଲ୍ଲୀନିବାସୀ କି ସ୍ତ୍ରୀ କି ପୁରୁଷ, ସମସ୍ତ ଆଦିମହିଁ ସଂଗୀତଭକ୍ତ । ପୁରୁଷମାନଙ୍କ ଅପେକ୍ଷା ସ୍ତ୍ରୀମାନେ ଅଧିକମାତ୍ରାରେ ସଂଗୀତପ୍ରିୟ ଏବଂ ସାଧାରଣତଃ ସ୍ତ୍ରୀମାନଙ୍କର ସଂଗୀତଧ୍ୱନିସହ ପୁରୁଷମାନଙ୍କର ବଂଶୀଧ୍ୱନି ତାଳ ମିଳାଇ ଥାଏ । କର୍ମରତା ଆଦିମ ରମଣୀମାନଙ୍କର

ସଂଗୀତଲହରୀ, ଏବଂ ଭ୍ରାମ୍ୟମାଣ ଆଦିମ ଯୁବକମାନଙ୍କର ବଂଶୀଧ୍ୱନି ଯୁଗ ଯୁଗ ଧରି ଉତ୍କଳର ଗିରିବନ ମଧ୍ୟରୁ ସମତଳ ପ୍ରଦେଶକୁ ବହି ଆସିଛି । ଆଦିମମାନଙ୍କର ବାଦ୍ୟଯନ୍ତ୍ର ବହୁପ୍ରକାରର ଶୃଙ୍ଗ, ମାଦଳ, କେନ୍ଦରା, ବଂଶୀ; ଏହାଭିତରୁ ପ୍ରତ୍ୟେକଟିର ସ୍ୱନ ମଧୁର ଏବଂ ହୃଦୟସ୍ପର୍ଶୀ । ଆଦିମମାନଙ୍କର ନୃତ୍ୟକଳା ଭାରତୀୟ ତଥା ଉତ୍କଳୀୟ ନୃତ୍ୟ-କଳାର ଗୋଟିଏ ବିଶିଷ୍ଟ ଅଙ୍ଗ । ଶୃଙ୍ଗ, ମାଦଳର ତାଳସହ ଛନ୍ଦ ମିଳାଇ ତାଳେ ତାଳେ ଯୁବକ ଯୁବତୀଙ୍କର ଅଙ୍ଗଚାଳନା, ଜ୍ୟୋତ୍ସ୍ନା-ବିଧୌତ ରଜନୀର ପ୍ରାକୃତିକ ମାଦକତାସହ ଆଦିମ ନରନାରୀଙ୍କ ସମ୍ମିଳିତ ନୃତ୍ୟ, ଏବଂ ନୃତ୍ୟସହ ସୁରସୁଲଳିତ ସଂଗୀତ—ଏହାହିଁ ଆଦିମ ମାନଙ୍କର ସର୍ବୋତ୍କୃଷ୍ଟ ଆମୋଦ ପ୍ରମୋଦ । କର୍ମକ୍ଳାନ୍ତ ଜୀବନ ମଧ୍ୟରେ ନୃତ୍ୟଗୀତ ସେମାନଙ୍କର ଆନନ୍ଦ ଏବଂ ଏହି ଆନନ୍ଦପୂର୍ଣ୍ଣ ନୃତ୍ୟଗୀତ ସେମାନଙ୍କର ଶ୍ରେଷ୍ଠ ଉତ୍ସବ ।

ଏହାହିଁ ଚିରନ୍ତନୀ ଆଦିମ ସଂସ୍କାରର କ୍ଷୀଣାଭାସ ମାତ୍ର । ପରିଶେଷରେ ଏତିକି ଦ୍ରଷ୍ଟବ୍ୟ ଯେ ଅନାଦି ଆଦିମକାଳରୁ ଉତ୍କଳ-ଭୂମି ଆଦିମମାନଙ୍କର କ୍ରୀଡ଼ାଭୂମି ହୋଇଆସିଛି । ଦ୍ରାବିଡ଼ ଓ ଆର୍ଯ୍ୟମାନଙ୍କର ଆସିବାର ବହୁପୂର୍ବରୁ ଏମାନେ ହୁଏତ ଏ ଦେଶରେ ସମତଳ ଭୂମିରେ ବସବାସ କରୁଥିଲେ । କିନ୍ତୁ କାଳକ୍ରମେ ସେମାନଙ୍କ ଦ୍ୱାରା ବିତାଡ଼ିତ ହୋଇ ଉତ୍କଳର ଗିରିବନରେ ଆଶ୍ରୟ ନେଇ ସେହି ଦୁର୍ଗମ ଅଞ୍ଚଳରେ ବସବାସ କରି ଆସୁଅଛନ୍ତି । ହଜାର ହଜାର ବର୍ଷ ପୂର୍ବେ ଖ୍ରୀଷ୍ଟାବ୍ଦ ଏହି ଆଦିମମାନଙ୍କୁ ଆର୍ଯ୍ୟମାନେ 'ଦସ୍ୟୁ' ନାମରେ ଅଖ୍ୟାତ କରିଥିଲେ । ପୌରାଣିକ ଯୁଗରେ ଆର୍ଯ୍ୟସମ୍ରାଟ ରାମଚନ୍ଦ୍ରଙ୍କର ଦ୍ରାବିଡ଼ ବା ରାକ୍ଷସମାନଙ୍କ ବିରୁଦ୍ଧରେ ଅଭିଯାନ ବେଳେ ଏହି ଆଦିମମାନେହିଁ ତାହାଙ୍କର ବାନରବାହିନୀ ଗଠନ

କରି ଥିବାର ଅନୁମାନ । ଇତିହାସ ଚକ୍ଷୁରେ ରାମଚନ୍ଦ୍ର ଭଗବାନଙ୍କର ଅବତାର ନୁହନ୍ତି, ସେ ଆର୍ଯ୍ୟମାନଙ୍କର ରାଜା ମାତ୍ର । ରାବଣ ରାକ୍ଷସ-ସମ୍ରାଟ ନୁହନ୍ତି, ଆର୍ଯ୍ୟ-ବିଦ୍ୱେଷୀ ଜନୈକ ଶକ୍ତିଶାଳୀ ଦ୍ରାବିଡ଼ ସମ୍ରାଟ; ଏବଂ ହନୁମାନ, ବାଳି, ସୁଗ୍ରୀବ ଏବଂ ଅଙ୍ଗଦ ଏମାନେ ବଣ ଜଙ୍ଗଲର ବାନର ନୁହନ୍ତି, ଏମାନେ ଦାକ୍ଷିଣାତ୍ୟର ପର୍ବତନିବାସୀ ଆଦିମ ଅଧିବାସୀ । ମହାପୁରାଣ ରାମାୟଣର ଏହାହିଁ ଐତିହାସିକ ମେରୁଦଣ୍ଡ । ଇତିହାସଯୁଗର ଆରମ୍ଭରେ ଆଦିମମାନଙ୍କୁ ଉତ୍କଳର ପାର୍ବତ୍ୟାଞ୍ଚଳରେ ବସବାସ କରୁଥିବାର ଦେଖାଯାଇଛି । ବିଶେଷତଃ ଉତ୍କଳର ମଧ୍ୟାଞ୍ଚଳ ଅତି ପ୍ରାଚୀନ କାଳରେ ଶବରମାନଙ୍କ ଦ୍ୱାରା ଅଧ୍ୟୁଷିତ ହୋଇଥିଲା ବୋଲି ପ୍ରାଚୀନ ପୁରାଣମାନଙ୍କରୁ ଜଣାଯାଏ ।

ଖ୍ରୀଷ୍ଟଯୁଗର କେତେକ ଶତାବ୍ଦୀ ପୂର୍ବେ ଏବଂ ପରେ ଯେଉଁସବୁ ଗ୍ରୀକ୍ ଭୌଗୋଳିକ ଏବଂ ଐତିହାସିକ ଭାରତବର୍ଷପରେ ଦୃଷ୍ଟିପାତ କରିଥିଲେ ସେମାନଙ୍କ ମଧ୍ୟରୁ ଅନେକଙ୍କ ବିବରଣୀରୁ ଉତ୍କଳରେ ଏହି ଶବରମାନଙ୍କର ନିବାସ ବିଷୟ ପ୍ରତ୍ୟକ୍ଷ ଏବଂ ପରୋକ୍ଷ ଭାବେ ଜାଣିବାକୁ ମିଳେ । ସେହି ପ୍ରାଚୀନ କାଳରୁ ଆଜିପର୍ଯ୍ୟନ୍ତ ଶବର ଏବଂ ଅପର ଆଦିମ ଗୋଷ୍ଠୀମାନ ଉତ୍କଳର ଗଡ଼ଜାତ ଅଞ୍ଚଳରେ ବସବାସ କରି ଆସୁଛନ୍ତି । ଆଜି ଓଡ଼ିଶାର ଗଡ଼ଜାତ ଅଞ୍ଚଳରେ ଆଦିବାସୀମାନେହିଁ ସଂଖ୍ୟାଗରିଷ୍ଠ ଅଧିବାସୀ । ଇତିହାସ ଯୁଗରେ ଆଦିମମାନେ ଉତ୍କଳୀୟ ରାଷ୍ଟ୍ରନୀତି ସହ ପ୍ରାୟ ସଂପୃକ୍ତ ରହି ନାହାନ୍ତି କହିଲେ ଚଳେ । କିନ୍ତୁ ଉତ୍କଳୀୟ ଧର୍ମ ଓ ସଂସ୍କୃତି ଉପରେ ଯେ ସେମାନଙ୍କର କିଛି ନା କିଛି ପ୍ରଭାବ ନପଡ଼ିଛି ସେ କଥା କହିବା ଅସମ୍ଭବ । ଭାରତର ଅନ୍ୟାନ୍ୟ ଖଣ୍ଡରେ ଆଦିମମାନଙ୍କର ପ୍ରଭାବ ଯେପରି ଭାବରେ ଏବଂ ଯେତିକି ମାତ୍ରାରେ ପଡ଼ିଥାଉନା କାହିଁକି ଉତ୍କଳଖଣ୍ଡରେ ଯେ ସେ ପ୍ରଭାବର ଯଥେଷ୍ଟ ଗୁରୁତ୍ୱ ଅଛି

ଏଥିରେ ସନ୍ଦେହ ନାହିଁ । ଏତିକି କହିଲେ ଯଥେଷ୍ଟ ହେବ ଯେ ଯୁଗ ଯୁଗ ଧରି ଉତ୍କଳୀୟମାନଙ୍କର ପରମ ଆରାଧ୍ୟ ଜଗନ୍ନାଥ ମଧ୍ୟ ଦିନେ ଏ ଦେଶର ଶବରମାନଙ୍କ ଦ୍ୱାରା ଦେବତା-ରୂପେ ପୂଜା ପାଉଥିଲେ ଏବଂ ସେହି ଶବରମାନଙ୍କ ବଂଶଧରମାନେ ଆଜି ମଧ୍ୟ ଜଗନ୍ନାଥଙ୍କ ସେବକ, ଏହା ଉତ୍କଳର ଜନଶ୍ରୁତିରୁ ଭଲରୂପେ ଜଣାଯାଏ ।

ପ୍ରଶ୍ନ—୧ । ଆଦିମମାନଙ୍କର ସଭ୍ୟତା ଓ ଆମ୍ଭମାନଙ୍କ ସଭ୍ୟତା ମଧ୍ୟରେ କି ପାର୍ଥକ୍ୟ ପରିଦୃଷ୍ଟ ହୋଇଥାଏ ?

୨ । ଆଦିବାସୀମାନଙ୍କର ବାସସ୍ଥଳୀ, ଖାଦ୍ୟସଂଗ୍ରହ ଓ ବେଶଭୂଷା ସମ୍ବନ୍ଧରେ ପଠିତ ବିଷୟରେ ଯାହା ଉଲ୍ଲେଖ କରାଯାଇଛି ତାହା ପ୍ରଦାନକର ?

୩ । ଆଦିମ ମନୁଷ୍ୟ ବନ ଜଙ୍ଗଲରେ ଭ୍ରମଣ କରୁଥିଲେ ସୁଦ୍ଧା ସେମାନଙ୍କଠାରେ ଧର୍ମବିଶ୍ୱାସ ଓ କଳାକୌଶଳର ଅଭାବ ନ ଥିଲା । ଏହା କେତେଦୂର ସତ୍ୟ ?

୪ । ଆଦିମାନବର କାଳକୁ ପ୍ରସ୍ତରଯୁଗ ନାମରେ ଅଭିହିତ କରାଯିବାର କାରଣ କ'ଣ ?

—※—

## ଜୀବ ଜଗତର କ୍ରମବିକାଶ

ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଆକାଶର ଅସୀମ ଶୂନ୍ୟତା ମଧ୍ୟରେ ଆମେ ଦେଖିବାକୁ ପାଉ ଅସଂଖ୍ୟ ଗ୍ରହ, ଉପଗ୍ରହ ଓ ନକ୍ଷତ୍ର । ପୃଥିବୀ, ମଙ୍ଗଳ, ବୁଧ ଇତ୍ୟାଦି ଗ୍ରହମାନଙ୍କ କେନ୍ଦ୍ରରେ ସୂର୍ଯ୍ୟ ବିଦ୍ୟମାନ ରହି ଏକ ସୌରଜଗତର ସୃଷ୍ଟି କରିଛନ୍ତି ।

ନକ୍ଷତ୍ରମାନେ ପ୍ରତ୍ୟେକେ ସୂର୍ଯ୍ୟ ପରି ଏକ ଏକ ସୌରଜଗତର କେନ୍ଦ୍ର ରୂପେ ଅବସ୍ଥିତ । ଏମାନଙ୍କ ବ୍ୟତୀତ ସେହି ଶୂନ୍ୟ ଆକାଶରେ ଆମର ଦୃଷ୍ଟିଗୋଚର ହୋଇଥାଏ, କେତେକ ଜ୍ୱଳନ୍ତ, ବାଷ୍ପମୟ, ଘୂର୍ଣ୍ଣାୟମାନ ପଦାର୍ଥ । ଏଗୁଡ଼ିକୁ 'ନେବୁଲା' (Nebulae) କୁହାଯାଏ । ବୈଜ୍ଞାନିକମାନଙ୍କ ମତରେ ଆମର ପୃଥିବୀ ଦିନେ ଏହି ଅବସ୍ଥାରେ, ସୂର୍ଯ୍ୟର ଅଂଶବିଶେଷ ଥିଲା । ତା'ପରେ ସୂର୍ଯ୍ୟଠାରୁ ବିଚ୍ଛିନ୍ନ ହୋଇ ଅନ୍ୟାନ୍ୟ ଗ୍ରହମାନଙ୍କ ପରି ସୂର୍ଯ୍ୟର ଚତୁର୍ଦ୍ଦିଗରେ ଆବର୍ତ୍ତିନ କରୁ କରୁ କାଳକ୍ରମେ ତାହା ଶୀତଳ ହେଲା । ଏ ହେଉଛି କୋଟି କୋଟି ବର୍ଷର ଇତିହାସ ଏବଂ ଏହା ଲକ୍ଷ ଲକ୍ଷ ବର୍ଷ ପୂର୍ବେ ସଂଘଟିତ ହୋଇଛି । ପୃଥିବୀ ପ୍ରଥମେ ଅପାର ସାଗରପୂର୍ଣ୍ଣ ଥିଲା; ସ୍ଥଳ ଭାଗର ପରିମାଣ ଥିଲା ଅତ୍ୟନ୍ତ ଅଳ୍ପ । ସେତେବେଳେ ଏହି ପୃଥିବୀବକ୍ଷ ରୁକ୍ଷ, ପ୍ରସ୍ତରମୟ ଏବଂ ଜୀବଶୂନ୍ୟ । କେଉଁ ସମୟରେ, କିପରି ଭାବରେ ଓ କି ରୂପେ ଯେ ପୃଥିବୀରେ ପ୍ରଥମ-ଜୀବର ଆବିର୍ଭାବ ହେଲା, ସେ ବିଷୟରେ ବିଜ୍ଞାନ ଅଜ୍ଞ । ମାତ୍ର ବୈଜ୍ଞାନିକମାନେ କଳ୍ପନା କରନ୍ତି ଯେ ପୃଥିବୀସ୍ଥ ଅସୀମ ସାଗରର କେଉଁ ଏକ କୋଣରେ ବିଶ୍ୱର ଅନନ୍ତ ଜଡ଼ତା ଭଙ୍ଗକରି କୌଣସି ଏକକୋଷୀ ଜୀବରୂପେ ସୃଷ୍ଟିର ପ୍ରଥମ ଜୀବ ଆବିର୍ଭୂତ ହୋଇଥିଲା । ତା ପରେ ପାରିପର୍ଶ୍ୱିକ ଅବସ୍ଥାର ପରିବର୍ତ୍ତିନ ସଙ୍ଗେ ଛନ୍ଦ ମିଳାଇ ବିଭିନ୍ନ ଜାତିର ଜୀବ—ପ୍ରାଣୀ ବା ଉଦ୍‌ଭିଦର ସୃଷ୍ଟି ହେବା ସ୍ୱାଭାବିକ ।

କୌଣସି ଜୀବର ଦେହାବଶେଷ ଶୀଳାବକ୍ଷରେ ତାର ଅନୁରୂପ ଚିହ୍ନର ସୂଚନା ଦେଉଥିବା ସ୍ଥଳରେ ସୃଷ୍ଟିର ଜୀବନ୍ତ ଇତିହାସର ପୃଷ୍ଠା ଉନ୍ମୁକ୍ତ ହୁଏ । ସମ୍ଭବତଃ କୌଣସି ଜୀବ ତାର ମୃତ୍ୟୁପରେ ନଦୀ କିମ୍ବା ଅନ୍ୟ ସ୍ରୋତଦ୍ୱାରା ଆନୀତ ହୋଇ ସମୁଦ୍ର

ବକ୍ଷରେ ସମାଧିସ୍ଥ ହୁଏ । କାଳକ୍ରମେ ସ୍ତର ସ୍ତର ମୃତ୍ତିକା ସ୍ତୂପୀଭୂତ ହୋଇ ଉକ୍ତ ଜୀବକୁ କଙ୍କାଳ ବା କଠିନ ଅଂଶାବଶେଷରେ ପରିଣତ କରେ । ଜଳ ଓ ଭୂପୃଷ୍ଠ ତଥା ଭୂଗର୍ଭର ଚାପ ଏହି କଙ୍କାଳକୁ ପରିବର୍ତ୍ତନ କରି (Fossil) "ଜୀବାଶ୍ମ"ରେ ପରିଣତ କରନ୍ତି । ଅଗ୍ନ୍ୟୁତ୍ପାତ ଅଥବା ଭୂକମ୍ପନ ଫଳରେ ଜଳମଗ୍ନ ମୃତ୍ତିକା ଉନ୍ନୀତ ହେଲେ ଏହାକୁ ସ୍ତରୀଭୂତ ପ୍ରସ୍ତର କୁହାଯାଏ । ଏହି ସ୍ତରୀଭୂତ ଶିଳାରୁ ପୃଥିବୀର ବିଭିନ୍ନ ଦେଶରେ ଅନୁସନ୍ଧିତ୍ସୁ ଭୂତତ୍ତ୍ୱବିତଗଣ ଜୀବାଶ୍ମମାନ ଉଦ୍ଧାର କରି ଆମ୍ଭମାନଙ୍କୁ ଯେଉଁ ଇତିହାସର ସୂଚନା ଦିଅନ୍ତି ସେଥିରୁ ସୃଷ୍ଟିର ରହସ୍ୟ ସହଜରେ ବୁଝାଯାଏ । ଏହି ପ୍ରାଗ୍‌ଐତିହାସିକ ଯୁଗର ଇତିହାସ ମାନବ-ସମାଜର ଇତିହାସକୁ ବୈଚିତ୍ର୍ୟରେ ବଳି ଯାଇଅଛି ।

ମାନବ ସମାଜର ଇତିହାସକୁ ପୁରାତନ, ମଧ୍ୟ ଓ ଆଧୁନିକ ଯୁଗରେ ବିଭକ୍ତ କଲା ପରି ଶିଳାର ଇତିହାସକୁ ମଧ୍ୟ ପୁରାଜୀବୀୟ ମଧ୍ୟଜୀବୀୟ ଓ ନବଜୀବୀୟ ଯୁଗରେ ବିଭକ୍ତ କରାଯାଏ । କିନ୍ତୁ ପାର୍ଥକ୍ୟ ହେଉଛି ଆମ ଇତିହାସର ପରିସର କେତେକ ଶତାବ୍ଦୀ ମଧ୍ୟରେ ଆବଦ୍ଧ ରହୁଥିବା ସ୍ଥଳେ ଶିଳା ସୃଷ୍ଟିର ଇତିହାସ ଅପରିସୀମ କାଳବ୍ୟାପୀ ।

ପୁରାଜୀବୀୟ ଯୁଗର ପ୍ରସ୍ତରରେ ଦେଖିବାକୁ ମିଳେ କେବଳ ଜଳଜ ଓ ଜଳଚର ଜୀବଙ୍କ ଦେହାବଶେଷ । ଏଥିରୁ ମନେ ହୁଏ ଯେ ସେ ସମୟରେ ପୃଥିବୀର ଅଧିକାଂଶ ସ୍ଥାନ ଜଳପୂର୍ଣ୍ଣ ଥିଲା ଏବଂ ଜୀବମାନେ କେବଳ ଜଳରେ ରହି ପାରୁଥିଲେ । ତତ୍କାଳୀନ ଜୀବମାନଙ୍କ ମଧ୍ୟରୁ ଜଳବୃଶ୍ଚିକ, ଜଳୋର୍ଣ୍ଣନାଭ, ଶୀର୍ଷପଦୀ ପ୍ରାଣୀ ଓ ଜେଲୀ କାଛିମ ଉର୍ଦ୍ଧିଦର ଜୀବାଶ୍ମ ମାନଙ୍କରୁ ସ୍ପଷ୍ଟ ମନେହୁଏ ଯେ

ସେସମୟର ପ୍ରଖର ରୌଦ୍ରତାପରୁ ରକ୍ଷାପାଇବା ପାଇଁ ଶରୀରରେ କଠିନ ବହିରାବରଣର ଆବଶ୍ୟକତା ହେଉଥିଲା । ଆମେରିକାର ଯେଉଁ ପ୍ରସ୍ତରସମାଧିରୁ ଉପରୋକ୍ତ ଜୀବଙ୍କର ଜୀବାଶ୍ମମାନ ମିଳିଥାଏ, ଭୂତତ୍ତ୍ୱବିତ୍‌ମାନଙ୍କ ମତରେ ସେହି ପ୍ରସ୍ତର ଅନ୍ୟୂନ ପଚିଶ କୋଟି ବର୍ଷ ପୂର୍ବର ଐତିହାସିକ ବାର୍ତ୍ତାବହ ।

ଏହାପରେ କ୍ରମେ ସେହି ସାଗରମାନଙ୍କରେ ଏକ ନୂତନ ପ୍ରାଣୀଜାତି ଦେଖା ଦେଇଥିଲେ । ସେମାନଙ୍କର ଚକ୍ଷୁ ଉନ୍ନତ, ମୁଖଗହ୍ୱର ସୁବୃହତ ଓ ଦନ୍ତପୂର୍ଣ୍ଣ; ଲାଞ୍ଜ ରେଖା ହୋଇଥିବାରୁ ଦ୍ରୁତ ବେଗରେ ଗମନ ପାଇଁ ତାହା ସେମାନଙ୍କୁ ସାହାଯ୍ୟ କରୁଥିଲା । ତେଣୁ ସେମାନେ ଅନ୍ୟ ପ୍ରାଣୀମାନଙ୍କୁ ଅନୁଧାବନ କରି ସହଜରେ ସେମାନଙ୍କୁ ଶିକାର କରି ପାରୁଥିଲେ । ପ୍ରାଣୀ ବା ଶୈବାଳଜାତୀୟ ଖାଦ୍ୟର ପ୍ରାଚୁର୍ଯ୍ୟ ତଥା ଅନ୍ୟ ସମସ୍ତ ପ୍ରାକୃତିକ ସୁବିଧାର ସାହାଯ୍ୟ ନେଇ ସେମାନେ ବଂଶବୃଦ୍ଧିର ସୁଯୋଗ ପାଇଥିଲେ । ଏମାନେ ହେଉଛନ୍ତି ମତ୍ସ୍ୟଜାତୀୟ ପ୍ରାଣୀ । ମେରୁଦଣ୍ଡୀ ପ୍ରାଣୀମାନଙ୍କ ମଧ୍ୟରୁ ଏହିମାନେ ହିଁ ପ୍ରଥମେ ପୃଥିବୀରେ ଦେଖା ଦେଇଥିଲେ । ସେ ସମୟର ଶିଳାରୁ ମିଳୁଥିବା ଜୀବାଶ୍ମରେ ମତ୍ସ୍ୟମାନଙ୍କ କଙ୍କାଳ ଏତେ ଅଧିକ ପରିମାଣରେ ପରିଲକ୍ଷିତ ହୁଏ ଯେ ସେହି ଯୁଗକୁ ଯଥାର୍ଥରେ "ମତ୍ସ୍ୟ ପ୍ରଧାନ ଯୁଗ" କୁହାଯାଇ ପାରେ ।

ସୂର୍ଯ୍ୟର ତାପହ୍ରାସ ଯୋଗୁଁ ବା ଅନ୍ୟ କୌଣସି କାରଣରୁ ହେଉ ପୃଥିବୀସ୍ଥ ଜଳରାଶି ଏହାପରେ ଘନୀଭୂତ ହୋଇ ତୁଷାରରେ ପରିଣତ ହୋଇଗଲା । ପୃଥିବୀଇତିହାସରେ ଏହିପରି "ତୁଷାର-ଯୁଗ" ବାରମ୍ବାର ପରିଲକ୍ଷିତ ହୋଇଛି ଏବଂ ପ୍ରତ୍ୟେକ ତୁଷାର-ଯୁଗର ପ୍ରାନ୍ତ ଭାଗରେ ଜୀବଜଗତରେ ବିଶେଷ ପରିବର୍ତ୍ତନର

ସୂଚନା ମିଳନ୍ତି । ପ୍ରଥମ ତୁଷାରଯୁଗ ପରେ ଉଷ୍ଣ ଓ ଶୁଷ୍କ ଜଳବାୟୁ ପୃଥିବୀରେ ପୁନଃ ଦେଖାଦେଇଥିଲା । ଏହି ସମୟରେ ପୃଥିବୀର ଅଭ୍ୟନ୍ତରୀଣ ପରିବର୍ତ୍ତନ ହେତୁ ଅଧିକାଂଶ ସମୁଦ୍ର କ୍ରମେ ଅଗଭୀର ଓ ଶୁଷ୍କ ଅବସ୍ଥାରେ ପହଞ୍ଚିବା ଦ୍ୱାରା ଜଳରେ ନିଶ୍ୱାସ ନେଉଥିବା ମତ୍ସ୍ୟଜାତୀୟ ପ୍ରାଣୀଙ୍କର ଶ୍ୱାସ କ୍ରିୟାରେ ବାଧା ପହଞ୍ଚିଲା । ତେଣୁ ସେମାନେ ଘୋର ସଙ୍କଟର ସମ୍ମୁଖୀନ ହେଲେ । କିନ୍ତୁ ଅନ୍ୟ କେତେକ ମାଛ ଉଭୟ ଜଳ ଓ ସ୍ଥଳରେ ଶ୍ୱାସକ୍ରିୟା ଚଳାଇ ପାରିଲେ । ସେମାନେ ହେଉଛନ୍ତି "ଫୁସ୍‌ଫୁସ୍ ମାଛ", ଏମାନଙ୍କର ବଂଶଧରମାନେ ଏବେ ଦକ୍ଷିଣ ଆମେରିକା, ଆଫ୍ରିକା ଓ ଅଷ୍ଟ୍ରେଲିଆର ବୃଷ୍ଟି-ପୁଷ୍ଟ ନଦୀମାନଙ୍କରେ ଦେଖାଯାନ୍ତି ।

ଏ ପର୍ଯ୍ୟନ୍ତ ସ୍ଥଳଚର ଜୀବଙ୍କର ଆବିର୍ଭାବ ପୃଥିବୀରେ ହୋଇ ନଥିଲା । କ୍ରମେ ଗୁଳ୍ମ ବା ଫର୍ଣ୍ଣଜାତୀୟ ଗଛ ସ୍ଥଳଭାଗରେ ବୃଦ୍ଧି ପାଇଲେ ଓ ସ୍ଥଳଚର ପ୍ରାଣୀଙ୍କର ପ୍ରଥମ ପାଦଚିହ୍ନ ପୃଥିବୀପୃଷ୍ଠରେ ପଡ଼ିଲା । ଏହି ଜାତୀୟ ଜୀବମାନେ ଜଳ ନିକଟରେ ବାସ କରିଥାନ୍ତି; କାରଣ ଏମାନଙ୍କର ବାଲ୍ୟାବସ୍ଥାରେ ଜଳର ଆବଶ୍ୟକତା ହୋଇ ଥାଏ । ସ୍ଥଳଭାଗରେ ଅଳ୍ପେ ଅଳ୍ପେ ଏହି ଉଭୟଚର ଜୀବଙ୍କ ଦେହାବଶେଷ ଅଧିକ ପରିଲକ୍ଷିତ ହୁଏ । ଅମେରୁଦଣ୍ଡୀ ଜଳଚର ପ୍ରାଣୀଙ୍କ ମଧ୍ୟରୁ କେତେକ ସ୍ଥଳକୁ ଆଗମନ କରିବା ଦ୍ୱାରା ସ୍ଥଳ ଭାଗରେ ଏକ ନୂତନ ଜାତିର ପ୍ରାଣୀ ଦେଖା ଦେଲେ । ଏମାନେ ହେଉଛନ୍ତି ବିଭିନ୍ନ କୀଟ ପତଙ୍ଗଙ୍କର ପୂର୍ବ ପୁରୁଷ । ସେହି ସମୟରେ ବାସ କରୁଥିବା ଗୋଟିଏ କଙ୍କିର ଜୀବାଶ୍ମରୁ ପରିଲକ୍ଷିତ ହୁଏ ଯେ ତାହାର ଆକାର ପ୍ରାୟ ଅଢ଼େଇଫୁଟ ଥିଲା । ସେହିପରି ବେଙ୍ଗଜାତୀୟ ଉଭୟଚର ଜୀବଙ୍କ ପୂର୍ବପୁରୁଷମାନେ ଦଶଫୁଟ ଆକାର ବିଶିଷ୍ଟ ପ୍ରାଣୀ ଥିଲେ । ଏହି କୀଟ ପତଙ୍ଗ ବା ବେଙ୍ଗଜାତୀୟ ପ୍ରାଣୀମାନେ

ପୃଥିବୀରେ ରହିଅସିଛନ୍ତି ପଚାଶି ତରିଶି କୋଟି ବର୍ଷ ଧରି । ଆଜି ଆମେ ଯେଉଁ କ୍ଷୁଦ୍ରକାୟ ଗୁଳ୍ମଜାତୀୟ ଫର୍ଣ୍ଣଗଛ ଦେଖୁ ସେମାନଙ୍କର ତତ୍କାଳୀନ ପୂର୍ବ ପୁରୁଷମାନେ ଥିଲେ ଅତିକାୟ "ବୃକ୍ଷ" । ପୁରାଜୀବୀୟ ଯୁଗର ପ୍ରାନ୍ତଭାଗରେ ସେମାନଙ୍କର ବିଲୟ ଘଟିବା ପରେ କାଳକ୍ରମେ ପୃଥିବୀଗର୍ଭରେ ସମାଧିସ୍ଥ ହୋଇ ଆଜି ସେମାନେ କୋଇଲାରେ ପରିଣତ ହୋଇଛନ୍ତି ।

ଯେ କୌଣସି ତୁଷାରଯୁଗ ଜୀବ-ବିରଳ ଥିବାର ପ୍ରମାଣ ମିଳେ । ଦ୍ୱିତୀୟ ତୁଷାରଯୁଗ ପରେ ପୃଥିବୀରେ ଶୁଷ୍କ ଓ ଉଷ୍ଣ ଜଳବାୟୁର ପୁନଃ ଉଦ୍ରେକ ହୋଇଥିଲା । ଫଳରେ ଅନ୍ୟ ଏକ ଜାତିର ଅଣ୍ଡଜପ୍ରାଣୀ ଉଦ୍ଭୂତ ହୋଇଥିଲେ, ଯେଉଁମାନଙ୍କର ଶାବକ ଜଳର ଆଶ୍ରୟ ଲୋଡ଼େ ନା । ସେଥିପାଇଁ ଜଳଠାରୁ ଦୂରରେ ରହିମଧ୍ୟ ସେମାନେ ବଂଶବୃଦ୍ଧିର ସୁଯୋଗ ପାଇଥିଲେ । ସେହିପରି ତାଳଗଛ ସଦୃଶ "ସାଇକାଡ୍" ଜାତୀୟ ଅପୁଷ୍ପକ ଗଛର ସଂଖ୍ୟା ସ୍ଥଳଭାଗରେ ବୃଦ୍ଧି ପାଇଥିଲା । ଏହି ଜାତୀୟ ଜୀବମାନେ ତତ୍କାଳୀନ ପାରିପାର୍ଶ୍ୱିକତାର ସମସ୍ତ ସୁବିଧା ନେଇ କୋଟି କୋଟି ବର୍ଷ ପର୍ଯ୍ୟନ୍ତ ପୃଥିବୀର ଶ୍ରେଷ୍ଠ ଜୀବ ରୂପେ ରହି ପାରିଥିଲେ । କିନ୍ତୁ ଉଷ୍ଣ ଓ ଶୁଷ୍କ ଜଳବାୟୁ ଯୋଗୁଁ ଅଧିକାଂଶ ଉଭୟଚର ପ୍ରାଣୀ ମୃତ୍ୟୁ ବରଣ କରିଥିଲେ । ପ୍ରାୟ ପାଞ୍ଚକୋଟି ବର୍ଷ ପୂର୍ବେ ପୃଥିବୀରେ ଯେତେବେଳେ ମନୁଷ୍ୟ, ପଶୁ, ପକ୍ଷୀ ଇତ୍ୟାଦି ପ୍ରାଣୀ ବା ସପୁଷ୍ପକ କୌଣସି ଉଦ୍ଭିଦର ସତ୍ତା ନଥିଲା, ସେତେବେଳେ ଥିଲେ କେବଳ ସରୀସୃପମାନଙ୍କର ପୂର୍ବପୁରୁଷ ନାନାଜାତୀୟ ଆଶ୍ଚର୍ଯ୍ୟ ପ୍ରାଣୀ । ବୈଜ୍ଞାନିକମାନେ ସେହି ଯୁଗକୁ ମଧ୍ୟଜୀବୀୟ ଯୁଗ କହନ୍ତି ।

ମଧ୍ୟଜୀବୀୟ ଯୁଗରୁ ମିଳୁଥିବା ପ୍ରାକୃତିକ ଧ୍ୱଂସାବଶେଷ ଗୁଡ଼ିକ ମିଶରୀୟ ପିରାମିଡ଼, ଆଗ୍ରାସ୍ଥ ତାଜମହଲ ବା ନ୍ୟୁୟର୍କର ନଭଶ୍ଚୁମ୍ବୀ ପ୍ରାସାଦଠାରୁ ଅଧିକ ବିସ୍ମୟକର । ଏ ଯୁଗର ଡ଼ାଇନୋସର ନାମକ ଏକଜାତି ସରୀସୃପଙ୍କର ଜୀବାଶ୍ମ ଆମେରିକାନ୍ ମ୍ୟୁଜିଅମ୍ ବା ଯାଦୁଘରେ ସଂଗୃହୀତ ହୋଇ ରହିଅଛି । ସେହି ଜୀବାଶ୍ମମାନଙ୍କର ପରିକଳ୍ପିତ ଆକୃତି ପିଲାଦିନର ରୋମାଞ୍ଚକାରୀ ବୁଢ଼ୀମାକାହାଣୀ ପରି କାଳ୍ପନିକ ପ୍ରତୀୟମାନ ହୁଏ । ବିଭିନ୍ନ ଜୀବାଶ୍ମ ମଧ୍ୟରୁ ବ୍ରଣ୍ଟୋସରସ୍ ନାମକ ଗୋଟିଏ ପ୍ରାଣୀର ଜୀବାଶ୍ମରୁ ଅନୁମିତ ହୁଏ ଯେ ଏହାର ଦୈର୍ଘ୍ୟ ପ୍ରାୟ ସତୁରି ଫୁଟ ଓ ଶରୀରର ଭାର କୋଡ଼ିଏ ତିରିଶି ଟନ୍ ଅର୍ଥାତ୍ ଆଠ ନଅଟି ବୃହତ୍ ହସ୍ତୀର ସମଓଜନ ହୋଇଥିବ । ଡ଼ାଇପ୍ଲୋଡ଼କସ୍ ଅନ୍ୟ ଏକ ତତ୍କାଳୀନ ପ୍ରାଣୀ ଯାହାର ଦୈର୍ଘ୍ୟ ଅଶୀ ନବେ ଫୁଟ ପର୍ଯ୍ୟନ୍ତ । ସେହିପରି ଟିରାନୋସରସର ପଚିଶଫୁଟ ଦୀର୍ଘ ଶରୀର, ଚାରିଫୁଟ ଦୀର୍ଘ ତୀକ୍ଷ୍ଣ ଦନ୍ତଯୁକ୍ତ ମୁଖ ଓ ଶକ୍ତିଶାଳୀ ନଖଯୁକ୍ତ ପାଦ ଇତ୍ୟାଦି ଲକ୍ଷ୍ୟକରି ଜଣେ ବୈଜ୍ଞାନିକ କହିଛନ୍ତି ଯେ ଗତି, ଆକୃତି, ଶକ୍ତି ଓ ନୃଶଂସତାର ଏପରି ଧ୍ୱଂସକାରୀ ଜୀବନ-କଳ କେବେ ପୃଥିବୀରେ ଦେଖା ଯାଇନାହିଁ । ଏହି ପ୍ରାଣୀମାନେ ଚତୁଷ୍ପଦବିଶିଷ୍ଟ, ସର୍ପାକୃତି ଓ ବୃହଦାକାର ହେଲେ ମଧ୍ୟ ଶରୀର ତୁଳନାରେ ଏମାନଙ୍କର ମସ୍ତକ ଓ ତନ୍ମଧ୍ୟସ୍ଥ ମସ୍ତିଷ୍କ ନିତାନ୍ତ କ୍ଷୁଦ୍ର । ଷ୍ଟେଗୋସରସ୍ ନାମକ ଗୋଟିଏ ପ୍ରାଣୀର ବାଇଶଫୁଟ ବିଶିଷ୍ଟ କଣ୍ଟକାଚ୍ଛାଦିତ ଶରୀର, କିନ୍ତୁ ପକ୍ଷୀ-ମାନଙ୍କ ପରି ଚଞ୍ଚୁଯୁକ୍ତମୁଖ ଓ ମସ୍ତିଷ୍କର ଓଜନ ହୋଇଥିବ ପ୍ରାୟ ଏକ ଛଟାଙ୍କି । ଏହି ସରୀସୃପମାନଙ୍କ ମଧ୍ୟରୁ କେତେକ ପତ୍ରଭୋଜୀ, ମାଂସାସୀ, କେହି ବା ରାକ୍ଷସ ପ୍ରକୃତିର ହୋଇଥିବେ । ଏ ବିରାଟ

ଜୀବଦାନବଙ୍କର ପରସ୍ପର ସହିତ ଯୁଦ୍ଧ ପୌରାଣିକ ଯୁଦ୍ଧର ଆକାର ଧାରଣ କରିଥିବା ଅସମ୍ଭବ ନୁହେଁ ।

ଏପରି ଭୀଷଣ ଜୀବନସଂଗ୍ରାମରୁ ନିଜକୁ ବଞ୍ଚାଇବା ପାଇଁ ତଥା ଜଳରେ ଖାଦ୍ୟ-ବହୁଳତା ଲକ୍ଷ୍ୟ କରି ଅନ୍ୟ ଏକ ଜାତି ପ୍ରାଣୀ ଜଳରେ ବାସ କରୁଥିଲେ । ସେମାନେ ଆଧୁନିକ କୁମ୍ଭୀରଙ୍କ ପୂର୍ବ ପୁରୁଷ କହିଲେ ଅତ୍ୟୁକ୍ତି ହେବନାହିଁ । କିନ୍ତୁ ଆକାର ଓ ସଂଖ୍ୟା ଦୃଷ୍ଟିରୁ କୁମ୍ଭୀରମାନେ ସେମାନଙ୍କର ସମକକ୍ଷ ହେବେ ନାହିଁ । ସେହିପରି ନିଜର ରକ୍ଷଣାର୍ଥେ ଏବଂ ଭକ୍ଷ ସଂଗ୍ରହର ସୁଯୋଗ ନେଇ ପତଙ୍ଗ-ଅନୁଧାବନକାରୀ ଟେରୋସରସ୍ ନାମକ ଏକଜାତୀୟ ବିରାଟ ଲାଙ୍ଗୁଳଯୁକ୍ତ ଜୀବ ଉପରେ ଉଡ଼ିପାରୁ ଥିଲେ । ଏହି ଜଳଚର ଓ ଖେଚର ଜୀବମାନଙ୍କୁ ସେ ଯୁଗର ଜୀବନ୍ତ ଜଳପୋତ ବା ବାୟୁଯାନ କୁହା ଯାଇପାରେ ।

ଅନ୍ୟୂନ ତେରକୋଟି ବର୍ଷ ପର୍ଯ୍ୟନ୍ତ ଏହି ପୃଥିବୀ ବକ୍ଷରେ ସରୀସୃପ-ପ୍ରାଧାନ୍ୟ ଲାଗିରହିଥିଲା । ତା'ପରେ ଏକ ତୁଷାରଯୁଗ ପହଞ୍ଚିଥିଲା । ଫଳରେ ଏହି ସରୀସୃପଙ୍କର ହଠାତ୍ ଅବନତି ଘଟିଲା । ଏପରି ଅସ୍ୱାଭାବିକ ଓ ଅସାମାନ୍ୟ ଜୀବ ସେହିଦିନୁଁ ପୃଥିବୀ-ବକ୍ଷରୁ ବିଦାୟ ନେଇଛନ୍ତି । ସେମାନଙ୍କ ଆଧୁନିକ ବଂଶଧରମାନେ ଏତେ କ୍ଷୁଦ୍ର, ନଗଣ୍ୟ ଓ ଅଳ୍ପସଂଖ୍ୟକ ଯେ ବିବର୍ତ୍ତନଚକ୍ରରେ "ଅଙ୍କ ଯେ ଗଜେନ୍ଦ୍ର ସେନେ କାଲି ସେ ଫକୀର" ଉକ୍ତିଟିର ଯଥାର୍ଥତା ପ୍ରତିପାଦିତ ହୋଇଛି ।

ମଧ୍ୟଜୀବୀୟ ଯୁଗରେ ଦୈହିକ ଶକ୍ତିର ଚରମସୀମା ପହଞ୍ଚିବା ପରେ ପ୍ରକୃତିରେ ଜୀବନ ସଂଗ୍ରାମର ମାନ ପରିବର୍ତ୍ତିତ ହୋଇଥିଲା । କ୍ଷୁଦ୍ରକାୟ ଅଥଚ ଅଧିକ ଧୀଶକ୍ତିସମ୍ପନ୍ନ ପ୍ରାଣୀଙ୍କର ଅଭ୍ୟୁଦୟ ହେଲା । ସେମାନେ ତୁଷାରଯୁଗ ଆରମ୍ଭରୁ ଆବିର୍ଭୂତ ହୋଇ ଥିବାର

ପ୍ରଣୋମ ରହିଛି । ଏହି ପ୍ରାଣୀମାନଙ୍କ ଶରୀର ଲୋମ ବା ପକ୍ଷୀଦ୍ୱାରା ଆବୃତ ଥିବାରୁ ସରୀସୃପମାନଙ୍କପରି ଏମାନେ ଶୈତ୍ୟାଭିଳାଷୀ ନଥିଲେ । ଏମାନଙ୍କ ଶରୀରରେ ଉଷ୍ଣରକ୍ତ ପ୍ରବାହିତ ହେଉଥିବାରୁ ଏମାନଙ୍କୁ ଶୈତ୍ୟକଷ୍ଟ ବୋଧ ହେଉ ନଥିଲା । ଜଳ, ସ୍ଥଳ ଓ ଆକାଶବ୍ୟାପୀ ସରୀସୃପମାନଙ୍କର ପତନ ବିଷୟରେ କୌଣସି ତଥ୍ୟ ଜଣାନାହିଁ । ସମ୍ଭବତଃ ସେମାନେ ଅନୁଷ୍ଣଶୋଣିତ ପ୍ରାଣୀ ହୋଇଥିବାରୁ ଶୀତକଷ୍ଟ ସହ୍ୟ କରି ନପାରି ତୁଷାରଯୁଗରେ ଜୀବନ ଦେଇଥିଲେ ଅଥବା ଅଧିକ ବୁଦ୍ଧିଶକ୍ତିସମ୍ପନ୍ନ କ୍ଷୁଦ୍ରକାୟ ଲୋମଶ ପ୍ରାଣୀମାନଙ୍କ ଦ୍ୱାରା ନିଷ୍ଠୁରଭାବେ ନିହତ ହୋଇଥିଲେ ।

ମଧ୍ୟଜୀବୀୟ ଯୁଗରୁ ନବଜୀବୀୟ ଯୁଗକୁ ପ୍ରକୃତିର ପଟ୍ଟ ପରିବର୍ତ୍ତିତ ହୋଇଥିଲା । ସେତେବେଳେ ପୃଥିବୀର ଅଭ୍ୟନ୍ତରୀଣ ପରିବର୍ତ୍ତନ ଦ୍ୱାରା ଭୂକମ୍ପ ଓ ଅଗ୍ନ୍ୟୁତ୍ପାତ ସହିତ ହିମାଳୟ, ଆଲପସ୍, ରକୀ, ଆଣ୍ଡିଜ୍ ଇତ୍ୟାଦି ପର୍ବତମାଳାର ସୃଷ୍ଟି ତଥା ମହାଦେଶ-ମାନଙ୍କର ଆଧୁନିକ ଆକାର ନିର୍ମିତ ହେଲା । ତୁଷାର ଯୁଗପରେ କ୍ରମେ ଉଷ୍ଣଜଳବାୟୁର ସୂତ୍ରପାତ ହୋଇଥିଲା । ସପୁଷ୍ପକ ଉଦ୍ଭିଦ ବିଶେଷତଃ ତୃଣଜାତୀୟ ଉଦ୍ଭିଦମାନଙ୍କର ବଂଶବୃଦ୍ଧି ଦ୍ୱାରା ପୃଥିବୀର ଶ୍ୟାମଳିମା ବୃଦ୍ଧି ପାଇଲା । ତୃଣଭୋଜୀ ପଶୁ ( ସ୍ତନ୍ୟପାୟୀ ଜୀବ ) ଓ ମଧୁପାୟୀ ପତଙ୍ଗଙ୍କର ସଂଖ୍ୟା ବୃଦ୍ଧି ପାଇଲା । ପକ୍ଷୀମାନେ ଯେ କେବେ ଆଶ୍ଚର୍ଯ୍ୟ ଭାବେ ପୃଥିବୀରେ ବହୁଳତା ଲାଭ କରିଥିଲେ ତାହାର ପ୍ରମାଣ ନାହିଁ । ଏହି ନବଜୀବୀୟ ଯୁଗରେ ସ୍ତନ୍ୟପାୟୀ ପଶୁମାନେ ହିଁ ଅଧିକ ପରିମାଣରେ ସଂଖ୍ୟାବୃଦ୍ଧି କରିଥିଲେ । ସେମାନେ ଉଷ୍ଣଶୋଣିତ ପ୍ରାଣୀ ଏବଂ ଶାବକମାନଙ୍କୁ ସ୍ତନ୍ୟପାନ ତଥା ଲାଳନ ପାଳନ କରି ଓ ସଂଘବଦ୍ଧ ଭାବେ ବାସ କରିବାର ସୁଯୋଗ ନେଇ ପୃଥିବୀକୁ ସେମାନଙ୍କ ବଂଶଧରଙ୍କ ଦ୍ୱାରା ସେମାନେ

ପରିପୂର୍ଣ୍ଣ କରିଦେଲେ । ନବଜୀବୀୟ ଯୁଗର ଅନ୍ୟନାମ ସେହି କାରଣରୁ "ସ୍ତନ୍ୟପାୟୀ ପ୍ରାଣୀ" ଯୁଗ । ଅଷ୍ଟର୍ଯା, ପ୍ରକୃତରେ ସୃଷ୍ଟିର ବୈଚିତ୍ର୍ୟ ଚରମ ସୀମାରେ ପହଞ୍ଚିଥିଲା ଯେତେବେଳେ ଚତୁର୍ଥ ଏବଂ ଶେଷ ତୁଷାର ଯୁଗ ପରେ ପରେ ଦଳେ ବାନରାକୃତ ପ୍ରାଣୀ ଇଉରୋପ ଓ ଅମେରିକାର କେତେକ ସ୍ଥାନରେ ଦୁଇ ଗୋଡ଼ରେ ଚାଲିବାକୁ ଶିଖାକଲେ । କ୍ରମେ ସେମାନଙ୍କ ଅଗ ପାଦ ଦ୍ୱୟ ଗମନ କାର୍ଯ୍ୟରୁ ବିରତ ହୋଇ ଅପେକ୍ଷାକୃତ କ୍ଷୁଦ୍ର ହେଲା ଓ ବୁଢ଼ା ଅଙ୍ଗୁଳି ସାମାନ୍ୟ ବଡ଼ ହେବା ଫଳରେ ସେମାନେ ବିଭିନ୍ନ ପଦାର୍ଥ ଧରି ଆଖି ଆଗକୁ ଆଣି ପାରିଲେ । ପ୍ରତି ପଦାର୍ଥ ଏହିପରି ହାତରେ ପରୀକ୍ଷା କରିବା ଦ୍ୱାରା ମସ୍ତିଷ୍କର କାର୍ଯ୍ୟ ବୃଦ୍ଧି ପାଇଲା, ତେଣୁ ସେମାନେ ଅସାମାନ୍ୟ ବୁଦ୍ଧିଶକ୍ତିସମ୍ପନ୍ନ "ମନୁଷ୍ୟ"ରେ ପରିଣତ ହେଲେ । ମନୁଷ୍ୟ ତାର ବୁଦ୍ଧିମତ୍ତା, ସାମାଜିକ ଜୀବନଯାପନ ଓ ବିଭିନ୍ନ ଶିକ୍ଷା ପ୍ରଣାଳୀଦ୍ୱାରା ପ୍ରାଣୀଜଗତରେ କ୍ରମବର୍ତ୍ତନର ଆଦ୍ୟରୁ ସର୍ବଶ୍ରେଷ୍ଠ ପ୍ରାଣୀ ରୂପେ ପରିଗଣିତ ହେଉଅଛି । ଏହି ବୁଦ୍ଧିମତ୍ତାର ସୁଯୋଗ ନେଇ ମନୁଷ୍ୟ ଆଜି ହସ୍ତୀ, ବ୍ୟାଘ୍ର, ସିଂହ ପ୍ରଭୃତି ସ୍ଥୂଳକାୟ ଓ ହିଂସ୍ର ପ୍ରାଣୀମାନଙ୍କୁ ଆୟତ୍ତ କରିଛି । ଜଳ, ସ୍ଥଳ ଓ ଆକାଶରେ ନିଜର ଏକଚ୍ଛତ୍ର ଆଧିପତ୍ୟ ପ୍ରତିଷ୍ଠା କରିଛି, ଏପରିକି ପ୍ରକୃତି ବିରୁଦ୍ଧରେ ମଧ୍ୟ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇ ପାରିଛି । ବିବର୍ତ୍ତନରେ ଏହି ମନୁଷ୍ୟ-ପ୍ରାଧାନ୍ୟ ଆଧୁନିକ ଯୁଗକୁ 'ବୁଦ୍ଧିମତ୍ତା-ଯୁଗ' କୁହାଯାଏ ।

ସୃଷ୍ଟିର ବୈଚିତ୍ର୍ୟ କେବଳ ଶିଳାର ଇତିହାସରେ ନାହିଁ । ଆଜି ପ୍ରତ୍ୟକ୍ଷ ସଂଗ୍ରାମରେ ପର୍ଯ୍ୟବସିତ ହୋଇଛି । ମନୁଷ୍ୟ ନିଜର ବୁଦ୍ଧିମତ୍ତା ନିମନ୍ତେ ଯେତେ ଗର୍ବ କରୁଥିଲେ ସୁଦ୍ଧା କ୍ଷୁଦ୍ରାଦପି କ୍ଷୁଦ୍ର ଅଣୁବିକ ଜୀବମାନଙ୍କଦ୍ୱାରା ପରାଭୂତ ହୋଇ ଦୈନିକ ଶତ ଶତ

ସଂଖ୍ୟାରେ ମୃତ୍ୟୁ ବରଣ କରୁଛନ୍ତି । ଆଜି ଅଣବିକ ଯୁଦ୍ଧ ଅପେକ୍ଷା ଜୈବ ଯୁଦ୍ଧର ଗୁରୁତ୍ୱ ଅତ୍ୟଧିକ । ମ୍ୟାଲେରିଆ, ଟାଇଫଏଡ୍, ପ୍ଲେଗ୍, ଯକ୍ଷ୍ମା, ବସନ୍ତ, କଲେରା ଇତ୍ୟାଦି ରୋଗର ଜୀବାଣୁ ଆଜି ମନୁଷ୍ୟର ଶ୍ରେଷ୍ଠ ଶତ୍ରୁ । ଏ ଯୁଦ୍ଧ ପାଇଁ ମନୁଷ୍ୟ ଧନ, ଜନ ଓ ମନ ସମସ୍ତ ନିୟୋଜିତ କରି ନିଜକୁ ବିଜୟୀ କରି ନ ପାରିଲେ କିଏ ଜାଣେ ସେ ଦିନେ ସେହି ସରୀସୃପ ମାନଙ୍କ ପରି ଧରାପୃଷ୍ଠରୁ ଚିରଦିନ ପାଇଁ ଲୁପ୍ତ ହୋଇ ନ ଯିବ ।

ପ୍ରଶ୍ନ—୧ । 'ଜୀବାଣୁ' କାହାକୁ କହନ୍ତି ଓ ଜୀବାଣୁର ପ୍ରୟୋଜନୀୟତା କଣ ?

୨ । ପୃଥିବୀରୁ ଅନେକ ପ୍ରାଣୀ ଓ ଉଦ୍‌ଭିଦ ଲୋପ ହୋଇ ଯାଇଥିବାର କାରଣ କଣ ?

୩ । ପ୍ରାଣୀମାନଙ୍କ ମଧ୍ୟରୁ ମନୁଷ୍ୟ କାହିଁକି ଓ କିପରି ସର୍ବଶ୍ରେଷ୍ଠ ପ୍ରାଣୀ ହୋଇ ପାରିଛି, ବର୍ଣ୍ଣନା କର ।

୪ । ସ୍ତନ୍ୟପାୟୀ ଓ ଅଣ୍ଡଜ ପ୍ରାଣୀ ମାନଙ୍କ ମଧ୍ୟରେ ପ୍ରକୃତିଗତ ପ୍ରଭେଦ କଣ ?

୫ । ଭୂତତ୍ତ୍ୱବିଦ୍, ଅନୁସନ୍ଧିତ୍ସୁ, ସ୍ତରୀଭୂତ, ମେରୁଦଣ୍ଡୀ, ପାରିପାର୍ଶ୍ୱିକତା, ସରୀସୃପ, ବିବର୍ତ୍ତନ, ଅନୁଷ୍ଣଶୋଣିତ, ପ୍ରଭୃତି ଶବ୍ଦର ତାତ୍ପର୍ଯ୍ୟ ବର୍ଣ୍ଣନା କର ।

---

## ଆବିଷ୍କାର-ଆକସ୍ମିକତା

ବୈଜ୍ଞାନିକମାନଙ୍କର ଚିନ୍ତା ଓ ଶ୍ରମର ପରିଣତି କ୍ରମେ ମନୁଷ୍ୟର ଜ୍ଞାନ ବିଜ୍ଞାନର ପରିସରକୁ ବିସ୍ତୃତତର କରୁଅଛି । ସେମାନଙ୍କ ଆବିଷ୍କାର ଦର୍ଶନ କରି ଜଗତ ଆଜି ବିସ୍ମିତ । ବୈଜ୍ଞାନିକ-

ମାନଙ୍କର ଏଇ ସବୁ ଅତ୍ୟଦ୍‌ଭୁତ ଆବିଷ୍କାର ମାନଙ୍କପରି ସେଇ ଆବିଷ୍କାର ଗୁଡ଼ିକର ଇତିହାସ ମଧ୍ୟ କମ୍ ବିସ୍ମୟକର ନୁହେଁ ।

'ବୈଜ୍ଞାନିକମାନଙ୍କର କେତେକ ଆବିଷ୍କାର ଅତି ଆକସ୍ମିକ ଭାବରେହିଁ ଘଟିଅଛି । ବହୁବର୍ଷର ନିରବଚ୍ଛିନ୍ନ ସାଧନାରେ ଯେଉଁ ଅସମ୍ଭବ ସମ୍ଭବ ହୋଇ ପାରିନାହିଁ, ଯେଉଁ ରହସ୍ୟର ମର୍ମୋଦ୍‌ଘାଟନ ବ୍ୟର୍ଥ ହୋଇଛି, ଅନେକ ସମୟରେ ଅତି ଆକସ୍ମିକ ଭାବରେ ବୈଜ୍ଞାନିକମାନେ ତାହାର ସମାଧାନ କରିଛନ୍ତି । ହୁଏତ ଜଣେ ବୈଜ୍ଞାନିକ କୌଣସି ଏକ ତତ୍ତ୍ୱ ଖୋଜି ଖୋଜି ଶେଷରେ ବିଫଳ ହୋଇ ଯାଇଛନ୍ତି, କୌଣସି ମତେ ଉପଯୁକ୍ତ ପଥର ସନ୍ଧାନ ପାଉନାହାନ୍ତି; ସେତିକିବେଳେ ହଠାତ୍ ଅପ୍ରତ୍ୟାଶିତ ଭାବରେ ସଂପୂର୍ଣ୍ଣ ଏକ ଭିନ୍ନ ପନ୍ଥାରେ ସେ ତାଙ୍କର ପ୍ରାର୍ଥିତ ବିଷୟ ପ୍ରକୃତ ସତ୍ୟକୁ ଖୋଜି ପାଇଛନ୍ତି । ଏପରି ଘଟଣାରେ, ସେ ସବୁ ବିଚିତ୍ର ଆବିଷ୍କାରକୁ ଆକସ୍ମିକ ବା ଅପ୍ରତ୍ୟାଶିତ କହିବା ଛଡ଼ା ଉପାୟ ନାହିଁ ।'

କିନ୍ତୁ ଏଥିରୁ କେହି ଯେପରି ମନେ ନ କରନ୍ତି ଯେ ପ୍ରତ୍ୟେକ ଆବିଷ୍କାର ପଛରେ ଏହିପରି ଆକସ୍ମିକ ସଫଳତା ବିଦ୍ୟମାନ ଏବଂ ପ୍ରତ୍ୟେକ ଘଟଣା ଏହିପରି ଦୈବକ୍ରମେ ଘଟିଥାଏ । ପରନ୍ତୁ ବୈଜ୍ଞାନିକମାନେ ଯଦିଓ କେତେକ ସମୟରେ ଏହିପରି ଆକସ୍ମିକ ଓ ଅପ୍ରତ୍ୟାଶିତ ଭାବରେ ସତ୍ୟର ପଥ ଆବିଷ୍କାର କରିଛନ୍ତି, ତଥାପି ସେମାନେ ଅଦୃଷ୍ଟ ଉପରେ ସ୍ୱୀୟ ପ୍ରଜ୍ଞା, ଅନୁଶୀଳନ ଓ ପରୀକ୍ଷାତ୍ମକ ଗବେଷଣା ଉପରେ ଦୃଢ଼ଆସ୍ଥା ସ୍ଥାପନ କରିଥାନ୍ତି । ହଠାତ୍ କୌଣସି ଘଟଣା ବା ବିଷୟରେ ସଂଧାନ ପାଇଲେ ବା ସମ୍ମୁଖୀନ ହେଲେ ତାହାକୁ ଯଥେଷ୍ଟ ଗୁରୁତ୍ୱ ଦେଇ ପର୍ଯ୍ୟବେକ୍ଷଣ କରିବା ବୈଜ୍ଞାନିକର ଧର୍ମ । ପ୍ରକୃତ ବୈଜ୍ଞାନିକ, ଆକସ୍ମିକତାର ଦାନକୁ ଅଳସ ଭାବେ ଉପେକ୍ଷା ନ କରି ଧୈର୍ଯ୍ୟର ସହିତ ତାହାର ସଦୁପଯୋଗ କରିଥାନ୍ତି ।

ତେଣୁ ବୈଜ୍ଞାନିକମାନଙ୍କର ସାଫଲ୍ୟ ଦେଖି ମନେହୁଏ, ଯେପରି ଦୈବ ସେମାନଙ୍କୁ ଏହିପରି ଆକସ୍ମିକ ସୁଯୋଗ ଦେଇ ପରିଣାମରେ କୃତକାର୍ଯ୍ୟତା ଆଡ଼କୁ ଅଗ୍ରସର କରାଇବାକୁ ସର୍ବଦା ପ୍ରସ୍ତୁତ । ଏହିପରି ମାତ୍ର କେତୋଟି ଅବସ୍ଥାରର ବର୍ଣ୍ଣନା ଏଠାରେ ପ୍ରଦତ୍ତ ହେଲା ।

ଇରା ରେମସନ ନାମକ ଜଣେ ଆମେରିକାବାସୀ ବୈଜ୍ଞାନିକ ଅଲକାତରା ବିଷୟରେ ଗବେଷଣା କରୁଥିଲେ । ଦିନେ ଖୁବ୍ କ୍ଷୁଧାର୍ତ୍ତ ହୋଇ ସେ ଏକ ହୋଟେଲରେ ଉପସ୍ଥିତ ହେଲେ । ସେଠାରେ ଖାଇବାକୁ ଆରମ୍ଭକରି ଦେଖନ୍ତି ତ ଖାଇବା ଜିନିଷସବୁ ଖୁବ୍ ମିଠା ଲାଗୁଛି । ଯେଉଁ ଜିନିଷଟି ଖାଇବାକୁ ଆରମ୍ଭକରନ୍ତି ତାହା ତାଙ୍କୁ ଖୁବ୍ ମିଠା ଲାଗିଲା । ଅତି ମିଠା ଯୋଗୁଁ ସେ ଶେଷକୁ ଖାଇବା ଅସମ୍ଭବ ମନେକଲେ । ବିରକ୍ତିର ସହିତ ସେ ହୋଟେଲ ଅଧିକାରୀଙ୍କୁ ଡକାଇ ଭର୍ତ୍ସନା କଲେ । ହୋଟେଲମାଲିକ ବିସ୍ମିତ ହେଲେ । କେଉଁ ଖାଦ୍ୟରେ ତ ମାତ୍ରାଧିକ ଚିନି ଦିଆ ହୋଇନାହିଁ । ତା'ଛଡ଼ା ରୁଟିରେ ତ କଦାପି ମିଠା ଦିଆ ହୁଏନା, ତାହା ମିଠା ଲାଗିବ ବା କିପରି ? ହୋଟେଲମାଲିକ କିଛି ସ୍ଥିର କରିପାରିଲେ ନାହିଁ ।

ରେମ୍‌ସନ୍ ଶେଷକୁ ନ ଖାଇପାରି ବିରକ୍ତିରେ ପାଣି ପିଇ କାମକୁ ବାହାରିଲେ । ସେତିକିବେଳେ ହଠାତ୍ ତାଙ୍କ ନିଜ ଅଙ୍ଗୁଳିଟି ତାଙ୍କ ମୁହଁରେ ଲାଗିଗଲା । ଏ କଣ ! ଆଙ୍ଗୁଠିଟା ଏତେ ମିଠା ଲାଗୁଛି କାହିଁକି ? ପୁଣି ଅଙ୍ଗୁଠି ଚାଖି ସେ ଏହି ମିଷ୍ଟତାର ସ୍ୱାଦ ଅନୁଭବ କଲେ । ତା'ପରେ ହାତ ଧୋଇଲେ ବି ତାହା ଦୂରହେଲା ନାହିଁ । ହଠାତ୍ ତାଙ୍କ ମନକୁ କଣ ଆସିଲା କେଜାଣି, ସେ ସଙ୍ଗେ ସଙ୍ଗେ ବୈଜ୍ଞାନିକ ପରୀକ୍ଷାଗାରକୁ (Laboratory)

ଧାଇଁଲେ । ଯେଉଁ ଜନପଦଗୁଡ଼ିକୁ ଧରି କାମ କରୁଥିଲେ ସେ ଗୁଡ଼ିକୁ ଉତ୍ତମ ରୂପେ ପରୀକ୍ଷାକଲେ । ଏହି ଅନୁସଂଧାନରୁ ସେ ସ୍ୟାକରିନ୍ ଆବିଷ୍କାର କରିଥିଲେ । ଚିନିଠାରୁ ଏହା ୩୦୦ ଗୁଣ ବେଶୀ ମିଠା ଏବଂ ଏହିପରି ଆକସ୍ମିକ ଭାବରେହିଁ ତାହା ଆବିଷ୍କୃତ ହୋଇଥିଲା ।

ସେହିପରି ବୈଜ୍ଞାନିକ ହେରସେଲ୍ (Herschel) ଦିନେ ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଧୂମକେତୁମାନଙ୍କୁ ପର୍ଯ୍ୟବେକ୍ଷଣ କରୁଥିଲେ । ସେପର୍ଯ୍ୟନ୍ତ ତାଙ୍କର ଧାରଣାଥିଲା ଯେ ସୌର-ଜଗତର ସମସ୍ତ ଗ୍ରହ ଉପଗ୍ରହ ଆବିଷ୍କୃତ ହୋଇ ସାରିଛନ୍ତି । କିନ୍ତୁ ହଠାତ୍ ତାଙ୍କ ଦୂରବୀକ୍ଷଣର ଦୃଷ୍ଟିପଥରେ ଆବିର୍ଭୂତ ହୋଇଥିଲା ଏକ ଅନାବିଷ୍କୃତ ଗ୍ରହ । ଏହି ନୂତନ ଗ୍ରହଟି ହେଉଛି 'ୟୁରାନସ' । ସେହି ଦିନଠାରୁ ସାରା ପୃଥିବୀ ୟୁରାନସ ଗ୍ରହ ବିଷୟରେ ସବିଶେଷ ଜ୍ଞାତ ହେଲା ।

ପୂର୍ବେ ବସନ୍ତରୋଗ ନିମିତ୍ତ ପ୍ରକୃଷ୍ଟ ପ୍ରତିଷେଧକ ବ୍ୟବସ୍ଥା କାହାରିକୁ ଜଣା ନ ଥିଲା । ସେତେବେଳେ ଏହି ଭୀଷଣ ସଂକ୍ରାମକ ରୋଗଟି ହଠାତ୍ ଉପସ୍ଥିତହେଲେ ବହୁ ଜନକ୍ଷୟ ଓ ଦେଶବ୍ୟାପୀ ଆତଙ୍କର କାରଣ ହେଉଥିଲା । ଡାକ୍ତର ଯେନର୍ (Dr. Jenner) ମଧ୍ୟ ସେହିପରି ବସନ୍ତର ପ୍ରତିଷେଧ ବିଷୟରେ ସଂପୂର୍ଣ୍ଣ ଅନଭିଜ୍ଞ ଥିଲେ । ଦୈବାତ୍ ସେ ଦିନେ ଜଣେ ମହିଳାଙ୍କଠାରୁ ଶୁଣିଲେ ଯେ ଗୋବସନ୍ତ ହେଲେ ବସନ୍ତ ହୁଏନାହିଁ । ଏହି ଶୁଣାକଥା ଉପରେ ଜେନର ବହୁ ଗବେଷଣା କରି "ଟିକା ଦାନର ମତବାଦ' ଆବିଷ୍କାର କରିଥିଲେ । ଗୋରୁଦେହରେ ବସନ୍ତ ହେଲେ, ତା ଦେହରେ ଯେଉଁସବୁ ଜୀବାଣୁ ଜାତ ହୁଅନ୍ତି ସେମାନେ ବସନ୍ତ ରୋଗର ପ୍ରତିରୋଧ କରିବାକୁ କ୍ଷମ । ସେହି ଜୀବାଣୁମାନଙ୍କୁ ଆଣି ମନୁଷ୍ୟ

ରକ୍ତରେ ଘୁଞ୍ଚିଦେଲେ ମନୁଷ୍ୟର ବସନ୍ତରୋଗ-ପ୍ରତିରୋଧ ଶକ୍ତି ବୃଦ୍ଧି ପାଇଥାଏ । ଏହି ଟିକାଦାନ ପଦ୍ଧତି ପ୍ରଚଳିତ ହେବାଯୋଗୁଁ ବସନ୍ତ ଆଜି ଏକ ପ୍ରତିଷେଧଯୋଗ୍ୟ ରୋଗରେ ପରିଣତ ହୋଇଅଛି ।

ସେହିପରି ଲ୍ୟୁଏନ୍ ହୋକ୍ ( Leeuwen hoek ) ଅଣୁବୀକ୍ଷଣ ଯନ୍ତ୍ର ନିର୍ମାଣ କରି ସେଥିରେ ଦିନେ କାଚ ଲଗାଇ ଲଗାଇ ହଠାତ୍ ଅଣୁବୀକ୍ଷଣିକ ପ୍ରାଣୀମାନଙ୍କୁ ଆବିଷ୍କାର କରିଥିଲେ । ସେପର୍ଯ୍ୟନ୍ତ ଜୀବାଣୁମାନଙ୍କ ବିଷୟରେ ତାଙ୍କର ଆଦୌ ଧାରଣା ନ ଥିଲା । ଏକବିନ୍ଦୁ ଜଳରେ ଅସଂଖ୍ୟ ବିଚିତ୍ର ସେହି ସଜୀବ ଜୀବାଣୁମାନଙ୍କୁ ଦେଖି ସେ ପ୍ରଥମେ ବିସ୍ମୟରେ ସ୍ତବ୍ଧ ହୋଇଯାଇଥିଲେ । ଏହି ଆବିଷ୍କାର ସଂପର୍କରେ ବହୁ ଗବେଷଣା ହୋଇ ଶେଷରେ ଜୀବାଣୁ ତତ୍ତ୍ୱ ( Becteriology )ର ପ୍ରଭୂତ ବିକାଶ ସାଧିତ ହୋଇଥିଲା ।

୧୮୯୬ ଖ୍ରୀଷ୍ଟାବ୍ଦରେ ହେନ୍‌ରି ବିକ୍ୟୋକୋରେଲ୍ ( Beoquerel ) ନାମକ ଜନୈକ ବୈଜ୍ଞାନିକ ଅନୁପ୍ରଭବସ୍ତୁ ( Phosphorescent substance ) ମାନଙ୍କ ସମ୍ପର୍କରେ ଗବେଷଣା କରୁଥିଲେ । ଏହିସବୁ ପଦାର୍ଥ ଉତ୍ତପ୍ତ ନ ହୋଇ ମଧ୍ୟ ଆଲୋକ ବିକିରଣ କରିଥାନ୍ତି । ବିକ୍ୟୋକୋରେଲ୍ ପିଚବ୍ଲେଣ୍ଡ ନାମକ ଏକ ପଦାର୍ଥକୁ ଆଲୋକରେ ରଖି ତାହାର ଆଲୋକପ୍ରଦ ଗୁଣ ପରୀକ୍ଷା କରୁଥିଲେ । କିନ୍ତୁ ଦିନେ ମେଘୁଆପାଗ ହୋଇଥିବାରୁ ସେ ଉକ୍ତ ପଦାର୍ଥଟିକୁ ଗୋଟିଏ ଫଟୋଉଠା କାଚସଙ୍ଗେ ଗୁଡ଼ାଇ ନିଜ ଟେବୁଲ୍ ଖୋପଭିତରେ ରଖି ଦେଇଥିଲେ । କେତେକ ଦିନପରେ ଉକ୍ତ କାଚଖଣ୍ଡକୁ ଧୋଇଲାବେଳେ ସେ ପିଚବ୍ଲେଣ୍ଡ ପଦାର୍ଥଟିର ପ୍ରତିକୃତି ଉକ୍ତ କାଚଖଣ୍ଡ ଉପରେ ଉତ୍ତମରୂପେ ଅଙ୍କିତହୋଇ

ଯାଉଥିବା ଦେଖି ବିସ୍ମିତ ହୋଇଗଲେ । ହଠାତ୍ ସେ ଆବିଷ୍କାର କଲେ ଯେ, ପିଚବ୍ଲେଣ୍ଡ ଏକପ୍ରକାର ଅଲୋକ ବିକିରଣ କରେ । ଏହି ଆଲୋକ ଆମ ଆଖିକୁ ପ୍ରଭାବିତ କରିପାରୁ ନଥିଲେହେଁ ଫଟୋ-ଚିତ୍ର ପ୍ଲେଟକୁ ପ୍ରଭାବିତ କରିବାକୁ କ୍ଷମ । ଏହି ଅବିଷ୍କୃତ ତଥ୍ୟକୁ ପ୍ରଫେସର କ୍ୟୁରି ଏବଂ ତାଙ୍କ ସହଧର୍ମିଣୀ ଗ୍ରହଣକରି ୟୁରାନିୟମ (Uranium) ଓ ପଲୋନିୟମ (Polinium) ଧାତୁ ଆବିଷ୍କାର କରିଥିଲେ । ଅବଶେଷରେ ମ୍ୟାଡ଼ମ କ୍ୟୁରି ଏହାର ସାହାଯ୍ୟରେ ରେଡ଼ିୟମ ଧାତୁକୁ (Radium) ଅବିଷ୍କାର କରି ଜଗତରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲେ ।

ପ୍ରଚୁର ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କରି କିପରି ତାହାକୁ ମନୁଷ୍ୟର ବ୍ୟବହାରରେ ଲଗାଯାଇ ପାରିବ ଏକଥା ପୂର୍ବେ କାହାରିକୁ ଜଣା ନ ଥିଲା । ହଠାତ କିପରି ଏକ ସାମାନ୍ୟ ଘଟଣାରେ ମନୁଷ୍ୟ ବିଦ୍ୟୁତର ଅଦ୍ଭୁତ ଶକ୍ତିର ସଂଧାନ ପାଇଥିଲା, ତାହା ଅତ୍ୟନ୍ତ କୌତୁହଳୋଦ୍ଦୀପକ । ଇଟାଲି ଦେଶର ବୋଲ୍-ଗନାର ଅଧ୍ୟାପକ ଲୁଇଗି ଗ୍ୟାଲଭାନିଙ୍କ ସ୍ତ୍ରୀ ଏକଦା ପୀଡ଼ିତା ଥିଲେ । ଡାକ୍ତରମାନଙ୍କ ନିର୍ଦ୍ଦେଶ କ୍ରମେ ତାଙ୍କୁ ବେଙ୍ଗର ତରକାରୀ ଖାଇବାକୁ ଦିଆ ଯାଉଥିଲା । ଦିନେ ବେଙ୍ଗ ଦୁର୍ଲଭ ହେବାରୁ ଗ୍ୟାଲଭାନିଙ୍କ ଜନୈକ ଛାତ୍ର ବୈଜ୍ଞାନିକ ପରୀକ୍ଷାଗାରରୁ ମଲା ବେଙ୍ଗଟିଏ ଆଣିବାକୁ ଯାଇଥିଲା । ପରୀକ୍ଷାଗାରରେ ଉପସ୍ଥିତ ହୋଇ ଛୁରିଦ୍ୱାରା ଗୋଟିଏ ବେଙ୍ଗକୁ ଛୁଇଁବା ସଙ୍ଗେ ସଙ୍ଗେ ମଲା ବେଙ୍ଗଟି ହଠାତ ଗୋଡ଼ ଦୁଇଟିକୁ ହଲାଇବାକୁ ଆରମ୍ଭ କଲା । କୌତୁହଳୀ ଛାତ୍ର ଅଧ୍ୟାପକଙ୍କୁ ଆହ୍ୱାନ କଲେ । ପରୀକ୍ଷାକରି ଦେଖା ଗଲା ଯେ ପରୀକ୍ଷାଗାର ଟେବୁଲ ଉପରେ ସାମାନ୍ୟ ବିଦ୍ୟୁତ ଉତ୍ପାଦନକ୍ଷମ ଏକ କ୍ଷୁଦ୍ର ଯନ୍ତ୍ର ଥିବାରୁ ଏବଂ ତାହା ସହିତ ଛୁରୀ ଓ ବେଙ୍ଗର ଦେହ ଏକତ୍ର

ସଂଯୋଗ ହେବାରୁ ଏପରି ଘଟିଛି । ସେତେବେଳେ ଚଢ଼ ଘଣ୍ଟାର ପଶମ ଘଷି ସାମାନ୍ୟ ମାତ୍ର ବିଦ୍ୟୁତ ଉତ୍ପାଦନ କରାଯାଇ ପାରୁଥିଲା । ପୂର୍ବୋକ୍ତ ଘଟନା ସଂପର୍କରେ ଗବେଷଣା କରି ଗ୍ୟାଲଭନି ସ୍ଥିର କଲେ ଯେ ଜୀବ ଦେହରେ ଏକ ପ୍ରକାର ବିଦ୍ୟୁତ ଅଛି । ଏହି ସିଦ୍ଧାନ୍ତ ବୈଜ୍ଞାନିକମାନଙ୍କ ଆଗରେ ଉପସ୍ଥାପିତ ହେଲା । ସେହି ସମୟରେ ଅଲେକଜାଣ୍ଡ୍ରୋ ଭୋଲ୍ଟା ନାମକ ଜନୈକ ବ୍ୟକ୍ତି ଅବିଚ୍ଛିନ୍ନ ବିଦ୍ୟୁତ୍-ପ୍ରବାହ ଉତ୍ପାଦନ ସଂପର୍କରେ ଗବେଷଣା କରୁଥିଲେ । ଗ୍ୟାଲଭନୀ-ଙ୍କର ଏହି ଭ୍ରମାତ୍ମକ ଗବେଷଣାଲବ୍ଧ ଜ୍ଞାନ ବିଷୟ ଶୁଣି ସେ ହଠାତ୍ ଚମକୃତ ସତ୍ୟର ପଥ ପାଇପାରିଥିଲେ । ଭୋଲ୍ଟା ଗ୍ୟାଲଭନୀଙ୍କ ତତ୍ତ୍ୱର ପ୍ରତିବାଦ କଲେ । ସେ ନିର୍ଣ୍ଣୟ କଲେ ଯେ ବିଦ୍ୟୁତ ବେଙ୍ଗ ଦେହରେ ନଥିଲା । ଦୁଇଟି ବିଭିନ୍ନ ଧାତୁଖଣ୍ଡର ସଂପର୍କରେ ଆସି ବିଦ୍ୟୁତ ବେଙ୍ଗ ଦେହରେ ସଂଗୃହୀତ ହୋଇଅଛି । ବେଙ୍ଗ ବା ଅନ୍ୟ କୌଣସି ପ୍ରାଣୀର ଦେହ ବ୍ୟତୀତ, ଏସିଡ୍‌ଭିଜା ଖଣ୍ଡେ କନାରେ ତମ୍ବା ଓ ଦସ୍ତାର ଦୁଇ ଖଣ୍ଡ ପାତିଆବାନ୍ଧି ସେଥିରୁ ବିଦ୍ୟୁତ ଉତ୍ପାଦନ କରି ସେ ଗ୍ୟାଲଭନିଙ୍କ ତତ୍ତ୍ୱ ମିଥ୍ୟାବୋଲି ଦେଖାଇ ଦେଇଥିଲେ । ଏହାପରେ ଭୋଲ୍ଟା ଅବିଚ୍ଛିନ୍ନ ବିଦ୍ୟୁତ୍‌ପ୍ରବାହ ସୃଷ୍ଟି କରିବାର ପଦ୍ଧତି ଓ ଯନ୍ତ୍ର ଆବିଷ୍କାର କଲେ । ଏବଂ ସେହିଦିନଠାରୁ ଜଗତରେ ବିଦ୍ୟୁତ୍‌ତତ୍ତ୍ୱର ନବଯୁଗର ସୂତ୍ରପାତ ହେଲା । ବିଦ୍ୟୁତକୁ ମନୁଷ୍ୟର ବହୁ କାର୍ଯ୍ୟ ସାଧନରେ ନିୟୋଗ କରାଯାଇ ପାରିଲା ।

ଏହିପରି ବହୁ ଘଟଣାରୁ ଜଣାଯାଏ ଯେ ଆକସ୍ମିକତା ବହୁ ବୈଜ୍ଞାନିକ ଉଦ୍‌ଭାବନ ମୂଳରେ ନିହିତ ରୂପେ ବିଦ୍ୟମାନ । କିନ୍ତୁ ବହୁ ଉଦ୍‌ଭାବନର ସାଫଲ୍ୟ ଏହିପରି ଅପ୍ରତ୍ୟାଶିତ ଭାବରେହିଁ ଘଟିଥିଲେହେଁ ମନୁଷ୍ୟର ଅଦମ୍ୟ ଅଧ୍ୟବସାୟ ଓ ଉଦ୍ୟମହିଁ

ଏଥିପାଇଁ ମୁଖ୍ୟତଃ ଦାୟୀ । ଆକସ୍ମିକତା ବୈଜ୍ଞାନିକମାନଙ୍କୁ କେବଳ ମାତ୍ର ଗବେଷଣା ଲାଗି ନବ ଉଦ୍ଦୀପନା ଯୋଗାଇ ଅଛି ଏବଂ ପରିଣାମରେ ସେମାନଙ୍କୁ ସତ୍ୟଲାଭ ଲାଗି ଅଧିକ ତତ୍ପର ଓ ଉଦ୍ୟମୀ କରାଇ ଅଛି । ପ୍ରକୃତ ପକ୍ଷେ ଆକସ୍ମିକତାର ସୁଯୋଗ ଗ୍ରହଣ କରି ସେମାନେ ଯେଉଁ ପ୍ରଗାଢ଼ ପରିଶ୍ରମ ଓ ପୁଙ୍ଖାନୁପୁଙ୍ଖ ପରୀକ୍ଷା କରିଛନ୍ତି, ତାହାହିଁ ସେମାନଙ୍କୁ ଅବଶେଷରେ ଜୟଶ୍ରୀମଣ୍ଡିତ କରାଇବାର ପ୍ରଧାନ ହେତୁ ।

ପ୍ରଶ୍ନ—୧ । କେତେକ ବୈଜ୍ଞାନିକ ଆବିଷ୍କାର ଆକସ୍ମିକ ଭାବରେ ହୋଇଥିଲେ ସୁଦ୍ଧା ସେଗୁଡ଼ିକ ମାନବସମାଜର ପରମ ଉପକାରୀ ହୋଇଛି । ବିଶଦ କର ।

୨ । ବିଜ୍ଞାନର ବିକାଶଫଳରେ ମନୁଷ୍ୟ ନିଜର ସମୃଦ୍ଧି, ସ୍ୱାସ୍ଥ୍ୟ ଓ ସ୍ୱାଚ୍ଛନ୍ଦ୍ୟକୁ ଦୃଢ଼ କରିବାକୁ ସମର୍ଥ ହୋଇ ପାରିଛି କି ?

୩ । ଅଣୁବୀକ୍ଷଣ ଯନ୍ତ୍ର କାହାକୁ କୁହାଯାଏ ?

୪ । ପଦ ନିର୍ଣ୍ଣୟ କର—

ଆକସ୍ମିକତା, ବିସ୍ମୟ, ଅବିଚ୍ଛିନ୍ନ, ଅପ୍ରତ୍ୟାଶିତ, ଅଧ୍ୟବସାୟ ।

---

## ଶିଳ୍ପୀ ଶ୍ରୀଧର ମହାପାତ୍ର

ଶିଳ୍ପୀ କାହାରିକୁ ଅପେକ୍ଷା କରେ ନାହିଁ । ଆକାଶ, ପବନ, ସମସ୍ତେ ତାହାର ଅଭିନନ୍ଦନ କରି ଚାଲିଛନ୍ତି—ସମସ୍ତେ ତାହାକୁ ବରଣ କରି, ତାହାର ପରିକଳ୍ପନାରେ ଧରା ଦେଇ ତାହାକୁ ଧନ୍ୟ

କରିଛନ୍ତି । କୋଣାର୍କ ଓ ଭୁବନେଶ୍ୱର ମନ୍ଦିରର ଶିଳ୍ପୀ ତାହାର ଜୀବନବ୍ୟାପୀ ସୁନ୍ଦର ପରିକଳ୍ପନାରେ ଆତ୍ମବିସର୍ଜନ ଦେଇଛି, ତାହା କେତେଜଣ ସ୍ମରଣ କରିଥାନ୍ତି ? ସେ ଶିଳ୍ପୀର ବଂଶ କି ଏକାବେଳକେ ଉତ୍କଳରୁ ଲୁପ୍ତ ହୋଇ ଯାଇଛି ? ନା, ସେପରିତ ମନେ ହୁଏ ନାହିଁ। ତାହା ହୋଇଥିଲେ ଜଣେ ଅଜ୍ଞାତ ଓଡ଼ିଆ ଶିଳ୍ପୀର ଭାସ୍କର୍ଯ୍ୟନୈପୁଣ୍ୟ କିପରି ଜର୍ମାନି, ଇଂଲଣ୍ଡ, ଅଷ୍ଟ୍ରିଆ ପ୍ରଭୃତି ଭାରତେତର ସ୍ଥାନରେ ବିକ୍ଷିପ୍ତ ହୋଇଥାନ୍ତା ? ସ୍ୱୀୟ ପରିକାଷ୍ଠା ବଳରେ କିପରି ସେ ଏତେ ଅଳ୍ପକାଳ ମଧ୍ୟରେ ସୁନାମ ଅର୍ଜନ କରି ପାରିଛନ୍ତି, ଭାବିଲେ ଆଶ୍ଚର୍ଯ୍ୟାଭିଭୂତ ହେବାକୁ ପଡ଼େ ।

ଶିଳ୍ପୀ ଶ୍ରୀଧର ମହାପାତ୍ର ପୁରୀ ପଥୁରିଆ ସାହିର ଗୋଟିଏ ନଗଣ୍ୟ ଶିଳ୍ପୀ ପରିବାର ମଧ୍ୟରେ ୧୯୦୩ ମସିହାରେ ଜନ୍ମଲାଭକରି ପ୍ରାପ୍ତବୟସ୍କ ହେବା ପର୍ଯ୍ୟନ୍ତ ସେହିଠାରେ ଜୀବନ ଅତିବାହିତ କରି-ଛନ୍ତି । ତାଙ୍କର ପିତାଙ୍କର ନାମ ଗିରିଧାରୀ ମହାପାତ୍ର । ଗିରିଧାରୀଙ୍କର ପିତା ଚନ୍ଦ୍ରାମଣି । ଖଡ଼ିର କେତେ ମୂର୍ତ୍ତି ତିଆରି କରି ପୁରୀମନ୍ଦିର ନିକଟରେ ବିକି କରୁଥିବା ବେଳେ ହଠାତ୍ ପ୍ରସିଦ୍ଧ ଚିତ୍ରଶିଳ୍ପୀ ଗଗନେନ୍ଦ୍ରନାଥ ଠାକୁରଙ୍କ ସହିତ ତାଙ୍କର କ୍ଷଣିକ ଆଳାପ ହେଲା । ସେ ଗଗନେନ୍ଦ୍ରଙ୍କ ପରିଚୟ ପାଇ ନାହାନ୍ତି । କିନ୍ତୁ ଗଗନେନ୍ଦ୍ର ସେହି ଅଳ୍ପକ୍ଷଣ ମଧ୍ୟରେ ତାଙ୍କ ଭିତରେ ଗୋଟାଏ ପୁରାତନ ଜାତିର ଶିଳ୍ପନୈପୁଣ୍ୟର ଇଙ୍ଗିତ ଲାଭ କରି ସମୁଦ୍ରତୀରସ୍ଥ ସ୍ୱୀୟ ବାସଭବନକୁ କେତେକ ମୂର୍ତ୍ତି ନେଇ ଯିବାକୁ ଅନୁରୋଧ କଲେ । ତଦନୁସାରେ ଚନ୍ଦ୍ରାମଣି ବହୁ ଅନ୍ୱେଷଣ ପରେ ଯଥାସ୍ଥାନରେ କେତେକ ମୂର୍ତ୍ତି ଘେନି ଉପସ୍ଥିତ ହେଲେ । ଗଗନେନ୍ଦ୍ରନାଥଙ୍କ ସହିତ ଅନେକ କ୍ଷଣ ଆଳାପ ପରେ ଶିଳ୍ପୀଙ୍କର ଲାଭହେଲା ଏତିକି— ଯେଉଁ

ଖଡ଼ମୂର୍ତ୍ତିକୁ ସେ ଗୁଡ଼ିଏ ପଇସାରୁ ଅଧିକ ମୂଲ୍ୟରେ ବିକି କରି ପାରୁ ନ ଥାନ୍ତେ, ତାହାକୁ ସେ ଦଶଗୁଣ ଦାମରେ ଗଗନେନ୍ଦ୍ରଙ୍କୁ ବିକି କରି ଦେଲେ; କିନ୍ତୁ ଦ୍ରଷ୍ଟା ଗଗନେନ୍ଦ୍ରଙ୍କର ଲାଭ ହେଲା ତେର ବେଶୀ । ଗଗନେନ୍ଦ୍ର ସେତେବେଳେ ଶିଳ୍ପାଗ୍ରଣୀ ଅବନୀନ୍ଦ୍ରନାଥ ଠାକୁରଙ୍କ ସହିତ ମିଶି "ପ୍ରାଚ୍ୟ କଳାସଂସଦ" ଖୋଲିଥାନ୍ତି । ତହିଁରେ ଛାତ୍ରଙ୍କ ହେବା ନିମନ୍ତେ ଅଳ୍ପ ବେତନରେ ଉତ୍କୃଷ୍ଟ ଲୋକ ପାଇବା ଥିଲା, ତାଙ୍କର ଲକ୍ଷ୍ୟ । ଗଗନେନ୍ଦ୍ର ଚନ୍ଦ୍ରାମଣିଙ୍କଠାରୁ ତାଙ୍କର ନାମ, ଧାମ, ଠିକଣା ସମସ୍ତ ଲେଖି ରଖିଲେ । ଚନ୍ଦ୍ରାମଣି ସନ୍ତୁଷ୍ଟ ହୋଇ ଅଳ୍ପମୂଲ୍ୟର ଜିନିଷକୁ ବହୁମୂଲ୍ୟରେ ବିକି କରିବାର ଆନନ୍ଦ ଘେନି ସବୁକଥା ଘରେ ଆସି ବଖାଣିଲେ । ଚନ୍ଦ୍ରାମଣିଙ୍କର ଅଭିନୟ ଏହିଠାରୁ ଶେଷ ହେଲା ।

ଇତି ମଧ୍ୟରେ ଉକ୍ତ ପ୍ରାଚ୍ୟକଳା ସଂସଦରେ ଭାସ୍କର୍ଯ୍ୟ ଶିକ୍ଷାର ଅଭାବ ଅବନୀନ୍ଦ୍ର ଓ ଗଗନେନ୍ଦ୍ର ଉଭୟେ ମର୍ମେ ମର୍ମେ ଅନୁଭବ କରୁଥାନ୍ତି । ହଠାତ୍ ଚନ୍ଦ୍ରାମଣିଙ୍କ କଥା ସ୍ମୃତିପଥାରୁଢ଼ ହେଲା । କିନ୍ତୁ କ୍ଷୁଦ୍ର ଶିଳ୍ପୀପରିବାର ମଧ୍ୟରେ ଚନ୍ଦ୍ରାମଣି ଆଉ ନାହାନ୍ତି । ଚନ୍ଦ୍ରାମଣିଙ୍କ ପରିବାର ମଧ୍ୟରେ ଏପରି କିଏ ଅଛନ୍ତି ଯେ, ଏହି ପ୍ରାଚ୍ୟ ଶିଳ୍ପଶିକ୍ଷାସଦନରେ ରୂପ ନିର୍ମାଣକରି ଅବନୀନ୍ଦ୍ରଙ୍କ ଭଳି ଶିଳ୍ପରସିକଙ୍କର ତୃପ୍ତି ବିଧାନ କରିପାରିବ ? ଅବନୀନ୍ଦ୍ର ଚନ୍ଦ୍ରାମଣିଙ୍କ ଗୃହକୁ ପତ୍ର ଲେଖିଲେ । ଗିରିଧାରୀ ତଦୁତ୍ତରରେ ନିଜର ଯତ୍ନକାଙ୍କ୍ଷିତ ଶିଳ୍ପଶିକ୍ଷା ଥିବାର ଜଣାଇବାରୁ ଅବନୀନ୍ଦ୍ର ତାହାଙ୍କ ପରୀକ୍ଷାସ୍ୱରୂପ ଗୋଟିଏ ଅନନ୍ତଶଯ୍ୟା ଓ ଗଣେଶମୂର୍ତ୍ତି ନିର୍ମାଣ କରିଦେବାପାଇଁ ଲେଖିପଠାଇଲେ । ଏହିଠାରେ ଉତ୍କଳର କଳା ପରିଚୟ ପାଇଁ ପରୀକ୍ଷାର ସମୟ ଉପସ୍ଥିତ ହେଲା । ଯେଉଁ ଉତ୍କଳର ଶିଳ୍ପୀମାନେ ଭୁବନେଶ୍ୱର

ମନ୍ଦିରରେ ଗଣେଶମୂର୍ତ୍ତି ଖୋଦନକରି ଉତ୍କଳ ଭାସ୍କର୍ଯ୍ୟ ଶିଳ୍ପକୁ ଅମର କରିଯାଇଛି, ଯେଉଁ ଓଡ଼ିଆଶିଳ୍ପୀ କୋଣାର୍କରେ ଅନନ୍ୟ ଅରୁଣସ୍ତମ୍ଭ ପରିକଳ୍ପନାରେ ବିଶ୍ୱର ଶ୍ରେଷ୍ଠ ଶିଳ୍ପୀର ବରମାଲ୍ୟ ଲାଭ କରି ଯଶସ୍ୱୀ ହୋଇଛନ୍ତି, ତାହାର ବଂଶଧରମାନଙ୍କ ମଧ୍ୟରୁ ଏପରି କଅଣ କେହି ନାହିଁ, ଯେ କି ସେହି ନୈପୁଣ୍ୟର ଶତାଂଶରୁ କିଞ୍ଚିତ ଆଭାସ ଦେଇପାରିବ ? ଗିରିଧାରୀ ସ୍ୱହସ୍ତରେ ଉପର୍ଯ୍ୟୁକ୍ତ ସମସ୍ତ କାର୍ଯ୍ୟନିର୍ମାଣ କରି ଅବନୀନ୍ଦ୍ରଙ୍କ ନିକଟକୁ ପଠାଇଦେଲେ । ଠାକୁର ପରିବାର ମଧ୍ୟରେ ପ୍ରତିଭାଶାଳୀ ବହୁଲୋକର ସମାଗମ ହୁଏ । ଏହି ସୁପରିଚିତ ଉଚ୍ଚବଂଶରେ ପ୍ରାୟ ପ୍ରତ୍ୟେକେ ଜଣେ ଜଣେ ଶିଳ୍ପୀ, ଭାସ୍କର, ବୈଜ୍ଞାନିକ, ସଙ୍ଗୀତଜ୍ଞ, ସାହିତ୍ୟିକ ଓ କବି । ଏହି ପ୍ରତିଭାଶାଳୀ ମନୀଷୀ ମଣ୍ଡଳରେ ପରିକଳ୍ପିତ ଉତ୍କଳ ଭାସ୍କର୍ଯ୍ୟର ଆଲୋଚନାରେ ଗିରିଧାରୀ ପ୍ରଶଂସିତ ଓ ସମ୍ମାନିତ ହେଲେ । ସେହିଦିନ-ଠାରୁ ବାରମ୍ବାର ଅନୁରୋଧ କ୍ରମେ ଓ ନିଜର ଦାରିଦ୍ର୍ୟର ନିର୍ଯ୍ୟାତନା ହେତୁ ସେ ବଙ୍ଗଭୂମିର ଶ୍ରେଷ୍ଠଶିଳ୍ପୀ ପ୍ରତିଷ୍ଠିତ ଏହି ଶିକ୍ଷାସଦନରେ ଭାସ୍କର ଶିକ୍ଷକପଦ ଗ୍ରହଣ କଲେ । ଅଳ୍ପଦିନ ମଧ୍ୟରେ ଗିରିଧାରୀ ସ୍ୱୀୟ ନମ୍ରତା ଓ ମିଷ୍ଟ ବ୍ୟବହାରରେ ସମସ୍ତଙ୍କର ଶ୍ରଦ୍ଧା ଓ ପ୍ରୀତି ଆକର୍ଷଣ କରି ବିଶେଷତଃ ଅବନୀନ୍ଦ୍ରଙ୍କର ପ୍ରିୟପାତ୍ର ହୋଇ ପାରିଥିଲେ ।

୫୦ ବର୍ଷ ବୟସରେ ଗିରିଧାରୀ ଶିକ୍ଷକତ୍ୱ ଗ୍ରହଣକରି ସେଠାରେ ୧୪ ବର୍ଷ କାଳ କୃତିତ୍ୱ ସହିତ କାର୍ଯ୍ୟକରି ଅସଂଖ୍ୟ ମୂର୍ତ୍ତି କଳ୍ପନାକରି ପ୍ରତିବର୍ଷ ପ୍ରଦର୍ଶନୀରେ ସେସମସ୍ତ ବିକ୍ରୟ କରିଯାଇଛନ୍ତି । ଗିରିଧାରୀ ୫୮ ବର୍ଷ ବୟସରେ ସ୍ୱୀୟ କାର୍ଯ୍ୟ ସମାପନ କରି ଇହଲୀଳା ସାଙ୍ଗ କଲେ । ଉତ୍କଳର ଏହି ପ୍ରସିଦ୍ଧ ରୂପକାର ଇହଧାମରୁ ବିଦାୟନେଲେ; କିନ୍ତୁ ଓଡ଼ିଶାରେ କେହି ଜାଣିଲେ ନାହିଁ । ବଣର ମାଳତୀ ବଣରେ ଫୁଟି ମଉଳି ପଡ଼ିଲା ।

ଚିନ୍ତାମଣି ଏହି ଶିଳ୍ପାଗାରରେ କାର୍ଯ୍ୟ କରୁଥିବା ବେଳେ ତାଙ୍କର ପୁତ୍ର ଶ୍ରୀଧରଙ୍କୁ ଏହି ବିଦ୍ୟାରେ ପ୍ରବୀଣ କରିବା ପାଇଁ ସାଙ୍ଗରେ ନେଇ ଆସିଥିଲେ । ଶ୍ରୀଧର ମେଧାବୀ ଓ ଶକ୍ତିସମ୍ପନ୍ନ ଶିଳ୍ପୀ । ଅଳ୍ପ ଦିନ ମଧ୍ୟରେ ପିତାଙ୍କ ନିକଟରୁ ନିର୍ମାଣପଦ୍ଧତି ଓ କଳା-କୌଶଳ ଶିଖିନେଲେ । ବର୍ଷ ପରେ ବର୍ଷ ବହୁ ମୂର୍ତ୍ତି, କାଷ୍ଠ, କର୍ଦ୍ଦମ ଓ ପ୍ରସ୍ତରରେ ନିର୍ମାଣ କରି ସେ ଯଶସ୍ୱୀ ହେବାକୁ ଲାଗିଲେ ।

ଶ୍ରୀଧରଙ୍କର ସାଧାରଣ ଇଂରାଜୀଶିକ୍ଷା ନଥିଲେ ମଧ୍ୟ ସ୍ୱୀୟ ଅସାଧାରଣ ଶିଳ୍ପନୈପୁଣ୍ୟ ବଳରେ ସେ ଆଜି ଦେଶବିଦେଶରେ ସୁଖ୍ୟାତ । ଏକ ଶ୍ରେଣୀର ଲୋକ ଥାନ୍ତି, ଯେଉଁମାନେ ନୀରବରେ କର୍ମ କରିବାକୁ ଭଲ ପାନ୍ତି । ରୂପକାର ଶ୍ରୀଧରଙ୍କୁ ଏହି ଶ୍ରେଣୀର ଅନ୍ତର୍ଭୁକ୍ତ କଲେ ଅତ୍ୟୁକ୍ତି ହେବନାହିଁ । ଲୋକଚକ୍ଷୁର ଅନ୍ତରାଳରେ କର୍ମ କରିଯିବାହିଁ ତାଙ୍କର ଆଦର୍ଶ । ଭାରତର ପ୍ରାଚ୍ୟ ରୀତିରେ ରୂପନିର୍ମାଣ ଦିଗରୁ ଶ୍ରୀଧର ଜଣେ ଶ୍ରେଷ୍ଠ ଭାସ୍କର । ନିନ୍ଦା, ସ୍ତୁତି, ସୁଖ, ଦୁଃଖ ପ୍ରତି ତାଙ୍କର ଶୋଚନା ନାହିଁ । କାର୍ଯ୍ୟ ଶେଷକରି ଯିବାକୁ ହେବ, ଅନ୍ତର ଦେଇ ଏହି ଲଳିତକଳାକୁ ଭଲ ପାଇବାକୁ ହେବ—ଏହାହିଁ ତାଙ୍କର ଆଦର୍ଶ । ଲୋକ ହିସାବରେ ସେ ସମସ୍ତଙ୍କ ସଙ୍ଗେ ମିଶିପାରନ୍ତି । ସୁନ୍ଦରର ଉପାସନାହିଁ ତାଙ୍କ ଜୀବନର ବ୍ରତ ।

ଅବନୀନ୍ଦ୍ରଙ୍କର ଏହି ଶିଳ୍ପାଗାରରେ ଅଳ୍ପ କେତେକ ଛାତ୍ର ଶ୍ରୀଧରଙ୍କ ନିକଟରେ ରୂପନିର୍ମାଣ ଶିକ୍ଷାକରୁଥିଲେ; କିନ୍ତୁ କଠୋର ପରିଶ୍ରମ ଏବଂ ଏକାଗ୍ରତା ଓ ଅଭିନିବେଶ ଦେଖି କେତେକ ଭୟରେ ସୁକୁମାର କଳାର ଏହି କଠିନ ବିଭାଗ ପ୍ରତି ବୀତସ୍ପୃହ ହୋଇ ଏହା ପରିତ୍ୟାଗକଲେ । ସ୍ୱୟଂ ଗଗନେନ୍ଦ୍ରନାଥ ଓ

ଅବନୀନ୍ଦ୍ରନାଥ ନିର୍ମାଣକାଳରେ ଶ୍ରୀଧରଙ୍କର ଏକାଗ୍ରତା ଦେଖି ବିସ୍ମିତ ହୋଇ ଯାଉଁ ଥିଲେ ।

ଏହି ଶିକ୍ଷାକେନ୍ଦ୍ରରେ କିଛିକାଳ ଅବସ୍ଥାନ ମଧ୍ୟରେ ଶ୍ରୀଧର ବହୁ ଶିଳ୍ପୀ ଓ ଶିଳ୍ପରସିକମାନଙ୍କ ସମ୍ପର୍କରେ ଆସି ସ୍ୱୀୟ ରୂପକଳାକୁ ପରିମାର୍ଜିତ କରିନେଲେ । ତାଙ୍କର ପରାକାଷ୍ଠା ଦେଖି ସମସ୍ତେ ଚମତ୍କୃତ ହେଲେ । ଇତିମଧ୍ୟରେ ବିଲାତର ପ୍ରସିଦ୍ଧ ମ୍ୟୁଜିୟମ୍ (British Museum) ତରଫରୁ ଅବନୀନ୍ଦ୍ରଙ୍କ ନିକଟକୁ ଖବର ଆସିଲା, ଭାରତୀୟ ରୂପଶିଳ୍ପର ନମୁନା ପଠାଇବାକୁ ହେବ । ପ୍ରାଚ୍ୟ କଳା-ସଂସଦ ତରଫରୁ ଶ୍ରୀଧର "ଉତ୍କଳନାରୀ" ମୂର୍ତ୍ତିଟି ଉପହାର ଦେଲେ । ଭାରତୀୟ ମୂର୍ତ୍ତିଶିଳ୍ପର ନମୁନା ପର୍ଯ୍ୟବସିତ ହେଲା, "ଉତ୍କଳନାରୀ" ପରିକଳ୍ପନାରେ । "ଉତ୍କଳନାରୀ" ରୂପ ସମଗ୍ର ଭାରତର ରୂପକଳାର ପ୍ରତିନିଧି ସ୍ୱରୂପ ପ୍ରସିଦ୍ଧ ବିରାଟ ବ୍ରିଟିଶ ମିଉଜିୟମ୍‌ର ଶୋଭା ବର୍ଦ୍ଧନ କଲା । ଉତ୍କଳ ପକ୍ଷରେ ଏହା ଅଳ୍ପ ଗୌରବର କଥା ନୁହେ । ପ୍ରସାଧନରତା ଏହି 'ଉତ୍କଳନାରୀ' ମୂର୍ତ୍ତିଟି ଦେଖିଲେ ଉତ୍କଳର ସରଳ ସାଧାରଣ ନାରୀ ରୂପ ବିଲକ୍ଷଣ ମାନସପଟରେ ପ୍ରତିଭାତ ହୁଏ । 'ଉତ୍କଳନାରୀ' ପାରସ୍ୟନାରୀ ପରି ଦୀର୍ଘକାୟ ନୁହେଁ, ଶୀର୍ଣ୍ଣ ନୁହେଁ; ତାହାର ନାତି ଦୀର୍ଘ ସୁସ୍ଥ, ସବଳ ଅଙ୍ଗବଲ୍ଲରୀ ପରମ ରମଣୀୟ । ଚକ୍ଷୁରେ ତେଜ ଓ ସହିଷ୍ଣୁତାର ଭାବ ପରିସ୍ଫୁଟ ।

ଏହି ନାରୀମୂର୍ତ୍ତି ଯେଉଁ ସବୁ ଅଳଙ୍କାର ଦ୍ୱାରା ମଣ୍ଡିତା, ତାହା ଉତ୍କଳ ଛଡ଼ା ଅନ୍ୟତ୍ର ଦୃଷ୍ଟିଗୋଚର ହୁଏ ନାହିଁ । ପ୍ରଧାନତଃ ବାହୁ ଓ ପାଦର ଅଳଙ୍କାର ସମ୍ପୂର୍ଣ୍ଣ ମୌଳିକ । ପୁନଶ୍ଚ ସମସ୍ତ ମୂର୍ତ୍ତିଟିର ଭଙ୍ଗୀ ସଙ୍ଗୀତମୟ । ପ୍ରସ୍ତର ଓ କାଷ୍ଠ ସଦୃଶ କଠିନ

ବସ୍ତୁରେ ପରିକଳ୍ପିତ ହୋଇଥିଲେ ମଧ୍ୟ ଏହା କାନ୍ତ ରୂପବିଭବ, ଲଜ୍ଜାର ଅରୁଣିମା ଓ ମୁଖମଣ୍ଡଳର ଜ୍ୟୋତି ହରାଇନାହିଁ । ପୁରାତନ ମଧ୍ୟରେ ଏହା ସମ୍ପୂର୍ଣ୍ଣ ନୂତନ । ପ୍ରାଣହୀନ ପ୍ରସ୍ତର ଓ କାଷ୍ଠ ଦେହରେ ପ୍ରାଣର ସଞ୍ଚାର ଅଲୌକିକ । ଏହି ମୂର୍ତ୍ତିଟି ୩୧ ଫୁଟ ଉଚ୍ଚ ଏବଂ ଶିଶୁ କାଠରେ ନିର୍ମିତ । ଶିଳ୍ପୀଙ୍କଦ୍ୱାରା ନିର୍ମିତ ଶିଳ୍ପକଳା ମଧ୍ୟରୁ ନିମ୍ନୋକ୍ତ କେତୋଟି ମୂର୍ତ୍ତି ପ୍ରଧାନ ।

ଷଡ଼ଭୁଜା କାଳୀ ମୂର୍ତ୍ତିରୁ ଯେଉଁ ଶକ୍ତି ଓ ଜୀବନର ଦ୍ୟୋତନା-ସମାଧିର ଲକ୍ଷଣ ମିଳେ, ତାହା ଯଥାର୍ଥରେ ପୁରାତନ ଉତ୍କଳ ଶିଳ୍ପ-ନୈପୁଣ୍ୟର ପରିଚୟ ଦିଏ । ପ୍ରାଚ୍ୟ ଶିଳ୍ପକୁ ( Oriental art ) ଯେଉଁମାନେ କଦାକାର, କୁତ୍ସିତ-ଅଯଥା ସୁଦୀର୍ଘ ହସ୍ତ-ପଦାଦି ଦ୍ୱାରା ବିକୃତ ବୋଲି ଧାରଣା କରିଥାନ୍ତି, ସେମାନେ ମଧ୍ୟ ଏହି ମୂର୍ତ୍ତିର ନିର୍ମାଣ ଦେଖି ଏହାକୁ ପ୍ରାଚ୍ୟଶିଳ୍ପର ପ୍ରତୀକ ବୋଲି ଗ୍ରହଣ କରିବେ । ଅଙ୍ଗସୌଷ୍ଠବ, କଳ୍ପନାପ୍ରଶସ୍ତତା ଓ ଭାବସମାବେଶ ଦିଗରୁ ଭାସ୍କର ଏଥିରେ ସ୍ୱୀୟ ଦକ୍ଷତାର ପ୍ରକୃଷ୍ଟ ପରିଚୟ ପ୍ରଦାନ କରିଛନ୍ତି ।

ଏହା ରଙ୍ଗ ନୁହେ—ଏଥିରେ ବର୍ଣ୍ଣସମାବେଶ କରିବାର ସୁଯୋଗ ନାହିଁ; ତଥାପି ଏହାର ଏକବର୍ଣ୍ଣ ପ୍ରତିଲିପିରୁ ଉତ୍କଳର ଶିଳ୍ପୀ-ରସିକମାନେ ଏହାର ସୌକୁମାର୍ଯ୍ୟ ଉପଲବ୍ଧି କରିପାରିବେ । ମୁଦେଲିୟାର ଏ ମୂର୍ତ୍ତିର ଅଧିକାରୀ ।

ବୀଣାପାଣିଙ୍କ ମୂର୍ତ୍ତି ଯାହାକି ୧୯୩୪ ମସିହା ପ୍ରଦର୍ଶନୀରେ ପୁରସ୍କୃତ ହୋଇଥିଲା, ତାହା ମଧ୍ୟ ସେହିପରି ଚମତ୍କାର । ବୀଣାପାଣିଙ୍କୁ କ୍ୱଚିତ୍ ରୂପକାର ଦଣ୍ଡାୟମାନ ଅବସ୍ଥାରେ ଧ୍ୟାନ କରିଛନ୍ତି । ବୀଣା ଉପରେ ଅଙ୍ଗୁଳି ନିର୍ଦ୍ଦେଶ ଦେଖିଲେ ଅଙ୍ଗୁଳି ସଞ୍ଚାଳିତ ହେଲା ପରି ଭ୍ରମ ଜାତ ହୁଏ । ଏହା "ତ୍ରିଭଙ୍ଗମୂର୍ତ୍ତି"ର ଗୋଟିଏ ନିଖୁଣ ନମୁନା ।

ପୌରାଣିକ ବିଷୟଗୁଡ଼ିକୁ ରୂପଦାନ କରିବାରେ ଶ୍ରୀଧର ଅଦ୍ୱିତୀୟ । ଏହି ମୂର୍ତ୍ତିର ମୁଖମଣ୍ଡଳରେ ଯେଉଁ ତନ୍ମୟତା ଲକ୍ଷିତ ହୁଏ, ତାହା ଦେଖି ମନେହୁଏ, ଯେପରି ବିଶ୍ୱର ସମସ୍ତ ସଙ୍ଗୀତ ଅଙ୍ଗୁଳିର ଈଷତ୍ ପରିଚାଳନାରେ ବୀଣାତନ୍ତ୍ରୀରେ ପୁଞ୍ଜିଭୂତ ହୋଇ ଉଠିଛି ।

ଶିଳ୍ପୀ ଶ୍ରୀଧରଙ୍କର "ଶିବଗୌରୀ" ଏକ ରମଣୀୟ ପରିକଳ୍ପନା । ଶିବଙ୍କର ସୁସଂଯତ ମୁଖମଣ୍ଡଳ ଓ ଧ୍ୟାନପରାୟଣତା, ପାର୍ବତୀଙ୍କର ତପସ୍ୟା ପରେ ମିଳନାନୁରାଗ ଏହି କ୍ଷୁଦ୍ର ମୂର୍ତ୍ତିର ସ୍ୱଳ୍ପ ପରିସର ମଧ୍ୟରେ କର୍ଦ୍ଦମ ଭଳି ପ୍ରାଣହୀନ ବସ୍ତୁର ଦେହରେ ଯେପରି ଜୀବନ୍ତ ହୋଇ ଉଠିଛି ତାହା ଦେଖିଲେ ଶିଳ୍ପୀଙ୍କର କଳାକୌଶଳର ପ୍ରଶଂସା ନକରି ରହି ହୁଏ ନାହିଁ ।

ଶିଳ୍ପୀଙ୍କର ଅପର ଏକମୂର୍ତ୍ତି—'ବନଦେବୀ' । ଏହି ମୂର୍ତ୍ତି ଦେଖିଲେ ବନଦେବୀଙ୍କ ଛାୟା ରୂପ ମାନସଚକ୍ଷୁରେ ପ୍ରତିଭାତ ହୋଇ ଉଠେ । ମୁଖମଣ୍ଡଳରେ ଚାଞ୍ଚଲ୍ୟମିଶ୍ରିତ ଲାବଣ୍ୟ, ପ୍ରତିଅଙ୍ଗଭଙ୍ଗୀରୁ ଯୌବନର ଉଦ୍ଦାମତା ଏବଂ ହରିଣୀ ସହିତ ଏହି ରମଣୀର କ୍ରୀଡ଼ା କୌତୁକ ଦେଖିଲେ "ଚନ୍ଦ୍ରଭାଗା"ର ଦୁଇଟି ଧାଡ଼ି ମନେ ପଡ଼େ ।

"ଦୁକୂଳ କବରୀ ସମ୍ଭାଳୁଅଛି
ଦକ୍ଷିଣେତରରେ,
ଫିଙ୍ଗୁଛି ଧରୁଛି କନ୍ଦୁକ ବାମା
ଦକ୍ଷିଣ କରେ ।

ଏଠାରେ ଦୁକୂଳ ନାହିଁ, ମାତ୍ର କବରୀ ସ୍ଖଳନ ଆଶଙ୍କାରେ ବାମହସ୍ତ ପଶ୍ଚାତ୍ ଦେଶରେ ସୁରକ୍ଷିତ । କନ୍ଦୁକ କ୍ରୀଡ଼ା ନଥିଲେ ମଧ୍ୟ ହରିଣୀର ଉଲ୍ଲାସଭରା ଉଦ୍ବେଗକୁ ଦକ୍ଷିଣ କରରେ ଆଶ୍ୱାସନା ଦାନ ଓ ବନ୍ୟପଶୁ ସହିତ ଏହି ରମଣୀର ଘନିଷ୍ଠ ବନ୍ଧୁତା ସ୍ପଷ୍ଟ ଫୁଟି

ଉଠିଛୁ । ବନକନ୍ୟାର ତରଳ ପଦବିକ୍ଷେପ ଓ କ୍ରୀଡ଼ା ବିଳୋଳିତ ଗତି ସହିତ ଦର୍ଶକର ଚିତ୍ତ ଚଞ୍ଚଳ ହୋଇ ଉଠିବ । ଏହି ମୂର୍ତ୍ତିକୁ ବିଶ୍ୱକବି ରବୀନ୍ଦ୍ରନାଥ ତାଙ୍କର ସପ୍ତତିତମ ବାର୍ଷିକ ଉତ୍ସବରେ ଉପହାର ସ୍ୱରୂପ ଲାଭ କରି ଦେଶ ବିଦେଶାଗତ ବହୁ ଉପହାରଠାରୁ ଶ୍ରେଷ୍ଠ ଉପହାର ମନେକରି ଶିଳ୍ପୀଙ୍କୁ ଆଶୀର୍ବାଦ କରିଥିଲେ ।

ଶ୍ରୀଧରଙ୍କର "ପୂର୍ବରାଗମୂର୍ତ୍ତି"ଟି ରାଧାଙ୍କର ଯମୁନାସ୍ନାନର ଗୋଟିଏ କମନୀୟ ବିବରଣୀ । ଦେହଯଷ୍ଟିର ସୁସାମଞ୍ଜସ୍ୟ ଦେଖିଲେ ମନରେ ଭାରତୀୟ କଳାପ୍ରତି ଗଭୀର ଅନୁରାଗ ଜାତ ହୁଏ ।

'ନଟରାଜ' ମୂର୍ତ୍ତିଟି ନୃତ୍ୟବୀର ଉଦୟଶଙ୍କରଙ୍କୁ ଉପହାର ସ୍ୱରୂପ ଦିଆଯାଇଥିଲା । ଗଙ୍ଗାଙ୍କୁ ଗଙ୍ଗାଜଳରେ ନୈବେଦ୍ୟ ଦେଲାପରି ଏହା ଉଦୟଶଙ୍କରଙ୍କୁ ଯଥାଯୋଗ୍ୟ ଉପହାର । ଶିବଙ୍କର ତାଣ୍ଡବ ଏବଂ ସୃଷ୍ଟିର ବିଳୟ ନିମନ୍ତେ ଏକ ନବତର ପରିକଳ୍ପନା, ଶିବଙ୍କର ନୃତ୍ୟରତ ଏହି ମୂର୍ତ୍ତିର ପ୍ରତି ଅଙ୍ଗରେ ବିକଶିତ ହୋଇଉଠିଛି । ସମସ୍ତ ମୂର୍ତ୍ତିଟି ପାଦର କେବଳ ବୃଦ୍ଧାଙ୍ଗୁଳି ଉପରେ ନ୍ୟସ୍ତ ରହିଥିବା ପରମ ଆଶ୍ଚର୍ଯ୍ୟର ବିଷୟ । ଦେହଭାରକୁ ଗୋଟିଏ ସ୍ଥାନରେ କେନ୍ଦ୍ରୀଭୂତ କରିବା, ପଦ୍ଧତି ଦିଗରୁ କଷ୍ଟସାଧ୍ୟ । ଏତଦ୍‌ବ୍ୟତୀତ ଭାବ ଓ ଭଙ୍ଗୀ ଶିଳ୍ପୀଙ୍କର ଶିଳ୍ପପରିପାଟୀର ଏକ ଜୀବନ୍ତ ନିଦର୍ଶନ ବୋଲିବାକୁ ହେବ ।

ଶ୍ରୀଧର "ଶ୍ରୀରାଧାର ମିଳନ"ନାମକ ମୂର୍ତ୍ତିରେ ପ୍ରଥମ ପୁରସ୍କାର ଲାଭ କରି ସମଗ୍ର ଉତ୍କଳକୁ ଗୌରବାନ୍ୱିତ କରି ଅଛନ୍ତି ।

ବାସ୍ତବିକ ଶିଳ୍ପୀ ଶ୍ରୀଧର ଭାରତୀୟ ମୂର୍ତ୍ତି-ଶିଳ୍ପ-ରଚୟିତାମାନଙ୍କର ପ୍ରକୃତ ବଂଶଧର; ଏଥିରେ ସନ୍ଦେହ ନାହିଁ । ପୁରାତନ ଶିଳ୍ପ ଅବହେଳିତ ହୋଇଥିଲେହେଁ ଉତ୍କଳର ଏହି କୃତୀ ସନ୍ତାନଙ୍କ ପାଇଁ

ଅମ୍ଭେମାନେ ଅଜ ଅଶାନ୍ତିତ ହୋଇପାରୁଁ ଯେ ପ୍ରାଚ୍ୟକଳା ଭବିଷ୍ୟତରେ ବିସ୍ମୃତ ହେବ ନାହିଁ ।

ପ୍ରଶ୍ନ—୧ । ଶିଳ୍ପୀ ଶ୍ରୀଧର ଯଥାର୍ଥରେ ନିଜର ପିତା ଓ ପିତାମହଙ୍କର ସୁଯୋଗ୍ୟ ଉତ୍ତରାଧିକାରୀ । ଏହାର ସତ୍ୟତା ନିରୂପଣ କର ।

୨ । ପ୍ରାଚ୍ୟ କଳା-ସଂସଦ ଶିଳ୍ପୀ ଶ୍ରୀଧରଙ୍କୁ ଲାଭ କରି ଧନ୍ୟ ହୋଇଥିଲା । ଏହି ଉକ୍ତିର ବିଚାର କର ।

୩ । ଉତ୍କଳର ଶିଳ୍ପର ଗୌରବ ଓ ଗରିମା ଶିଳ୍ପୀ ଶ୍ରୀଧର କେବଳ ଭାରତରେ ନୁହେଁ, ଇଉରୋପର ବିଭିନ୍ନ ସଭ୍ୟ ଦେଶରେ ମଧ୍ୟ ପ୍ରଚାର କରିଛନ୍ତି । ଏହା ଯଥାର୍ଥ କି ?

୪ । ପଠିତ ରଚନାରେ ଶିଳ୍ପୀ ଶ୍ରୀଧର ଯେଉଁ ମୂର୍ତ୍ତି-ଗୁଡ଼ିକରେ ନିଜ ଶିଳ୍ପନୈପୁଣ୍ୟର ପରିଚୟ ଦେଇଛନ୍ତି ସେଗୁଡ଼ିକର ପରିଚୟ ପ୍ରଦାନ କର ।

---

## କୁମାର ପୂର୍ଣ୍ଣିମା

ଓଡ଼ିଶାରେ ଦଶହରା, ଦୋଲ, ଝୁଲଣ, ଦୁତିକୁଣି, ବୂଢ଼େଇଓଷା, ଦୁତିୟାଓଷା ପ୍ରଭୃତି ବିଭିନ୍ନ ଜାତୀୟ ପର୍ବମାନଙ୍କ ମଧ୍ୟରୁ କୁମାର-ପୂର୍ଣ୍ଣିମା ଅନ୍ୟତମ । ମାତ୍ର ଯଥାର୍ଥ ଜାତୀୟ ଉତ୍ସବମାନଙ୍କ ମଧ୍ୟରେ କୁମାର ପୂର୍ଣ୍ଣିମାହିଁ ଶ୍ରେଷ୍ଠ ଏବଂ ପ୍ରାଚୀନତମ ।

ଆଶ୍ୱିନ ମାସର ପୂର୍ଣ୍ଣିମାଦିନ ଏହା ଅନୁଷ୍ଠିତ ହୁଏ । ଏହାକୁ ସଂସ୍କୃତରେ କୋଜାଗର ପୂର୍ଣ୍ଣିମା ମଧ୍ୟ କୁହନ୍ତି । ପୁରାଣରେ ବର୍ଣ୍ଣିତ

ଅଛୁ—"ଏହି ଦିନ ନିଶୀଥ ସମୟରେ ଲକ୍ଷ୍ମୀ କହନ୍ତି—ଆଜି ନାରିକେଳ ଜଳ ପାନ କରି କିଏ ଜାଗି ରହିଛୁ—ମୁଁ ତାକୁ ସମ୍ପତ୍ତି ପ୍ରଦାନ କରିବି ।" ଏହି କାରଣରୁ ଏହି ତିଥିକୁ "କୋଜାଗର" କହନ୍ତି । ସଂସ୍କୃତ ବ୍ରହ୍ମାଣ୍ଡ-ପୁରାଣରେ ମଧ୍ୟ କୋଜାଗର ପୂର୍ଣ୍ଣିମାର ଉଲ୍ଲେଖ ଦେଖାଯାଏ । ସେଥିରେ କୋଜାଗର ପର୍ବର ବିଧାନ ନିମ୍ନୋକ୍ତ ରୂପେ ନିର୍ଣ୍ଣିତ ହୋଇଅଛି । "ଅଶ୍ୱିନ ମାସ ପୂର୍ଣ୍ଣିମା ଦିନ ଗୃହର ନିକଟବର୍ତ୍ତୀ ପଥସକଳ ପରିଷ୍କୃତ ଓ ସୁଶୋଭିତ କରିବ ଏବଂ ପୁଷ୍ପ, ଅର୍ଘ୍ୟ, ଫଳ ମୂଳ, ସର୍ଷପ ପ୍ରଭୃତି ସଂଗ୍ରହକରି ଗୃହ ବିଭୂଷିତ କରିବ । ଏହି ଦିନରେ ସମସ୍ତଙ୍କର ଉପବାସ କର୍ତ୍ତବ୍ୟ । ସେଦିନ ପୁଷ୍ପ ଓ ଫଳ ପ୍ରଭୃତି ବିବିଧ ଉପହାରରେ ଦ୍ୱାରୋର୍ଦ୍ଧ୍ୱ ଭିତ୍ତିର ପୂଜା କର୍ତ୍ତବ୍ୟ । ଦ୍ୱାରର ଉପାନ୍ତରେ ଯବ, ଘୃତ ଓ ତଣ୍ଡୁଳାଦି ଦ୍ୱାରା ହବ୍ୟବାହନଙ୍କର ପୂଜା କରିବ ।"

ପ୍ରାଚୀନତମ ପୁରାଣରେ ଏହି ବର୍ଣ୍ଣନାରୁ ଅନୁମିତ ହୁଏ ଯେ ଏହି କୋଜାଗର ପୂର୍ଣ୍ଣିମା ବା କୁମାର-ପୂର୍ଣ୍ଣିମା ଉତ୍ସବଟି ବହୁ ପ୍ରାଚୀନ କାଳରୁ ଏକ ପ୍ରଧାନ ପର୍ବ ଭାବରେ ଗୃହୀତ ହୋଇ ଆସୁଅଛି । ମାତ୍ର ଏହି କୋଜାଗର ପୂର୍ଣ୍ଣିମା ଦିନଟିକୁ ଓଡ଼ିଶାରେ କାର୍ତ୍ତିକ କୁମାର-ପୂର୍ଣ୍ଣିମା କହନ୍ତି । ତାହା ଏକ ଅନୁଧ୍ୟାନର ବିଷୟ । ଓଡ଼ିଶାରେ ଏହି ଉତ୍ସବଟି ଆବାଳବୃଦ୍ଧବନିତାଙ୍କର ପାଳନୀୟ ଉତ୍ସବ ନ ହୋଇ ମୁଖ୍ୟତଃ କୁମାର କୁମାରୀଙ୍କର ଉତ୍ସବ ।

ଅନ୍ୟଏକ ପୌରାଣିକ ଆଖ୍ୟାୟିକାରୁ ଜଣାଯାଏ ଯେ କୃଷ୍ଣ, ରୁକ୍ମିଣୀ ଓ ସତ୍ୟଭାମା ଦିନେ ଅଶ୍ୱିନ ପୂର୍ଣ୍ଣମୀ ରାତିରେ ପଶା ଖେଳୁଥିଲେ । ଏହି ସମୟରେ କଟନାମକ ଏକ ରାକ୍ଷସ ଶଙ୍କାକ୍ରାନ୍ତ ମଣି ଲୋଭରେ ସତ୍ୟଭାମାଙ୍କ ପାଖକୁ ଆସିବା ସମୟରେ ଗରୁଡ ଦ୍ୱାରା ନିହତ ହୋଇଥିଲା । ମାତ୍ର ରବିବିଶେଷରେ ତାହାକୁ ପୁନର୍ଜୀବିତ

ଦେଖି ରୁକ୍ମିଣୀ କୃଷ୍ଣଙ୍କୁ ଏହାର କାରଣ ଜିଜ୍ଞାସା କରିଥିଲେ । କୃଷ୍ଣ କହିଥିଲେ ଯେ କୁମାରପୂର୍ଣ୍ଣିମୀ ରାତିରେ ଚନ୍ଦ୍ର ଲୋକରୁ ଅମୃତ-ବୃଷ୍ଟି ହୁଏ । ଉକ୍ତ ରାସଟି ସେହି ଅମୃତ ଲାଭରେ ସଂଶ୍ଳିଷ୍ଟ ହୋଇଅଛି । ସମ୍ଭବତଃ ସେହି ପୌରାଣିକ ସ୍ମୃତିର ଉଦ୍‌ବୋଧନ ଓ ଅନୁଧ୍ୟାନ କରିବା ସଙ୍ଗେ ସଙ୍ଗେ ଦେହର ପୁଷ୍ଟି ଓ ମନର ପ୍ରଫୁଲ୍ଲତା ବୃଦ୍ଧି ନିମିତ୍ତ ଏହି ପର୍ବଟି ପ୍ରଥମେ ପ୍ରଚଳିତ ହୋଇଥିଲା । ଏଥିରୁ ଅନୁମେୟ ସେହି କାରଣରୁ କୁମାର କୁମାରୀମାନେ ଏହି ରାତିରେ ଜାଗର ରହି କେଉଁ ସୁଦୂର ଅତୀତ କାଳରୁ ଚନ୍ଦ୍ରାଲୋକରେ କ୍ରୀଡ଼ା କରି ଆସୁଅଛନ୍ତି ।

ଆୟୁର୍ବେଦ ଶାସ୍ତ୍ର ପ୍ରଣେତା ମହର୍ଷି ଶୁଶ୍ରୁତଙ୍କ ମତରେ କୁମାର ଏକ ଗ୍ରହବିଶେଷ । ବାଳକମାନଙ୍କ ପ୍ରତି ଏହାର ଉପଦ୍ରବ ହୋଇ ଥାଏ । ତେଣୁ ଆୟୁର୍ବେଦ ଶାସ୍ତ୍ରୋକ୍ତ ଏହି ଗ୍ରହଶାନ୍ତି ମୂଳକ କୌଣସି ବିଧି ସହିତ ଏହି ପର୍ବର ସଂପର୍କ ଥିବା ମଧ୍ୟ ଅନୁମିତ ହୁଏ । ଯାହା-ହେଉ ଏହି ସବୁ ବିଷୟ କୁମାରପୂର୍ଣ୍ଣିମୀର ପ୍ରାଚୀନତାକୁହିଁ ନିର୍ଦ୍ଦେଶ କରେ ।

ଭାରତର ବିଭିନ୍ନ ପ୍ରଦେଶରେ କୋଜାଗର ପୂର୍ଣ୍ଣିମା ସବର୍ଣ୍ଣ ହିନ୍ଦୁମାନଙ୍କ ମଧ୍ୟରେ ଅଳ୍ପ ବହୁତ ପ୍ରଚଳିତ ଥିଲେହେଁ ଓଡ଼ିଶାରେ ଏହା ଅତ୍ୟନ୍ତ ଆଡ଼ମ୍ବର ଓ ଆନନ୍ଦ ଉତ୍ସବର ସହିତ ପାଳିତ ହୁଏ । ଏ ଦିନର ପୂର୍ଣ୍ଣ ଚନ୍ଦ୍ରକୁ ରାତିରେ ସବଂଶ ଉତ୍ସବ ହୁଏ । କୁମାର-କୁମାରୀମାନେ ନୂଆଲୁଗା ପିନ୍ଧି ଆମୋଦ ପ୍ରମୋଦରେ ଏହି ଦିନଟି କଟାନ୍ତି । ବିଶେଷଭାବେ କୁମାରୀମାନେ ମାସକ ଆଗରୁ ଅର୍ଥାତ୍ ଇନ୍ଦୁ-ପୂର୍ଣ୍ଣିମା ଠାରୁ ପ୍ରତି ରାତିରେ ନାନାପ୍ରକାର କ୍ରୀଡ଼ା କୌତୁକ ମଧ୍ୟରେ 'କୁଆଁର ପୁନେଇ ଗୀତ' ବୋଲନ୍ତି; ମାତ୍ର ଏହି ପୂର୍ଣ୍ଣିମା ରାତିରେ ଗୀତ ଓ ଆମୋଦ ପ୍ରମୋଦର ମାତ୍ରା ଚରମସୀମାକୁ ଉଠିଯାଏ ।

ପିଲାଙ୍କ 'ଗୋଡ଼ି ଦିଅଦେଇ' ଖେଳଠାରୁ ଝିଅବୋହୂମାନଙ୍କର ପୁଚି, ପଞ୍ଝା, ଗଡ଼ଣାଗଡ଼ି, ଚକ୍କିପକା, ଅପଟପ ଟୈ, ହାଲେମଦେଧା, ଦଅଁଣୀ କାଟିବା, ପୁଚେଇ କାଟିବା ଏବଂ ବଡ଼ଙ୍କ ଜୁଆଖେଳ ପର୍ଯ୍ୟନ୍ତ ସବୁ ଏଇ କୁଆଁର ପୁନେଇ ଗ୍ରିତରେ କ୍ରୀଡ଼ା ଅବାରଣୀୟ । ବିଶେଷତଃ ଅକ୍ଷକ୍ରୀଡ଼ା ଉପବାସ ଦିବସରେ ନିଷିଦ୍ଧ ହେଲେହେଁ କୁମାରପୂର୍ଣ୍ଣିମୀରେ ଜାଗ୍ରତ ରହି ଅକ୍ଷକ୍ରୀଡ଼ା କଲେ ଲକ୍ଷ୍ମୀ ବିଚ୍ଚା ହୁଅନ୍ତି ବୋଲି ହିନ୍ଦୁଙ୍କର ବିଶ୍ବାସ ।

ଏହି ଉତ୍ସବଦିନରେ ଧନୀ ଦରିଦ୍ର ନିର୍ବିଶେଷରେ ନୂଆ ଲୁଗା ପିନ୍ଧିବା ପ୍ରଥା ଓଡ଼ିଶାରେ ବହୁଦିନରୁ ପ୍ରଚଳିତ ଅଛି । ଅଷ୍ଟାଦଶ ଶତାବ୍ଦୀରେ ରଚିତ ପାଇକଖେଦା କାବ୍ୟରେ ଏଇ କୁମାର-ପୂର୍ଣ୍ଣିମୀ ଦିନ ନବବସ୍ତ୍ର ପିନ୍ଧିବା ବିଷୟଟି ସ୍ପଷ୍ଟଭାବେ ଲିଖିତ ଅଛି—

"ବିଜୟ ଦଶମୀ ଦିନରେ, ଗମିବେ ଯୁବା ଅଖଡ଼ାରେ ।
ଶିରେ ବାନ୍ଧିପାଗ, କରି ଅନୁରାଗ, ମଙ୍ଗଳା ସ୍ମରିବେ ଚିତ୍ତରେ । ୮।
ଦୁବ ଦଶନ୍ଧେରି ବାନ୍ଧିବେ । ଗୁଆ ହଳଦୀ ମନ୍ତୁରିବେ,
ସାତ ଘଁଡ଼ିଠାରେ କରି ଅନୁକୂଳ, ଭୋଇ ମୂଳ ତୁଲେ ଗମିବେ ॥
ଯେତୁ ବୀରଗଣେ ଗମିବେ । ସାନେ ରସକୋରି ବାଣ୍ଟିବେ
ଘରେ ଥାଇ ଭାଇ 'କୁମାର ଉତ୍ସବ' ପାଳନେ ନବବସ୍ତ୍ର ଦେବେ ।
୭ମ, ପଟଳ ୧୧।୧୨ ପଦ ।

ଅର୍ଥାତ ଦଶହରା ବେଳେ ବୀରମାନେ ଯେତେବେଳେ ଯୁଦ୍ଧ-ଯାତ୍ରାରେ ବହିର୍ଗତ ହେବେ, ସେତେବେଳେ ସେମାନେ ସାନ ସାନ ପିଲାଙ୍କୁ ରସକୋରି ବିତରଣ କରିବେ ଓ ଭାବୀ କୁମାରପୂର୍ଣ୍ଣିମା ଉତ୍ସବ ପାଇଁ ନୂଆ ଲୁଗା ଦେଇ ଯାଇଥିବେ । ଓଡ଼ିଶାର ସର୍ବତ୍ର ଓ ସବୁ ସମ୍ପ୍ରଦାୟ ମଧ୍ୟରେ ଏଇ କୁମାରପୂର୍ଣ୍ଣିମା ଉତ୍ସବ ଉଦ୍‌ଯାପିତ ହୁଏ । ନାନା ପ୍ରକାର ଗୀତ ଗାଇ ଆମୋଦ ଉତ୍ସବ କରିବା,

ଜହ୍ନୀଫୁଲରେ କୋଠି ପ୍ରଭୃତି କରିବା ଯେପରି ବ୍ୟାପକ ଓ ଅନୁଷ୍ଠାନିକ ଭାବରେ ପ୍ରତିପାଳିତ ହୁଏ, ତାହା ଅନ୍ୟ କୌଣସି ପ୍ରଦେଶରେ ଏତେ ଆନୁଷ୍ଠାନିକ ଭାବରେ ସାଧାରଣତଃ ହୁଏ ନାହିଁ । ଆଶ୍ୱିନ ମାସର ଶୁକ୍ଳ ଅଷ୍ଟମୀ ( ମହାଷ୍ଟମୀ ) ଠାରୁ ପୂର୍ଣ୍ଣିମୀ ପର୍ଯ୍ୟନ୍ତ ପ୍ରତିଦିନ ସନ୍ଧ୍ୟା ସମୟରେ ଝିଅମାନେ ଚଉରାମୂଳରେ ଜହ୍ନୀଫୁଲରେ ଗୋଟିଏ ଗୋଟିଏ କୋଠି ତିଆରି କରନ୍ତି । ଏହି କୋଠି ମଝିରେ ଜହ୍ନୀଫୁଲରେ ଗୋଟିଏ ଗୃହ ତିଆରି ହୁଏ । କୋଠିରେ ଅରୁଆ ଚାଉଳ, ୭ଖଣ୍ଡ ହଳଦୀ, ଫୁଟଣ, କପା, ଲୁଣ ପ୍ରଭୃତି ଦିଆଯାଏ । ତା'ପରେ କୁମାରୀମାନେ ତିନିଅଞ୍ଜୁଳି ଜହ୍ନୀଫୁଲ ତୁଳସୀଗଛ ଉପରକୁ ପକାନ୍ତି । ଏହି ସାତଦିନ ମଧ୍ୟରେ କାକୁଡ଼ି ପ୍ରଭୃତି ଯେ କେତୋଟି ପଦାର୍ଥ ଝିଅମାନେ ଅଞ୍ଜୁଳି ଧରିଥାନ୍ତି, ତାହା ୭ଦିନ ପର୍ଯ୍ୟନ୍ତ ଖାଆନ୍ତି ନାହିଁ ।

କୁମାର ପୂର୍ଣ୍ଣିମାର ପୂର୍ବଦିନରେ କୁମାରୀମାନେ ରାତିସାରା ରହି ପୁଚି ଖେଳନ୍ତି । ପୁନିଅଦିନ ସକାଳ ହେବା ଆଗରୁ ଓପେଇଡ଼ୀମାନଙ୍କର ମା, ଖୁଡ଼ୀ ବା ଭାଉଜ ପ୍ରଭୃତି ପୂର୍ବରୁ କୋଠି ତୋଳା ହଳଦୀକୁ ବାଟି ଝିଅମାନଙ୍କ ଲଗାଇବା ପାଇଁ ରଖିଥାଆନ୍ତି । ଅଞ୍ଜୁଳି ପାଇଁ ଲିଆ ( ଖଇ ) ଭଜା ରଖିଥାନ୍ତି । ଅବିବାହିତା ଝିଅ ଓ ଜ୍ୟେଷ୍ଠ ପୁଅମାନେ ଗାଧୋଇସାରି ଆସିଲାପରେ ମା, ଖୁଡ଼ୀ ପ୍ରଭୃତି ପୁଅମାନଙ୍କୁ ନୂଆ ଲୁଗା, ଚନ୍ଦନପାଟି ଓ ଝିଅମାନଙ୍କୁ ଅଳତା, ସିନ୍ଦୁର, କାଚ, ଗହଣା ଦେଇ ସଜେଇ ଚଉରାମୂଳକୁ ନେଇଯାନ୍ତି । ହୁଳହୁଳି ଦେଇ ସୂର୍ଯ୍ୟଙ୍କ ଉଦ୍ଦେଶ୍ୟରେ ତିନୋଟି ଅଞ୍ଜୁଳି ପ୍ରଦାନ କରନ୍ତି । ଏହି ଅଞ୍ଜୁଳି ସବୁ ଗୋଟିଏ କୁଲାରେ ସଂଗୃହୀତ ହୋଇ ରହେ । ଅଞ୍ଜୁଳିରେ ଲିଆ ସହିତ ଯଥାକ୍ରମେ ପ୍ରଥମରେ ଗୁଆ, ଗୁଡ଼, କଦଳୀ, ଛେନା, ଦ୍ୱିତୀୟରେ ନଡ଼ିଆ ଓ ତୃତୀୟରେ ଜହ୍ନି, କାକୁଡ଼ି ଓ

ତାହାର ଫୁଲ୍ ଥାଏ । ଅଞ୍ଜୁଳି ଦିଅ ହୋଇଥିବା ସେ ସବୁ ଲିଆ, ନଡ଼ିଆ, ଛେନା, କଦଳୀ ପ୍ରଭୃତି ଚକଟା ହୋଇ ସନ୍ଧ୍ୟାବେଳେ ସେଥିରେ ଜହ୍ନ ତିଆରି ହୁଏ । ଦିବସରେ କୁମାରୀମାନେ ଲଘୁ ଆହାର କରି ଉପବାସ କରନ୍ତି । ଠିକ୍ ସନ୍ଧ୍ୟାସମୟରେ ବ୍ରାହ୍ମଣ ପୂର୍ବୋକ୍ତ ତଳସୀମୂଳରେ ଜହ୍ନ ପୂଜା କରେ । ମାତ୍ର ଏଦିନ ଜହ୍ନୀଫୁଲ କୋଟି ତିଆରି ନ ହେଲେହେଁ ପୂର୍ବପରି ଝିଅମାନେ ଜହ୍ନକୁ ଜହ୍ନୀଫୁଲ ଅଞ୍ଜୁଳି ଦିଅନ୍ତି । ଜହ୍ନପୂଜା ଶୀଘ୍ର ଶେଷ ହେବା ବିଧେୟ । ଚାନ୍ଦ ବୁଢ଼ା ହେଲେ ବୁଢ଼ା ଜୁଆଁଇ ମିଳେ ବୋଲି କହନ୍ତି । ଡାଲା ବା ବଡ଼ ବଡ଼ ଟାଙ୍ଗରାରେ କାକୁଡ଼ିପତ୍ର ପୁରି ହୋଇ ତା' ଉପରେ ଚାନ୍ଦ ତିଆରି ହୁଏ । ବୟସ୍କାମାନେ ଏହି ଚାନ୍ଦ ତିଆରିକରି ଆଣନ୍ତି । ଚାନ୍ଦପୂଜା ପରେ ଝିଅମାନେ ସେଠାରୁ ଗୋଟିଏ ଗୋଟିଏ ଜହ୍ନ ନେଇ ବାହାରଘର କବାଟ କଣକୁ ଚାଲିଯାନ୍ତି । ସେଠାରେ ଚାନ୍ଦକୁ ଅଡ଼େଇଥର ଖାଇ ଅବଶିଷ୍ଟାଂଶକୁ ନେଇ ଚପାଖଣ୍ଡିରେ ପକାଇଲା ବେଳେ ପାଣିତଳ ଖୋଜନ୍ତି । ଯାହା ହାତରେ ପଡ଼େ ତାହାକୁ ଧରି ଅଗଣାକୁ ଆସି ତାକୁ ଚାନ୍ଦ ଉଆଇଁ ଫିଙ୍ଗିଦିଅନ୍ତି । ତା'ପରେ ଭୋଗ ଦ୍ରବ୍ୟ ପାଖ ପଡ଼ୋଶୀଙ୍କୁ ଦିଆନିଆ କରି ନିଜେ ଖାଆନ୍ତି । ଏହି ସମୟରେ ପରସ୍ପର ମଧ୍ୟରେ ମୈତ୍ରୀ ସ୍ଥାପନ ନିମିତ୍ତ ପରସ୍ପର ଯାଠିକୁ ଚାନ୍ଦ ଦିଅଦେଇ ହୋଇ 'ଚାନ୍ଦ' ବସନ୍ତି । ତା'ପରେ ବିଭିନ୍ନ କ୍ରୀଡ଼ା କୌତୁକ ଓ କୁଆଁରି ପୁନେଇ ଗୀତ ବୋଲି ବୋଲି ରାତି ପାହିଯାଏ ।

ପରଦିନ ସକାଳୁ କୁମାରୀମାନେ ଅଗାଧୁଆରେ ସାତ ପ୍ରକାର ଶାଗ ତୋଳନ୍ତି । ଗାଧୋଇସାରି ମାମାନେ ପୂର୍ବର ଫୁଟଣ ଓ ଲୁଣ ଦେଇ ତିଆରି କରିଥିବା ଶାଗ ଖରଡ଼ା ଓ ପଖାଳଭାତ ଖାଆନ୍ତି । ଏହିପରି କୁମାରପୂର୍ଣ୍ଣିମୀ ଉତ୍ସବ ଉଦ୍‌ଯାପିତ ହୁଏ । ଏ

ସବୁ ଚଳଣି ପ୍ରଥା ଓ ବିଶ୍ୱାସ ଯେପରି ହାସ୍ୟାସ୍ପଦ ସେହିପରି ଅଧୁନିକ ଶିକ୍ଷିତମାନଙ୍କ ନିକଟରେ ଅଜ୍ଞ ପ୍ରାଚୀନ କୁସଂସ୍କାର ବୋଲି ପରିଗୃହୀତ ହେବା ସ୍ୱାଭାବିକ । ଯାହାହେଉ, ଏହି ସବୁ ନିର୍ଦ୍ଦୋଷ ଆମୋଦ, ପ୍ରମୋଦ ଓ ଫୂର୍ତ୍ତି ପ୍ରଚଳିତ ପ୍ରଥା ପଛରେ ଯେଉଁ ସାମାଜିକ ସଂସ୍କାର ଓ ବିଶ୍ୱାସର ସଂକେତ ଅଛି ତାହା ଅନୁମାନ କରିବା କଠିନ ।

ଆଜିକାଲି ଏ ସବୁ ପୁରୁଣା ଗୀତ ଓ ନୃତ୍ୟ ସବୁ ଲୋପ ହୋଇ ଆସୁଛି । ତଥାପି କୁଆଁରପୁନେଇ ରାତିରେ ଯେ କେତେ ପ୍ରକାର ଗୀତ ବିଭିନ୍ନ ବ୍ୟାୟାମ ଓ ନୃତ୍ୟ ସହ ଆବୃତ୍ତି କରାଯାଏ ସେମାନଙ୍କ ମଧ୍ୟରୁ ଉଲ୍ଲେଖଯୋଗ୍ୟ ହେଉଚି ପୁଚି, ପଞ୍ଚା ( ସମ୍ମିଳିତ ଗୀତ ), ଆପଟପାଟୁ ( ଦୁଇ ଗୋଡ଼କୁ ପେଣ୍ଡାରେ ଏକ ସମୟରେ ବାଡ଼େଇବା ଖେଳ ) ଇତ୍ୟାଦି, ଏଇସବୁ କ୍ରୀଡ଼ା କୌତୁକ ସମୟରେ ଯେଉଁ ସବୁ ପ୍ରାଚୀନ ଗୀତ ଗାନ ହୁଏ ତାହା ଏହିପରି—

ପରବାସୀଆର ଚଟୁ,
ଅଦିନେ ମୋ ଭାଇ ଦୂର ଗୃହକେଣ୍ଡି କେତେ ବାଆପାଣି ଘଟୁ ।
ବାଆ କଲେ ବରଷିବୁ,
ଅଦିନେ ମୋ ଭାଇ ଦୂର ଗୃହକିଏ କିଏ ରାନ୍ଧି ପରଶିବୁ ।
ତାଳପତ୍ର ଚେକା ଚେକା,
ଘୋଡ଼ା ମାରି ଦେଲି ନୀଳଚିରିକା ଭାଇ ଯିବେ କଟେରିକି ।
ସାପ ପଶିଗଲା ଖାତେ,
ଭାଇ ପଶିଗଲେ ସାହାବ ମେଣ୍ଟେ ଫେର ଲେଉଟିଗଲା ହାତେ ।
ରଙ୍ଗ ଧାନ କିଏ କୁଟି ନେଇଛି ଲୋ ବାଟରେ ପଡ଼ିଛି ଚଷ୍ଟ
ଗାଁ ମାଇପେ ଲୋ ହୁଳହୁଳି ଦିଅ, ମୋ ଭାଇ ବେଦୀରେ ବସୁ ।

ଏହିଦିନ ସନ୍ଧ୍ୟାରେ ଜଗନ୍ନାଥଙ୍କ ମନ୍ଦିରରେ ମଧ୍ୟ ଜଗନ୍ନାଥ ଓ ଲକ୍ଷ୍ମୀଙ୍କ ମଧ୍ୟରେ ଅକ୍ଷକ୍ରୀଡ଼ା ହୁଏ ଓ ଜଡ଼ିତ ଫୋଟକା ମଧ୍ୟରେ ଫଗୁ (ଅବିର) ପାଣି ପୁରାଇ ଜଗନ୍ନାଥ ଓ ଲକ୍ଷ୍ମୀ ପରସ୍ପର ପ୍ରତି ନିକ୍ଷେପ କରିବା ବିଧି ସବୁ ଅନୁଷ୍ଠିତ ହୁଏ । ଏହି ସମୟରେ ଅଙ୍କୁରିତ ମୁଗ ଜଗନ୍ନାଥଙ୍କ ନିକଟରେ ନୈବେଦ୍ୟରେ ଲାଗେ । ଶରତ ଓ ବସନ୍ତ କାଳରେ ବସନ୍ତରୋଗର ପ୍ରତିଷେଧକ ଭାବରେ ଏହି ମୁଗ ଅତୀବ ଉପକାରୀ ।

ଯାହାହେଉ ଏହି ପର୍ବଟିରୁ ଓଡ଼ିଆ ଜାତୀୟଜୀବନର ସୌନ୍ଦର୍ଯ୍ୟାନୁରାଗ, ପ୍ରାକୃତିକ ଶୋଭାରେ ତନ୍ମୟତା, ଜୀବନର ସରସ, ସ୍ୱଚ୍ଛନ୍ଦ ଉପଭୋଗ ଲାଗି ଗଭୀର ପ୍ରୀତିର ନିଦର୍ଶନ ଏବଂ କୁମାରୀ ଜୀବନର ଆଶା, ଅଭିଳାଷ, ଦୁଃଖସୁଖ ଅନୁଭୂତି ପ୍ରଭୃତିର ବର୍ଣ୍ଣନାରେ କବିତ୍ୱ ସ୍ଫୁରଣ ଇତ୍ୟାଦି ଜଣାଯାଏ । ତା'ଛଡ଼ା ଉପବାସ କରିବା ବିଧି ମୂଳରେ ମଧ୍ୟ ବିଜ୍ଞାନସମ୍ମତ ଓ ଦୈହିକ ଉପକାରୀ ନୀତି ଅନ୍ତର୍ନିହିତ ରହିଛି । ଶରତ କାଳରେ ପୃଥିବୀର ରସ ଶୁଖି ଆସିବା ସଙ୍ଗେ ସଙ୍ଗେ ଦେହରୁ ରସ ମଧ୍ୟ ଶୁଖିଯାଏ । ଅଭ୍ୟାସ ବଶତଃ ରସାଧିକ୍ୟ ଖାଦ୍ୟ ଗ୍ରହଣ କଲେ ବର୍ଷାଦିନର ସଞ୍ଚିତ ରସ ଶୁଖି ନ ପାରି ଦେହ ଅସୁସ୍ଥ ହୁଏ । ତେଣୁ କାର୍ତ୍ତିକ ମାସରେ ଖାଦ୍ୟ ସମ୍ବନ୍ଧରେ ସଂଯମ ( ହବିଷ୍ୟ ବ୍ରତ ) ବା ଦିନାନ୍ତରେ ଥରେ ମାତ୍ର ଭୋଜନ ହିନ୍ଦୁଶାସ୍ତ୍ରରେ ନିର୍ଦ୍ଦିଷ୍ଟ ହୋଇଅଛି । ତାହା ଏହି କୁମାର ପୂର୍ଣ୍ଣିମାଠାରୁହିଁ ଆରମ୍ଭ କରାଯାଇଥାଏ ।

ଦୀର୍ଘ ତିନିଶହ ବର୍ଷର ପରାଧୀନତା ଏବଂ ବହୁ ଅର୍ଥାଭାବ, ଦୈନ୍ୟ ଓ ବ୍ୟାଧିର ଦାରୁଣ ତାଡ଼ନା ଯୋଗୁଁ ଓଡ଼ିଆ ଜାତୀୟ ଜୀବନରୁ ସରସତା ଓ ଉତ୍ସବର ଉତ୍ସ ଶୁଷ୍କପ୍ରାୟ ହୋଇ ଯାଇଥିଲେହେଁ ଏହା ସମ୍ପୂର୍ଣ୍ଣରୂପେ ନିଃଶେଷିତ ହୋଇ ଯାଇନାହିଁ । ସେହି

ରଖି ଆସିଅଛି । ଲକ୍ଷ ଲକ୍ଷ ପ୍ରାଣର ଆଶା ଅଭିଳାଷ, ପ୍ରଭୂତ ଉନ୍ନତଶାଳୀ ଧନଜନପୂର୍ଣ୍ଣ ନଗର ଅକାଳରେ ଏହି ଯୁଦ୍ଧର ବହ୍ନିଶିଖା ମଧ୍ୟରେ ଧ୍ୱଂସମୁଖରେ ପତିତ ହୋଇଅଛି ।

ଏହିପରି ଏକ ଧ୍ୱଂସର ତାଣ୍ଡବଲୀଳା ମାନବସମାଜର ଦୀର୍ଘ ପ୍ରତୀକ୍ଷା ପରେ ୧୯୧୪ ମସିହାରେ ପ୍ରଥମ ମହାଯୁଦ୍ଧ ରୂପେ ଅଭିନୀତ ହେଲା । କରୁଣ ରକ୍ତପାତ ମଧ୍ୟରେ ଦୀର୍ଘ ଚାରିବର୍ଷ ପର୍ଯ୍ୟନ୍ତ ଏହି ମହାଯୁଦ୍ଧ ସାରା ବିଶ୍ୱକୁ ପ୍ଳାବିତ କରି ରଖିଥିଲା । ଏହିପରି ଏକ ବିଶ୍ୱଯୁଦ୍ଧର ପୁନର୍ବାବିର୍ଭାବ ମାନବର ବିସ୍ତୃତ ସଭ୍ୟତାକୁ ଧୂଳିସାତ୍ କରିଦେବ, ଏହି ଆଶଙ୍କାରେ ସଭ୍ୟତାର ସଂରକ୍ଷଣ ପାଇଁ ବିଶ୍ୱରେ ଶାନ୍ତିସ୍ଥାପନ ଏକମାତ୍ର ଉପାୟ ବୋଲି ଅନୁଭୂତ ହେଲା ।

ଏଣୁ ୧୯୧୮ ମସିହା ଜାନୁୟାରି ମାସରେ ଆମେରିକାର ସଭାପତି ଉଡ୍ରୋ ଉଇଲସନ୍ ବିଶ୍ୱଶାନ୍ତି ପ୍ରତିଷ୍ଠା ନିମନ୍ତେ ଏକ ରାଷ୍ଟ୍ର-ସଂଘ (League of Nations) ସ୍ଥାପନ କରିବାପାଇଁ ପ୍ରସ୍ତାବ କରିଥିଲେ । ଏହା ପୂର୍ବରୁ ଆନ୍ତର୍ଜାତିକ ଶାନ୍ତିସ୍ଥାପନ ପାଇଁ ବହୁ ଉଦ୍ୟମ ଏବଂ ପ୍ରଚେଷ୍ଟା ହୋଇଥିଲେହେଁ ଜାତି ଜାତି ମଧ୍ୟରେ ମତ ବିଭେଦ, ବିଜୟ ଲାଳସା, ସ୍ୱାର୍ଥପରତା, ଅତୀତର ସେ ସମସ୍ତ ଉଦ୍ୟମକୁ ବିଫଳ କରି ଦେଇଥିଲା । ଫଳରେ ମାନବପକ୍ଷେ ଶାନ୍ତି-ସ୍ଥାପନ ଏ ପର୍ଯ୍ୟନ୍ତ ଏକ ଦୁରୂହ ସମସ୍ୟା ହୋଇ ରହିଥିଲା । ସଭାପତି ଉଡ୍ରୋ ଉଇଲସନ୍‌ଙ୍କର ଏହି ମହତ୍ ଉଦ୍ଦେଶ୍ୟ ଏବଂ ଉଦ୍ୟମ ମାନବର ସମର-ଆତଙ୍କଗ୍ରସ୍ତ ପ୍ରାଣରେ ଆଶ୍ୱାସନା ଦେଲା । ତାଙ୍କର ଏହି ଉଦ୍ୟମ ମୂଳରେ ଖ୍ରୀଷ୍ଟିୟାନ୍ ଧର୍ମର ବିଶ୍ୱଭ୍ରାତୃଭାବ ନିହିତ ଥିବାର ଜଣାପଡ଼େ ।

ଆଶା ଓ ଆନନ୍ଦର ସଙ୍ଗୀତହିଁ, ଆଜି ସ୍ୱାଧୀନ ଓଡ଼ିଶାର ଶତ ଶତ କୁମାରୀ କଣ୍ଠରୁ ଧ୍ୱନିତ ହୋଇ ଉଠୁ ଓ ଚିରଦିନ ଜାତିର ପ୍ରାଣରେ ଆଶା ଓ ଆଶ୍ୱାସନାର ବାଣୀ ଶୁଣାଉ ।

ପ୍ରଶ୍ନ—୧ । କୁମାର ପୂର୍ଣ୍ଣିମାର ଆରମ୍ଭ ସମ୍ବନ୍ଧରେ ପଠିତ ବିଷୟରୁ ତୁମ୍ଭର କି ଧାରଣା ହୋଇଥାଏ ଉଲ୍ଲେଖ କର ।

୨ । ଆମ ଓଡ଼ିଶାର ଗାଁ ଗହଳରେ କୁମାରପୂର୍ଣ୍ଣିମା ପର୍ବ କିପରି ଭାବରେ ପାଳିତ ହୋଇଥାଏ ।

୩ । 'କୁମାର ପୂର୍ଣ୍ଣିମା ପର୍ବ ଓଡ଼ିଆ ଜାତୀୟ ଜୀବନର ସୌନ୍ଦର୍ଯ୍ୟାନୁରାଗ, ପ୍ରାକୃତିକ ଶୋଭାରେ ତନ୍ମୟତା, ଜୀବନର ସରସ, ସ୍ୱଚ୍ଛନ୍ଦ ଉପଭୋଗ ଲାଗି ଗଭୀର ପ୍ରୀତିର ନିଦର୍ଶନ ।' ଏହି ଉକ୍ତିର ସତ୍ୟତା ନିର୍ଣ୍ଣୟ କର ।

---

## ମିଳିତ ଜାତିସଂଘ

ଦ୍ୱନ୍ଦ୍ୱ ମାନବର ଆଦିମ ପ୍ରବୃତ୍ତି । ପୁରାକାଳରେ ପ୍ରସ୍ତର ଯୁଗରେ ମଧ୍ୟ ଆମ୍ଭେମାନେ ମାନବର ଏହି ସମରଲିପ୍ସାର ପରିଚୟ ପାଇଥାଉଁ । ସେତେବେଳେ ସେ ଆଦିମାନବର ଯୁଦ୍ଧ ଲାଳସା ବ୍ୟକ୍ତି ବ୍ୟକ୍ତିର ବିବାଦ ମଧ୍ୟରେ ସୀମାବଦ୍ଧ ଥିଲା । ମାତ୍ର ସଭ୍ୟତାର ଅଗ୍ରଗତି ସଙ୍ଗେ ସଙ୍ଗେ ମାନବର ଗୋଷ୍ଠୀଗତ ଜୀବନ ଆରମ୍ଭ ହେଲା ଓ ଗୋଷ୍ଠୀ ଗୋଷ୍ଠୀ, ଜାତି ଜାତି ମଧ୍ୟରେ ବିବାଦର ସୂତ୍ରପାତ ହେଲା । ଏହିପରି ଯୁଦ୍ଧ ମାନବର ପ୍ରବୃତ୍ତି ରୂପେ ସାରା ଜଗତକୁ କୁତ୍ସିତ ପୈଶାଚିକତାରେ ଆବଦ୍ଧ କରି

ଏହି ରାଷ୍ଟ୍ରସଂଘ ବିଭିନ୍ନ ଦେଶମାନଙ୍କର ମିଳିତ ଉଦ୍ୟମରେ ସ୍ଥାପିତ ହେଲା ଏବଂ ବୟାଳିଶ ଗୋଟି ରାଜ୍ୟ ଏହି ରାଷ୍ଟ୍ର ସଂଘରେ ଯୋଗଦାନ କରିଥିଲେ । ଏହି ଜାତିସଂଘର ପ୍ରଧାନ ଲକ୍ଷ୍ୟ



ଶାନ୍ତିରକ୍ଷା ଏବଂ ଆନ୍ତର୍ଜାତିକ ବିବାଦ ଓ କଳହ ସମୂହର ସମାଧାନ । ମାନବଜାତିର ନୈତିକ ଓ ଆର୍ଥିକ ଉନ୍ନତି ଏହାର ଅନ୍ୟତମ ମହତ୍ ଉଦ୍ଦେଶ୍ୟ ।

କିନ୍ତୁ ଉଚ୍ଚ ଆଦର୍ଶ ଏବଂ ମହତ୍ ଉଦ୍ଦେଶ୍ୟରେ ଏହି ଅନୁଷ୍ଠାନଟି ଗଠିତ ହୋଇଥିଲେ ମଧ୍ୟ ଏହାର ଭିତ୍ତି ସୁଦୃଢ଼ ନଥିଲା । ଜର୍ମାନୀ, ଜାପାନ, ଇଟାଲି ପ୍ରଭୃତି ପ୍ରଧାନ ଶକ୍ତିମାନେ ଏଥିରେ ଯୋଗଦାନକରି ରାଷ୍ଟ୍ରସଂଘର ନୀତିନିର୍ଦ୍ଦେଶର ବିରୁଦ୍ଧାଚରଣ କରିଥିଲେହେଁ ରାଷ୍ଟ୍ରସଂଘ ସେମାନଙ୍କ ବିରୁଦ୍ଧରେ କୌଣସି ଦମନନୀତି ପ୍ରୟୋଗ କରିପାରି ନଥିଲା ଏବଂ ସେମାନେ ସମଗ୍ର ବିଶ୍ୱକୁ କରଗତ କରିବାପାଇଁ ଆଶା ପୋଷଣ କରିଥିଲେ । ତେଣୁ ବିଶ୍ୱରେ ଶାନ୍ତିରକ୍ଷା ପାଇଁ ରାଷ୍ଟ୍ରସଂଘର ଏହି ସୁମହତ୍ ଉଦ୍ୟମ ଶିଥିଳ ହୋଇ ପଡ଼ିଲା । ଏହା ଫଳରେ ଦ୍ୱିତୀୟ ମହାସମର ପୃଥିବୀ ପୃଷ୍ଠରେ ସଂଘଟିତ ହେଲା ଏବଂ ଆଣବିକ ବୋମା ପ୍ରଭୃତି ମାରାତ୍ମକ ଅସ୍ତ୍ର ଯୁଗ ଯୁଗ ସଞ୍ଚିତ ମାନବ-ସଭ୍ୟତାକୁ ଧ୍ୱଂସ ମୁଖକୁ ଟାଣିନେଲା । ଅମାନୁଷିକ ଯୁଦ୍ଧ ବିଗ୍ରହ ପ୍ରତ୍ୟେକ ପ୍ରାଣରେ ମୃତ୍ୟୁର ଆତଙ୍କ ସୃଷ୍ଟି କରିଥିଲା । ଏଣୁ ଏହି ଯୁଦ୍ଧର ବିଭୀଷିକା ମଧ୍ୟରୁ ମାନବ ସମାଜକୁ ଉଦ୍ଧାର କରିବା ନିମନ୍ତେ ୧୯୪୫ ମସିହାରେ ରୁଷିଆ, ଇଂଲଣ୍ଡ, ଆମେରିକା ଏବଂ ଚୀନ ଦେଶର ନେତୃତ୍ୱରେ ମିଳିତ ଜାତିସଂଘ ସ୍ଥାପିତ ହୋଇଅଛି ।

ଷାଠିଏ ଗୋଟି ଦେଶର ସହଯୋଗରେ ଏକ ଦୃଢ଼ଭିତ୍ତି ଉପରେ ମିଳିତ ଜାତିସଂଘ ପୁନର୍ବାର ବିଶ୍ୱଶାନ୍ତି ଉଦ୍ଦେଶ୍ୟରେ ପ୍ରତିଷ୍ଠିତ ହେଲା । ସମ୍ପୃକ୍ତ ଦେଶମାନଙ୍କ ମଧ୍ୟରେ ଭ୍ରାତୃଭାବ ସଂରକ୍ଷଣ, ଆନ୍ତର୍ଜାତିକ ଶାନ୍ତି ଏବଂ ସମତା ସଂସ୍ଥାପନ ଏହାର ମୁଖ୍ୟ ଉଦ୍ଦେଶ୍ୟ ହୋଇଥିଲା । ଆନ୍ତର୍ଜାତିକ ଆଇନକାନୁନ ପ୍ରଣୟନ କରି ତତ୍ପ୍ରତି ସମୂହ ଭାବରେ ଆନୁଗତ୍ୟ ପ୍ରଦର୍ଶନ କରିବା ମାନବର ଜନ୍ମଗତ ଦାବୀ ଏବଂ ତାହା ପ୍ରତି ସମ୍ମାନ ପ୍ରଦର୍ଶନ କରିବା ଏବଂ ସଂସ୍କୃତି ମୂଳକ ନାନା ସମସ୍ୟା ସମାଧାନ କରିବା ଏହି

ମିଳିତ ଜାତିସଂଘର ଅନ୍ୟତମ ମହତ ଲକ୍ଷ୍ୟ ରୂପେ ସ୍ଥିର କରି ଯାଇଥିଲା ।

ଜାତିସଂଘର ଏହି ବିଭିନ୍ନ ଲକ୍ଷ୍ୟ ସମୂହକୁ ସୁଷ୍ଠୁ ରୂପେ କାର୍ଯ୍ୟକାରୀ କରିବା ପାଇଁ ଏହାକୁ କେତେଗୋଟି ବିଭାଗରେ ବିଭକ୍ତ କରି ହୋଇଅଛି । ପ୍ରଧାନତଃ ଏହା ଛଅଗୋଟି ବିଭାଗର ସମାବେଶରେ ଗଠିତ । ଯଥା—ସାଧାରଣ ପରିଷଦ, ନିରାପତ୍ତା ପରିଷଦ, ଅର୍ଥନୈତିକ ଓ ସାମାଜିକ ପରିଷଦ, ଟ୍ରଷ୍ଟିସିପ୍ ପରିଷଦ, ଆନ୍ତର୍ଜାତିକ ବିଚାରାଳୟ ଏବଂ ସେକ୍ରେଟାରିଏଟ୍ ।

ମିଳିତ ଜାତିସଂଘର ସମସ୍ତ ସଭ୍ୟଭୁକ୍ତ ଦେଶ ଏହି ସାଧାରଣ ପରିଷଦର ସଭ୍ୟରୂପେ ବିବେଚିତ ଏବଂ ଜାତିସଂଘର ପ୍ରତ୍ୟେକ ସଭ୍ୟଭୁକ୍ତ ଦେଶ ଏହି ପରିଷଦକୁ ପ୍ରତିନିଧି ପ୍ରେରଣ କରନ୍ତି । କିନ୍ତୁ ପ୍ରତ୍ୟେକ ଦେଶର ଏହି ପରିଷଦରେ ଗୋଟିଏ ମାତ୍ର ଭୋଟ ଦେବାର କ୍ଷମତା ଅଛି । ଏହି ସାଧାରଣ ପରିଷଦ ବର୍ଷକୁ ଥରେ ବସେ । ଏହି ବିଭାଗଟି ଜାତିସଂଘର ଏକ ପ୍ରଧାନ ଅଙ୍ଗ ଅଟେ । ସମସ୍ତ ଆବଶ୍ୟକ ଏବଂ ଗୁରୁତ୍ୱପୂର୍ଣ୍ଣ ବିଷୟର ଆଲୋଚନା ଏଠାରେ ହୁଏ ଏବଂ ଜାତିସଂଘର କର୍ମପନ୍ଥା, ନିୟମ, ନୀତିନିର୍ଦ୍ଦେଶ ଏହି ପରିଷଦଦ୍ୱାରା ନିର୍ଦ୍ଧାରିତ ହୁଏ । ଆନ୍ତର୍ଜାତିକ ଅଶାନ୍ତି, ଦେଶ ଦେଶ ମଧ୍ୟରେ କଳହ, ବିବାଦ ଇତ୍ୟାଦିର ସହଜ ସମାଧାନ ଏବଂ ଶାନ୍ତିରକ୍ଷା ପାଇଁ ମୁଖ୍ୟତଃ ଏହି ପରିଷଦର ଲକ୍ଷ୍ୟ ।

ଏତଦ୍‌ବ୍ୟତୀତ ନିରାପତ୍ତା ପରିଷଦ ଏହାର ଅନ୍ୟତମ ପ୍ରଧାନ ଶାଖା । ଏହାର ମୋଟ ସଭ୍ୟ ସଂଖ୍ୟା ଏଗାର । ତନ୍ମଧ୍ୟରୁ ପାଞ୍ଚଜଣ ସ୍ଥାୟୀ ସଭ୍ୟ । ଯଥା—ଇଂଲଣ୍ଡ, ରୁଷିଆ, ଫ୍ରାନ୍ସ, ଆମେରିକା ଓ ଚୀନ୍ । ମାତ୍ର ଅସ୍ଥାୟୀ ସଭ୍ୟ ଛ'ଜଣ । ଏମାନେ ଦୁଇବର୍ଷ ପାଇଁ ସାଧାରଣ ପରିଷଦଦ୍ୱାରା ନିର୍ବାଚିତ ହୁଅନ୍ତି । ମାତ୍ର କୌଣସି ଏକ

ବିଷୟରେ ନିର୍ଦ୍ଦିଷ୍ଟ ନୀତି ନିର୍ଦ୍ଧାରଣ ପାଇଁ ଉପରୋକ୍ତ ପାଞ୍ଚଟି ସ୍ଥାୟୀ ସଭ୍ୟ ଦେଶଙ୍କର ସମ୍ମତି ଆବଶ୍ୟକ । ଅନ୍ୟଥା କୌଣସି ଏକ ଆଇନ୍ ପ୍ରଣୟନ କରାଯାଇ ପାରିବ ନାହିଁ । ଏହା ଜାତିସଂଘର ପ୍ରଧାନ କାର୍ଯ୍ୟ ନିର୍ବାହକ ବିଭାଗ ଏବଂ ଜାତିସଂଘର ଶାସନ କ୍ଷମତା ପୂର୍ଣ୍ଣଭାବରେ ଏହି ବିଭାଗ ଉପରେ ନିର୍ଭର କରେ । ଜାତିସଂଘର ସଭ୍ୟଭୁକ୍ତ କୌଣସି ଦେଶମାନଙ୍କ ମଧ୍ୟରେ ବିବାଦ ଉପସ୍ଥିତ ହେଲେ କିମ୍ବା ସାମରିକ ଯୁଦ୍ଧର ସୂଚନା ମିଳିଲେ ନିରାପତ୍ତା ପରିଷଦ ଜାତିସଂଘର ପ୍ରଧାନ କର୍ତ୍ତୃପକ୍ଷ ହିସାବରେ ତାହାର ସମାଧାନ କରେ । ଜାତିସଂଘର କୌଣସି ଆଇନ ଲଂଘନ କଲେ, ଶାନ୍ତିରକ୍ଷା ପାଇଁ ଦମନନୀତି ପ୍ରୟୋଗ କରିବା ଉଦ୍ଦେଶ୍ୟରେ ଏହି ପରିଷଦ ଅଧୀନରେ ମଧ୍ୟ ଏକ ସୈନ୍ୟବାହିନୀ ରହିଅଛି । ଏହି ଦୃଷ୍ଟିରୁ ନିରାପତ୍ତା ପରିଷଦ ଜାତିସଂଘର ଏକ ପ୍ରଧାନ ଶାଖା ବା ଶାସନତାନ୍ତ୍ରିକ ବିଭାଗ ।

ଅର୍ଥନୈତିକ ଏବଂ ସାମାଜିକ ପରିଷଦ ଅଠରଜଣ ସଭ୍ୟଙ୍କୁ ନେଇ ଗଠିତ । ଏହି ସଭ୍ୟମାନେ ସାଧାରଣ ପରିଷଦଦ୍ୱାରା ନିର୍ବାଚିତ ହୁଅନ୍ତି । ଅନ୍ତର୍ଜାତିକ ଆର୍ଥିକ ଏବଂ ସାମାଜିକ ପରିସ୍ଥିତିର ଉନ୍ନତି ସାଧନ ପ୍ରଧାନତଃ ଏହି ବିଭାଗର କାର୍ଯ୍ୟ । ବିଭିନ୍ନ ଦେଶରେ ସାମାଜିକ ସଂସ୍କୃତିର ଅଭିବୃଦ୍ଧି, ଦେଶ ଦେଶ ମଧ୍ୟରେ ଆର୍ଥିକ ସଦ୍ଭାବ ସଂରକ୍ଷଣ ଏହି ପରିଷଦ ଉପରେ ନିର୍ଭର କରେ । ବିଶ୍ୱଶାନ୍ତି ପାଇଁ ମାନବ ଜାତିର ସମୂହ କଲ୍ୟାଣ ଉଦ୍ଦେଶ୍ୟରେ ଉନ୍ନତି ବିଧାୟକ କାର୍ଯ୍ୟ ସକଳ ଏହି ପରିଷଦଦ୍ୱାରା ସମାହିତ ହୁଏ । ଦେଶ ଦେଶ, ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ଯେଉଁ କ୍ଷମତାଲାଳସା ଯୁଦ୍ଧର ପ୍ରଧାନ କାରଣ ତାହାକୁ ଲୋପକରିବା ଏବଂ ସକଳ ଦେଶକୁ ସମାନ କ୍ଷମତା, ଅଧିକାର ଦେବା ଏହି ପରିଷଦର କାର୍ଯ୍ୟ । ଜାତି ସଂଘର

ସଭ୍ୟଭୁକ୍ତ ଦେଶମାନଙ୍କ ମଧ୍ୟରେ କଳହର ସୂତ୍ରପାତ ହେଲେ କିମ୍ବା ସେମାନଙ୍କ ମଧ୍ୟରେ ଅର୍ଥନୈତିକ କୌଣସି ବିରୋଧ ଭାବ ସୃଷ୍ଟି ହେଲେ ତାହା ଏହି ଅନ୍ତର୍ଜାତିକ ବିଚାରାଳୟରେ ବିଚାର କରାଯାଏ । ଏହାର ସଭ୍ୟସଂଖ୍ୟା ପନ୍ଦର ଏବଂ ପ୍ରତ୍ୟେକ ଦେଶ ଏହାର ସଭ୍ୟ ପଦ ପାଇଁ ମାତ୍ର ଜଣେ ପ୍ରତିନିଧି ନିର୍ବାଚନ କରି ପଠାନ୍ତି ।

ଏତଦ୍‌ବ୍ୟତୀତ ଜାତିସଂଘର ଆହୁରି କେତେ ଗୁଡ଼ିଏ ଅପ୍ରଧାନ ବିଭାଗ ରହିଅଛି, ଯାହାଦ୍ୱାରା ଅନ୍ତର୍ଜାତିକ ଶ୍ରମିକ ସମସ୍ୟା, ସ୍ୱାସ୍ଥ୍ୟ, ଖାଦ୍ୟ ଓ କୃଷିର ଉନ୍ନତି ପ୍ରଭୃତି ପ୍ରଧାନ ପ୍ରଧାନ କାର୍ଯ୍ୟସମ୍ପନ୍ନ ହୁଏ ।

ମିଳିତ ଜାତିସଂଘର ଏହି ସାତବର୍ଷର କାର୍ଯ୍ୟ କଳାପକୁ ପରୀକ୍ଷା କରି ଦେଖିଲେ ଜଣାଯାଏ ଯେ ଶାନ୍ତିରକ୍ଷା ଦିଗରେ ଏହି ଜାତିସଂଘ ଯଥାସାଧ୍ୟ ତାର ଲକ୍ଷ୍ୟସାଧନ କରିପାରିଛି, ଏହି ଅନୁଷ୍ଠାନର ପ୍ରଥମ ସଂପାଦକ ମିଃ ଟ୍ରିଗଭିଲଙ୍କର ଉଦ୍ୟମ, କର୍ମ-ତତ୍‌ପରତା, ନିଷ୍ଠା ଏହାର ସଫଳତାର ପ୍ରଧାନ କାରଣ ଅଟେ । ବିଂଶ ଶତାବ୍ଦୀରେ ଯୁଦ୍ଧ ଯୋଗୁ ଯେଉଁ ଜଟିଳ ପରିସ୍ଥିତି ଉପୁଜିଛି ତାହା ଜାତିସଂଘ ସମ୍ପୂର୍ଣ୍ଣ ଭାବରେ ସମାଧାନ କରିବାକୁ କ୍ଷମ ହୋଇ ନ ଥିଲେ ସୁଦ୍ଧା ଏହି ଅନୁଷ୍ଠାନ ଯୋଗୁଁ ବିଭିନ୍ନ ଜାତିମାନଙ୍କ ମଧ୍ୟରେ କମ୍‌ବିଦ୍ୱେଷ, ବିବାଦ, ଯୁଦ୍ଧଲାଳସା ବହୁ ପରିମାଣରେ କମିବାର ବିପୁଳ ସମ୍ଭାବନା ରହିଅଛି । ବାସ୍ତବରେ ଇଣ୍ଡୋନେସିଅର ସ୍ୱାଧୀନତା, ଇହୁଦୀମାନଙ୍କ ପାଇଁ ସ୍ୱତନ୍ତ୍ର ଦେଶ ଗଠନ ଏହି ଜାତି ସଂଘର କର୍ମତତ୍‌ପରତାର ପରମ ନିଦର୍ଶନ । କେବଳ ସେତିକି ନୁହେଁ, ବହୁ ବିରୋଧୀ ମତବାଦ, ଭିନ୍ନଧର୍ମନୀତି ମଧ୍ୟରେ ଏବଂ ବିଭିନ୍ନ ଜାତି ଓ ଦେଶ ମଧ୍ୟରେ ସଦ୍‌ଭାବ ଓ ଏକତା ସ୍ଥାପନ କରିବା ନିମିତ୍ତ ଏହି ଅନୁଷ୍ଠାନ ଶ୍ରେଷ୍ଠ ଏବଂ ଅଦ୍ୱିତୀୟ ।

ସାମାଜିକ ଏବଂ ସଂସ୍କୃତିମୂଳକ ଉନ୍ନତି ଦିଗରେ ଜାତିସଂଘ ବିଶ୍ୱଜନସମାଜରଁ ବହୁ ମଙ୍ଗଳମୟ କାର୍ଯ୍ୟ ସାଧନ କରିଅଛି । ଅନୁନ୍ନତ ଦେଶମାନଙ୍କୁ ଆର୍ଥିକ ସାହାଯ୍ୟ ଦାନ କରି, ନୂତନ ବିଶ୍ୱସ୍ୱାସ୍ଥ୍ୟ ବିଭାଗ ଉନ୍ମୋଚନ କରି ଏବଂ ଆନ୍ତର୍ଜାତିକ ନୀତି ନିୟମ ପ୍ରଣୟନ କରି ଶାନ୍ତି, ମୈତ୍ରୀ ଏବଂ ସୌଖ୍ୟ ସ୍ଥାପନର ଏକ ମହନୀୟ ଅନୁଷ୍ଠାନ ରୂପେ ଏହା କ୍ରମେ ଅଗ୍ରଗତି କରି ଚାଲିଛି । ସେହି ଦୃଷ୍ଟିରୁ ବିଶ୍ୱଶାନ୍ତି ପ୍ରତିଷ୍ଠା, ଅନ୍ୟାୟ ଅବିଚାରର ନିରପେକ୍ଷ ବିଚାର ମାନବିକ ସୁଖ ଶାନ୍ତି କାର୍ଯ୍ୟ କଳାପର ବିକାଶ ପାଇଁ ଏହି ମିଳିତ ଜାତିସଂଘ ପୃଥିବୀର ସର୍ବୋତ୍କୃଷ୍ଟ ଅନୁଷ୍ଠାନ । ଯୁଦ୍ଧର ବିଭୀଷିକା ପରେ ସମସ୍ତ ପୃଥିବୀ ଆଜି ଯେପରି ଶାନ୍ତିର କାମନା କରୁଛି ସେହି ଦୃଷ୍ଟିରୁ ମିଳିତ ଜାତିସଂଘ ଠାରୁ ଆମେ ବିପୁଳ ପ୍ରତ୍ୟାଶା କରିବା ସ୍ୱାଭାବିକ ।

ପ୍ରଶ୍ନ—୧ । 'ମିଳିତ ଜାତିସଂଘ' କହିଲେ କଅଣ ବୁଝାଯାଏ ? କେଉଁ ଉଦ୍ଦେଶ୍ୟ ନେଇ ଏହା ଗଠିତ ହୋଇଥିଲା ?

୨ । ମିଳିତ ଜାତିସଂଘର ବିଭିନ୍ନ ବିଭାଗର ସଂକ୍ଷିପ୍ତ ପରିଚୟ ପ୍ରଦାନ କର ।

୩ । ପୃଥିବୀ ବକ୍ଷରୁ ଯୁଦ୍ଧ, କଳହ, ଅଶାନ୍ତି ପ୍ରଭୃତି ଦୂର କରି ପାରିବାକୁ ଏ ସଂଘ କେତେଦୂର ସମର୍ଥ ହୋଇ ପାରିଛି ?

୪ । 'ମିଳିତ ଜାତିସଂଘ ପୃଥିବୀର ସର୍ବୋତ୍କୃଷ୍ଟ ଅନୁଷ୍ଠାନ ।' ଏହା କେତେଦୂର ସତ୍ୟ ?



## ଆମଦେଶର ଶିଳ୍ପ ଓ ଶିଳ୍ପୀ

ପୃଥିବୀରେ ଯନ୍ତ୍ରଯୁଗର ପ୍ରତିଷ୍ଠା ଓ ପ୍ରସାର ବର୍ତ୍ତମାନ ଅବାଧ । ଜୀବନଗତ ସମସ୍ୟାସମୂହ ଜଟିଳ ହେବା ସଙ୍ଗେ ସଙ୍ଗେ ସେଗୁଡ଼ିକର ସମାଧାନ ନିମନ୍ତେ ଓ ମାନବିକ ସଭ୍ୟତାର ଅଗ୍ର-ପ୍ରଗତି ନିମନ୍ତେ ମନୁଷ୍ୟ ଯନ୍ତ୍ରସଭ୍ୟତାକୁ ସ୍ୱାଗତ କରିବା ସ୍ୱାଭାବିକ । ମାନବିକ ସୁଖ ସ୍ୱାଚ୍ଛନ୍ଦ୍ୟ ବିଧାନ କରିବାରେ ଯନ୍ତ୍ରସଭ୍ୟତା ଏକାନ୍ତ ସହାୟକ ହୋଇଥିଲେ ହେଁ ଏହା ଆଧୁନିକ ମାନବକୁ ବହୁ ପରିମାଣରେ ଶ୍ରମକାତର ଓ ଆଳସ୍ୟପରାୟଣ କରିଥିବା ଦେଖାଯାଏ । ତଥାପି କର୍ମର ବିରାମ ନାହିଁ, କାରଣ କର୍ମହୀନ ଜୀବନରେ ଜୀବନର ଆନନ୍ଦ, ବଞ୍ଚିରହିବାର ସ୍ୱାଦ ଅନୁଭୂତ ହୋଇ ନ ଥାଏ । ସୁତରାଂ ଯନ୍ତ୍ରଶିଳ୍ପ ମାନବର କର୍ମ ଧାରାକୁ ନୂତନ ଓ ଜଟିଳ ପଥରେ ନିୟୋଜିତ କରିଥିଲେହେଁ ଏହାକୁ କର୍ମବିରତ କରାଇନାହିଁ ।

ଭାରତରେ ଆଧୁନିକ ଧରଣର ଯନ୍ତ୍ରଶିଳ୍ପର ପ୍ରସାରକାଳ ଖୁବ୍ କମ୍ ଦିନର— ମାତ୍ର ଶହେ ବର୍ଷ ତଳର କଥା । ପୁଣି ଆମ ଓଡ଼ିଶାରେ ଏହାର ପ୍ରଚଳନ ପୂର୍ଣ୍ଣଭାବରେ ନୂତନ କହିଲେ ଚଳେ । ଊନବିଂଶ ଶତାବ୍ଦୀର ମଧ୍ୟଭାଗ ପରେ ଏ ଦେଶରେ ଶିଳ୍ପଜାତ ପଦାର୍ଥର ଉତ୍ପାଦନ ନିମନ୍ତେ ଯାନ୍ତ୍ରିକଶକ୍ତି ପ୍ରଯୁକ୍ତ ହେଲା । ତା ହେଲେ ଭାରତର ଅତୀତ ଶିଳ୍ପର ଇତିହାସ ଏତେ ଗୌରବାବହ କିପରି ଥିଲା ? ଯନ୍ତ୍ରଶିଳ୍ପର ପ୍ରସାର ପୂର୍ବରୁ ଭାରତ ବିଭିନ୍ନ ଧରଣର ଶିଳ୍ପ କ୍ଷେତ୍ରରେ ଅତି ଉନ୍ନତ ଥିଲା । ଭାରତୀୟମାନେ ବହୁ ଶିଳ୍ପ ବିଦ୍ୟାରେ ଏକାନ୍ତ କୁଶଳୀ ଥିଲେ । ଆଧୁନିକ ଯନ୍ତ୍ରଶିଳ୍ପର ଜନ୍ମସ୍ଥଳୀ ଇଉରୋପର ଅଧିକାଂଶ ଅଞ୍ଚଳ ସେତେବେଳେ ଅସଭ୍ୟ ଓ ଅନୁନ୍ନତ ଲୋକମାନଙ୍କର ବସତିରେ ପୂର୍ଣ୍ଣ ଥିଲା । ସେତେବେଳେ କାରିଗରମାନଙ୍କ

ଶିଳ୍ପକୌଶଳ ଓ ଅର୍ଥନୈତିକ ସମୃଦ୍ଧି ନିମନ୍ତେ ଭାରତ ପ୍ରସିଦ୍ଧ ଥିଲା । ଲୌହ-ଶିଳ୍ପ, ବସ୍ତ୍ରଶିଳ୍ପ ପ୍ରଭୃତିରେ ଭାରତ ଆଦିମକାଳରୁ ଅତି ଉନ୍ନତ ଥିଲା । ସ୍ୱର୍ଣ୍ଣ ଓ ରୌପ୍ୟ ଖଚିତ ବସ୍ତ୍ର, କାରୁକାର୍ଯ୍ୟନିର୍ମିତ ରେଶମ ବସ୍ତ୍ର, ପଶମ ବସ୍ତ୍ର, କାଷ୍ଠ ଓ ହସ୍ତୀ ଦନ୍ତରେ ସୂଚୀ କାର୍ଯ୍ୟ ଖୋଦନ ପ୍ରଭୃତି ବହୁ ଉନ୍ନତ ଓ ସୁପ୍ରଶଂସିତ ଶିଳ୍ପଜାତ ପଦାର୍ଥ ଭାରତରେ ପ୍ରସ୍ତୁତ ହେଉଥିଲା । ଏ ସମସ୍ତ ପଦାର୍ଥ ଦେଶର ଅଭ୍ୟନ୍ତରରେ ବ୍ୟବହୃତ ହେଉଥିଲା ଓ ବିଦେଶକୁ ମଧ୍ୟ ପ୍ରେରିତ ହେଉଥିଲା । ବିଶେଷ ଭାବରେ ଲୌହ, ରେଶମ ଓ କାର୍ପାସଜାତ ବହୁ ପଦାର୍ଥ ବୈଦେଶିକ ବାଣିଜ୍ୟର ଅନ୍ତର୍ଭୁକ୍ତ ଥିଲା । ଏ ସମସ୍ତ ବ୍ୟତୀତ ଅତି ଉଚ୍ଚ ଦରର କଳା ଓ କାରୁକାର୍ଯ୍ୟ ପ୍ରାଚୀନଭାରତର କେତେକ ନଗରରେ ଉତ୍ସାହ ଲାଭ କରିଥିଲା । ସେ ସମୟରେ ରାଜକୀୟ ପରିବାର, ଧନୀକ ଓ ଅଭିଜାତ ସମ୍ପ୍ରଦାୟ ବ୍ୟକ୍ତିମାନଙ୍କର ବ୍ୟବହାର ନିମନ୍ତେ ବହୁ ଉଚ୍ଚ ଧରଣର ସୂକ୍ଷ୍ମ କାରୁକାର୍ଯ୍ୟମଣ୍ଡିତ ଶିଳ୍ପଜାତ ପଦାର୍ଥ ପ୍ରସ୍ତୁତ ହେଉଥିଲା । ବନାରସର ପିତ୍ତଳ ନିର୍ମିତ ପଣ୍ୟଦ୍ରବ୍ୟ, କାଶ୍ମୀର ଶାଲ, ମୁର୍ଶିଦାବାଦର ରେଶମ ଶିଳ୍ପ ସୁବିଦିତ ଥିଲା ।

ଏହି ଶିଳ୍ପ ଗୁଡ଼ିକ ଅଧିକାଂଶ କୁଟୀରଶିଳ୍ପ ଭାବରେ ବିକଶିତ ହୋଇଥିଲେ । ଭାରତ ଗ୍ରାମବହୁଳ ଦେଶ ହୋଇଥିବାରୁ ଏହି ଶିଳ୍ପ ଗାଁଗହଳକୁ କେନ୍ଦ୍ର କରି ପରିପୁଷ୍ଟ ହୋଇଥିଲା । ଭାରତରେ ଗ୍ରାମବାସୀମାନେ ନିଜର ଜୀବିକା ଅର୍ଜ୍ଜନ ନିମନ୍ତେ ମୁଖ୍ୟଭାବରେ କୃଷି ଉପରେ ନିର୍ଭର କରୁଥିଲେ ସୁଦ୍ଧା ପ୍ରତ୍ୟେକ ଗ୍ରାମରେ କେତେକ ନିର୍ଦ୍ଦିଷ୍ଟ ଶିଳ୍ପ ଉନ୍ନତି ଲାଭ କରିଥିଲା । ଏହି ଶିଳ୍ପବ୍ୟବସାୟ ଗୁଡ଼ିକ ବହୁ ପରିମାଣରେ କୌଳିକ ପରମ୍ପରା ସୂତ୍ରରେ ବିକଶିତ ହୋଇଥିଲା । ଫଳତଃ ଗ୍ରାମର ଅର୍ଥନୈତିକ ଅବସ୍ଥାକୁ ସ୍ୱଚ୍ଛଳ କରିବା ଦିଗରେ ଏ ଗୁଡ଼ିକ ସହାୟକ ଥିଲେ । ତା ଛଡ଼ା, ଏହି ଶିଳ୍ପଗୁଡ଼ିକ

ପୂର୍ବ୍ବପୁରୁଷାନୁକ୍ରମେ ଅନୁସୃତ ହୋଇ ଆସୁଥିବାନ୍ତୁ ପରିବାର ମଧ୍ୟରେ ପିତାଠାରୁ ପୁତ୍ର ବ୍ୟବସାୟ ଶିକ୍ଷା କରିବାର ସୁବିଧା ଲାଭ କରୁଥିଲେ । ସେ ସମୟରେ ଜୀବନ ଯାପନ ଏକାନ୍ତ ସରଳ ଓ ସହଜ ଥିଲା । ଶିଳ୍ପୀମାନେ ସହଜ ଓ ସରଳ ପଦ୍ଧତିରେ କାଷ୍ଠ, ଲୌହ ଓ କାର୍ପାସ ପ୍ରଭୃତି କଞ୍ଚା ମାଲରୁ ଶିଳ୍ପଜାତ ପଦାର୍ଥ ମାନ ପ୍ରସ୍ତୁତ କରୁଥିଲେ । ଫଳତଃ ସେ ସମୟର ଗ୍ରାମ୍ୟ ଜୀବନରେ କୃଷିକାର୍ଯ୍ୟ ସଙ୍ଗେ ସଙ୍ଗେ ବହୁ ସରଳ ଓ ରୁଚିସମ୍ପନ୍ନ ଶିଳ୍ପ କଳାର ବିକାଶ ହୋଇ ପାରିଥିଲା ।

ଭାରତୀୟ ଶିଳ୍ପରୁ ଉତ୍ପନ୍ନ ଏ ଧରଣର ପଦାର୍ଥ ଗୁଡ଼ିକୁ ବିଶେଷ ଭାବରେ ଭାରତୀୟ ଓ ଅରବଦେଶୀୟ ବଣିକମାନେ ନେଇ ଚୀନ, ମାଳୟ, ପାରସ୍ୟ, ଇଟାଲି ପ୍ରଭୃତି ଦେଶମାନଙ୍କରେ ବାଣିଜ୍ୟ କରୁଥିଲେ । ଏହି ବଣିକମାନେ କାରିଗରମାନଙ୍କୁ ଅଗ୍ରିମ ଅର୍ଥ ପ୍ରଦାନକରି ଆବଶ୍ୟକ ଧରଣର ପଦାର୍ଥ ନିର୍ମାଣ ନିମନ୍ତେ ନିର୍ଦ୍ଦେଶ ଦେଉଥିଲେ । ଫଳତଃ ବହୁ କାରୁକାର୍ଯ୍ୟମଣ୍ଡିତ ସୁଦୃଶ୍ୟ ପଦାର୍ଥ ନିର୍ମାଣକରାଇ ସେମାନେ ବିଦେଶରେ ବାଣିଜ୍ୟ କରି ପ୍ରଭୂତ ଲାଭବାନ୍ ହେଉଥିଲେ । ପରବର୍ତ୍ତୀ କାଳରେ ଇଷ୍ଟ ଇଣ୍ଡିଆ କମ୍ପାନୀ ଭାରତୀୟ ଶିଳ୍ପୀମାନଙ୍କଦ୍ୱାରା ନିର୍ମିତ ପଦାର୍ଥକୁ ପଣ୍ୟଦ୍ରବ୍ୟ ଭାବରେ ଇଉରୋପୀୟ ଦେଶମାନଙ୍କରେ ବାଣିଜ୍ୟ କରିବାକୁ ଆରମ୍ଭକଲେ । ଇଂଲଣ୍ଡ ପ୍ରଭୃତି ଦେଶରେ ଭାରତୀୟ ପଦାର୍ଥସକଳ ଅଧିକ ଆଦୃତ ହେଲା ଓ ସେମାନଙ୍କ ନିଜଦେଶ ପଦାର୍ଥର ଗ୍ରହଣୀୟତା ଧୀରେ ଧୀରେ କମିଗଲା । ଏହି ଜଟିଳ ଓ ଅବାଞ୍ଛନୀୟ ପରିସ୍ଥିତି ସେମାନଙ୍କ ଜାତୀୟ ସ୍ୱାର୍ଥ ବିରୋଧୀ ହେବାରୁ ୧୭୨୦ ଖ୍ରୀଷ୍ଟାବ୍ଦପରେ ଭାରତୀୟଶିଳ୍ପଜାତ ପଦାର୍ଥ ଇଂଲଣ୍ଡରେ ବିକ୍ରୟ କରିବା ନିଷିଦ୍ଧ ହେଲା ଓ ଊନବିଂଶ ଶତାବ୍ଦୀର ଆରମ୍ଭ ବେଳକୁ ଭାରତୀୟ ପଦାର୍ଥ ଉପରେ ଅତ୍ୟଧିକ କରଧାର୍ଯ୍ୟ କରାଗଲା । ଏପରିସ୍ଥିତିରେ ଇଷ୍ଟଇଣ୍ଡିଆ କମ୍ପାନୀ କ୍ଷତିଗ୍ରସ୍ତ

ହେବା ଆଶଙ୍କାରେ ନିଜର ବାଣିଜ୍ୟନୀତି ପରିବର୍ତ୍ତନ କଲେ । ଭାରତୀୟଶିଳ୍ପୀକୁଳଦ୍ୱାରା ନିର୍ମିତ ପଦାର୍ଥ ବିଭିନ୍ନ ଦେଶରେ ବିକ୍ରୟକରି ସେମାନଙ୍କୁ ଆଉ ଉତ୍ସାହିତ କଲେ ନାହିଁ । ଇଂଲଣ୍ଡର କ୍ଷୁଦ୍ର କ୍ଷୁଦ୍ର ଯନ୍ତ୍ରଶିଳ୍ପ ନିର୍ମିତ ପଦାର୍ଥ ଏ ଦେଶରେ ପ୍ରଚୁର ପରିମାଣରେ ବିକ୍ରି କରାଗଲା ଏବଂ ଏ ଦେଶରୁ ବହୁଳ ପରିମାଣରେ କଞ୍ଚାମାଲ ବ୍ରିଟିଶ କଳ କାରଖାନାକୁ ଚାଳିତ ଓ ପୁଷ୍ଟ କରିବାନିମନ୍ତେ ଇଂଲଣ୍ଡକୁ ପ୍ରେରିତ ହେଲା । ଇଂଲଣ୍ଡ ନିର୍ମିତପଦାର୍ଥକୁ ଉତ୍ସାହିତ କରିବା ଓ ପ୍ରଶ୍ରୟ ଦେବା ନିମନ୍ତେ ସରକାର ନୂତନ ନୀତିନିୟନ୍ତ୍ରଣ କଲେ ଏବଂ ବିନାମୟରେ ଶତ ଶତ ବର୍ଷର ପ୍ରତିଷ୍ଠିତ ଭାରତୀୟ ଶିଳ୍ପଅନୁଷ୍ଠାନ ସମୂହର ଉଚ୍ଛେଦ ସାଧନ କରିବାକୁ ମଧ୍ୟ ବିମୁଖହେଲେ ନାହିଁ । ବୈଦେଶିକ ଶିଳ୍ପନିର୍ମିତ ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥ ସକଳ ସୁଲଭ ଓ ସ୍ୱଳ୍ପ ମୂଲ୍ୟରେ ଭାରତରେ ବିକ୍ରୀତ ହେବାରୁ ଏ ଦେଶର ଅଗଣିତ ଶିଳ୍ପୀ ସେଗୁଡ଼ିକ ସହିତ ପ୍ରତିଯୋଗିତା କରି ନ ପାରି କ୍ରମେ ନିଜ କୌଳିକ ବ୍ୟବସାୟ ଛାଡ଼ିବାକୁ ବାଧ୍ୟହେଲେ । ଏହାହିଁ ଭାରତୀୟ ଶିଳ୍ପ-ଅବନତିର ସଂକ୍ଷିପ୍ତ ଇତିହାସ ।

ଅତୀତରେ ଆମ ଉତ୍କଳରେ ବହୁ କୌଳିକ ଶିଳ୍ପ ମଧ୍ୟ ବିକଶିତ ଓ ଏକାନ୍ତ ସମୃଦ୍ଧ ଅବସ୍ଥା ପ୍ରାପ୍ତ ହୋଇଥିଲା । କଳିଙ୍ଗର ସାଧବ ସମ୍ପ୍ରଦାୟ ଏହି ଶିଳ୍ପଜାତ ପଦାର୍ଥକୁନେଇ ବିଭିନ୍ନଦେଶରେ ବାଣିଜ୍ୟକରି କଳିଙ୍ଗର ଅର୍ଥନୈତିକ ଅବସ୍ଥାକୁ ସୁଦୃଢ଼ କରିଥିଲେ । ସେ ସମୟରେ କଳିଙ୍ଗର ନୌବାଣିଜ୍ୟ ଭାରତପ୍ରସିଦ୍ଧ ଥିଲା । ଭାରତର ପ୍ରତି ଗ୍ରାମ ଯେତେ ଶିଳ୍ପସମୃଦ୍ଧ ଥିଲାପରି ପ୍ରାଚୀନଉତ୍କଳ ମଧ୍ୟ ସେତେ ଶିଳ୍ପମୁଖର ଥିଲା । ଆଜି ଅବସ୍ଥାର ଚକ୍ରରେ ପଡ଼ି ଉତ୍କଳର ଶିଳ୍ପସକଳ ଉଚ୍ଛିନ୍ନ, ଉତ୍କଳୀୟ ଶିଳ୍ପୀକୁଳ ଦୁଃସ୍ଥ । ଉତ୍କଳର କେତୋଟି ଶିଳ୍ପ ମଧ୍ୟରେ ସୁନା ରୁପାର ତାରକସି ଶିଳ୍ପ, ମାଟି ଶିଳ୍ପ, ଇଟାଶିଳ୍ପ,

ପଥର ଶିଳ୍ପ, ଲୌହ ଶିଳ୍ପ, କାଷ୍ଠ ଶିଳ୍ପ, ମୂର୍ତ୍ତିନିର୍ମାଣ ଶିଳ୍ପ, ବସ୍ତ୍ରବୟନଶିଳ୍ପ, ଯୁଦ୍ଧାସ୍ତ୍ର ନିର୍ମାଣ ଶିଳ୍ପଗୁଡ଼ିକ ପ୍ରଧାନ ଥିଲା । ଆଜି ଉତ୍କଳର ଗାଁ ଗହଳରୁ ସେହି ଶିଳ୍ପଗୁଡ଼ିକ ପୂର୍ଣ୍ଣଭାବରେ ଲୁପ୍ତ ହୋଇ ନ ଥିଲେ ସୁଦ୍ଧା ସେଗୁଡ଼ିକର ଅବସ୍ଥା ଏକାନ୍ତ ଶୋଚନୀୟ । ଫଳତଃ ଉତ୍କଳୀୟ ଶିଳ୍ପୀ ବା କାରିଗର ଶତ ଶତ ବର୍ଷର କୌଳିକ ପରମ୍ପରା ନିଜର ବ୍ୟବସାୟକୁ ପରିତ୍ୟାଗକରି ବାଧହୋଇ ଉତ୍କଳ ବାହାରେ ଯନ୍ତ୍ରଶିଳ୍ପ-ଅନୁଷ୍ଠାନ ମଧ୍ୟରେ ଶ୍ରମଜୀବୀ ଭାବରେ ନିଜର ଜୀବିକା ଅର୍ଜ୍ଜନ କରିବା ନିମନ୍ତେ ଉଦ୍ୟମଶୀଳ ହେଉଛି ।

ଆମର ଉତ୍କଳ ସମୁଦ୍ର ଉପକୂଳବର୍ତ୍ତୀ ପ୍ରଦେଶ ଓ ଏହା ମଧ୍ୟରେ ବହୁନଦୀ ପ୍ରବାହିତ ହୋଇଥିବାରୁ ଏହାର ମୃତ୍ତିକା ଉର୍ବର ଓ ସରସ । ତେଣୁ ଉତ୍କଳରେ ମୃତ୍ତଶିଳ୍ପର ବିକାଶ ନିମନ୍ତେ ଅନୁକୂଳ ପରିସ୍ଥିତି ରହିଅଛି । ଏବେ ନିକଟରେ ଶିଶୁପାଳଗଡ଼ ଖୋଦନ ଫଳରେ ବହୁ କାରୁକାର୍ଯ୍ୟ ଶୋଭିତ ସୁଦୃଶ୍ୟ ମୃତ୍ତିକା ନିର୍ମିତ ଅଳଙ୍କାର ଓ ସ୍ତବ୍ଧ ପାତ୍ର ସମୂହ ଆବିଷ୍କୃତ ହୋଇ ଅତୀତ ଓଡ଼ିଶାର ଉନ୍ନତ ମୃତ୍ତଶିଳ୍ପର ନିଦର୍ଶନ ମିଳିଅଛି । ସାଧାରଣତଃ ଆମର ଗାଁ ଗହଳରେ ବାସ କରୁଥିବା କୁମ୍ଭକାରମାନେ ଏହିଶିଳ୍ପକୁ ଆଶ୍ରୟ କରି ନିଜର ଜୀବିକା ଅର୍ଜ୍ଜନ କରୁଥିଲେ ସୁଦ୍ଧା ଅନ୍ୟମାନେ ମୃତ୍ତିକାକୁ ଉପାଦାନ ଭାବରେ ଗ୍ରହଣକରି ବହୁ କାର୍ଯ୍ୟକରୁଥିଲେ । ଆମ ପ୍ରଦେଶର ବହୁ ଗୃହ ମୃତ୍ତିକା ନିର୍ମିତ । ମାଟିହାଣ୍ଡି, ବାସନ ଓ କଳଶୀ ପ୍ରଭୃତି ଉତ୍କଳରେ ବହୁଳ ଭାବରେ ବ୍ୟବହୃତ । ଏହି ଶିଳ୍ପ ଦିନେ ଉତ୍କଳର ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ମାଟି ହାଣ୍ଡିରେ ଖାଦ୍ୟ ପଦାର୍ଥ ପକ୍ୱ ବା ସିଦ୍ଧ ହେଲେ ତାହା ସ୍ୱାସ୍ଥ୍ୟରକ୍ଷା ପ୍ରତି ଅଧିକ ଅନୁକୂଳ । ସେଥିଲାଗି ଜଗନ୍ନାଥଙ୍କ ମନ୍ଦିରରେ ମାଟି କୁଡ଼ୁଆରେ ଦୈନିକ ଅନ୍ନଭୋଗ ପ୍ରସ୍ତୁତ ହୁଏ । କୂପନିର୍ମାଣ

ବାଯ୍ୟରେ ଏହି ଶିଳ୍ପର ଉପଯୋଗିତା ମଧ୍ୟ ଅଧିକ । ଆଧୁନିକ ଆଲମୁନିୟମ ବାସନ ପ୍ରଭୃତିର ପ୍ରସାର ଫଳରେ ମୃତ୍ତିକା ଶିଳ୍ପ କେତେକ ପରିମାଣରେ ଅବନତ ହୋଇ ଆସିଲଣି ଓ ଗ୍ରାମର କୁମ୍ଭକାର ସମ୍ପ୍ରଦାୟ ମଧ୍ୟ ଆତଙ୍କିତ ହେଲେଣି ।

ଠିକ୍‌ଏ ବିକାଶମୂଳକ ମନୋବୃତ୍ତିକୁ ଗ୍ରହଣକରି କେବଳ କଞ୍ଚାମାଟିରେ ଗୃହନିର୍ମାଣ ନ କରି ମାଟିକୁ ପୋଡ଼ି ଇଟା ନିର୍ମାଣ କରିବା ଓ ଏ ଗୁଡ଼ିକର ସାହାଯ୍ୟରେ ଦୃଢ଼ ଗୃହନିର୍ମାଣ କରିବା ଉତ୍କଳୀୟମାନେ ଜାଣିଥିଲେ । ପ୍ରାଚୀନ ନଦୀକୂଳରେ ବନ୍ଧ, ବାପୀ, ପୁଷ୍କରିଣୀ, ଦେବମନ୍ଦିର ଓ କେତେକ ଗଡ଼ରେ ମଧ୍ୟ ଏହି ପ୍ରାଚୀନ ଇଟା ବ୍ୟବହୃତ ହୋଇଥିବାର ଜଣାଯାଏ ।

ଗୃହନିର୍ମାଣ ପାରିପାର୍ଶ୍ୱିକ ଭାବରେ ଏ ଦେଶର କାଷ୍ଠଶିଳ୍ପକୁ ମଧ୍ୟ ବିକଶିତ କରିଅଛି । ଉତ୍କଳୀୟମାନେ ନୌନିର୍ମାଣ ଓ ନୌବାଣିଜ୍ୟରେ ଏକାନ୍ତ ଉନ୍ନତ ଥିଲେ । ଏହି ନୌକାଗୁଡ଼ିକ କାଷ୍ଠରେ ନିର୍ମିତ ହେଉଥିଲା । ଉତ୍କଳରେ ବିସ୍ତୃତ ଅରଣ୍ୟ ଓ ଏହା ମଧ୍ୟରେ ମିଳୁଥିବା ମୂଲ୍ୟବାନ କାଷ୍ଠସମ୍ପଦ ଏ ଦେଶରେ କାଷ୍ଠଶିଳ୍ପର ବିକାଶ ନିମନ୍ତେ ଉପଯୁକ୍ତ ପରିସର ସୃଷ୍ଟି କରିଅଛି । ଖଟ, ଚୌକି, ପଲଙ୍କ କବାଟ ପ୍ରଭୃତି ବହୁ ଗୃହୋପକରଣ, ଦେବ ବିଗ୍ରହ ଓ ସବାରି ପ୍ରଭୃତି କାଷ୍ଠରେ ନିର୍ମିତ ହେଉଥିଲା । ଏବେମଧ୍ୟ ଉତ୍କଳୀୟ କାରିଗରମାନେ କାଷ୍ଠରେ ବହୁ ପଦାର୍ଥ ନିର୍ମାଣକରି ନିର୍ମିତ ପଦାର୍ଥରେ ନିଜର କଳାକୁଶଳତା ପ୍ରଭୃତି ଦର୍ଶାଇବାକୁ ପଶ୍ଚାତ୍‌ପଦ ହୋଇ ନ ଥାନ୍ତି ।

ପ୍ରସ୍ତରଶିଳ୍ପ ଉତ୍କଳରେ କିପରି ବିକାଶଲାଭ କରିଥିଲା ତାହାର ଉଦାହରଣ ନିଷ୍ପ୍ରୟୋଜନ । ଭାରତପ୍ରସିଦ୍ଧ ପୁରୀର ଜଗନ୍ନାଥ, ଭୁବନେଶ୍ୱରର ଲିଙ୍ଗରାଜ ଓ କୋଣାର୍କର ସୂର୍ଯ୍ୟମନ୍ଦିର ପ୍ରଭୃତିରେ

କଠିନ ପ୍ରସ୍ତରଗାତ୍ରରେ ଉତ୍କଳୀୟ ଶିଳ୍ପୀମାନେ ବିଭିନ୍ନ ମୂର୍ତ୍ତି ଓ ଚିତ୍ରକୁ ଯେପରି ଜୀବନ୍ତ ଓ କାରୁକାର୍ଯ୍ୟମଣ୍ଡିତ କରିଛନ୍ତି ତାହା ଉତ୍କଳୀୟ ପ୍ରସ୍ତରଶିଳ୍ପର ଚରମ ଦୃଷ୍ଟାନ୍ତ । ଆଜିସୁଦ୍ଧା କୋଣାର୍କ-ମନ୍ଦିରର ରଥଚକ୍ରର ନିର୍ମାଣ ଓ କଳାକୌଶଳ ଦର୍ଶକଙ୍କୁ ବିସ୍ମିତ କରିଥାଏ । ତା ଛଡ଼ା ପ୍ରସ୍ତରଗୁମ୍ଫ, ଦେବଦେବୀମନ୍ଦିର, ନଦୀବନ୍ଧ ପ୍ରଭୃତି ନିର୍ମାଣରୁ ଉତ୍କଳୀୟ ପ୍ରସ୍ତରଶିଳ୍ପୀମାନଙ୍କର କୃତବିଦ୍ୟତା ସହଜରେ ଜଣାପଡ଼େ । ନୀଳଗିରି ପ୍ରଭୃତି ସ୍ଥାନ ପଥରବାସନ ନିମନ୍ତେ ଖ୍ୟାତି ଅର୍ଜ୍ଜନ କରିଅଛନ୍ତି । ମହାନଦୀ ଓ କାଠଯୋଡ଼ିର ପ୍ରସ୍ତରବନ୍ଧ ଓ ଅଠରନଳାବନ୍ଧ ପ୍ରଭୃତି ନିର୍ମାଣରେ ଉତ୍କଳୀୟ ଶିଳ୍ପୀମାନେ ଯେଉଁ ନିର୍ମାଣ କୌଶଳର ପରାକାଷ୍ଠା ଦେଖାଇଛନ୍ତି ତାହା ଆଧୁନିକ ବୈଜ୍ଞାନିକ ଜଗତରେ ମଧ୍ୟ ବିସ୍ମୟକର ।

ଭାରତ ଦିନେ ଲୌହଶିଳ୍ପରେ ଅପୂର୍ବ୍ବ ଉନ୍ନତି ଲାଭ କରିଥିଲା । ଚଉଦଶହ ବର୍ଷ ପୂର୍ବେ ନିର୍ମିତ କୁତବମିନାରର ପ୍ରସିଦ୍ଧ ଲୌହସ୍ତମ୍ଭ ଦର୍ଶନକଲେ ସେ ସମୟର ଭାରତୀୟ ଶିଳ୍ପୀମାନଙ୍କର ନିର୍ମାଣ-ପାଟବ ଓ ବିଶାଳ ଗଠନକ୍ଷମତା ସମ୍ବନ୍ଧରେ ଚିନ୍ତାକଲେ ସ୍ତମ୍ଭିତ ହେବାକୁ ପଡ଼ିଥାଏ । ଦୀର୍ଘ ଚଉଦଶହ ବର୍ଷକାଳ ବାୟୁର ଗୁପ, ସୌର ରଶ୍ମିର ଉତ୍ତାପ ଅହରହ ସହ୍ୟକରି ମଧ୍ୟ ଏସ୍ତମ୍ଭ ଏବେ ମଧ୍ୟ ଦୃଢ଼ ଓ ଅକ୍ଷୁର୍ଣ୍ଣ ଅବସ୍ଥାରେ ରହିଅଛି । ଭୁବନେଶ୍ୱର ଓ ଲିଙ୍ଗରାଜ ମନ୍ଦିରରେ ବ୍ୟବହୃତ ହୋଇଥିବା ଚରିଟି ଓ ଦୀର୍ଘ ଲୁହାକଡ଼ି-ମାନଙ୍କରୁ ସେ ସମୟର ଉତ୍କଳୀୟ ଲୌହଶିଳ୍ପ ନୈପୁଣ୍ୟ ପ୍ରକାଶ ପାଇଥାଏ । ସମରକୁଶଳୀ ଉତ୍କଳୀୟମାନଙ୍କଦ୍ୱାରା ବ୍ୟବହୃତ ଅସ୍ତ୍ରଶସ୍ତ୍ର-ସମୂହ ମଧ୍ୟ ଏ ଦେଶର ଲୌହଶିଳ୍ପୀଙ୍କଦ୍ୱାରା ନିର୍ମିତ ହେଉଥିଲା । କଳିଙ୍ଗ ନୌବାଣିଜ୍ୟରେ ନିଯୋଜିତ ନୌନିର୍ମାଣର ଉପାଦାନ ଲୁହାକଣ୍ଟା ଓ ଶିକୁଳିପ୍ରଭୃତି ଉତ୍କଳୀୟମାନଙ୍କ ଦ୍ୱାରା

ନିର୍ମିତହୋଇ ବ୍ୟବହୃତ ହେଉଥିଲା । ଅଧୁନିକ ଉତ୍କଳର ଜୀର୍ଣ୍ଣ କମାରଶାଳା ଦେଖିଲେ ଉତ୍କଳ ଲୌହଶିଳ୍ପରେ ଅତୀତରେ ଏପରି ଉନ୍ନତି ଥିବାର ପରିକଳ୍ପନା କରିହୁଏ ନାହିଁ । ସାମାନ୍ୟ କୁରାଢ଼ି, ଦାଆ, କୋଡ଼ି, ଲଙ୍ଗଳଲୁହା ପ୍ରଭୃତି କେତେକ ପଦାର୍ଥ ଆଜି ଉତ୍କଳର ଇତସ୍ତତଃ କମାରଶାଳରେ ନିର୍ମିତ ହେଉଥିବାର ଦେଖିବାକୁ ମିଳେ । ଏ ପଦାର୍ଥଗୁଡ଼ିକ କାରଖାନାରେ ମଧ୍ୟ କଳଦ୍ୱାରା ନିର୍ମିତ ହେଲାଣି ।

ମୂର୍ତ୍ତିଗଠନରେ ଉତ୍କଳୀୟମାନଙ୍କର ମଧ୍ୟ ଅପୂର୍ବ ଦକ୍ଷତା ଥିଲା । ମାଟି, କାଠ, ପଥର ପ୍ରଭୃତିରେ ମୂର୍ତ୍ତି ନିର୍ମାଣ କରି ତହିଁରେ ମନୁଷ୍ୟର ବିଭିନ୍ନ ଅବସ୍ଥାର ଅନବଦ୍ୟଚିତ୍ର ଖୋଦନ କରିବାରେ ଉତ୍କଳୀୟ ଶିଳ୍ପୀମାନେ ନିପୁଣ ଥିଲେ । ଉତ୍କଳନିର୍ମିତ କେତେକ ମୂର୍ତ୍ତିର ଗଠନକୌଶଳ ଓ ସୂଚୀକାର୍ଯ୍ୟ ଦେଶ ବିଦେଶରେ ଆଦର ଲାଭ କରିବାକୁ ସମର୍ଥ ହୋଇଛି । ସୁଦୂର ପାଶ୍ଚାତ୍ୟ ଭୂଖଣ୍ଡରେ ମଧ୍ୟ ଏହା ଆଦୃତ । କୋଣାର୍କ ମନ୍ଦିର ଗାତ୍ରରେ ନିର୍ମିତ ବିଭିନ୍ନ ମୂର୍ତ୍ତିମାନଙ୍କୁ ଦର୍ଶନକଲେ ସେଗୁଡ଼ିକ ଜୀବନ୍ତ ମନୁଷ୍ୟ ତୁଲ୍ୟ ପ୍ରତୀତ ହୋଇଥାଆନ୍ତି ।

ବସ୍ତ୍ରଶିଳ୍ପରେ ଉତ୍କଳ ଏକାନ୍ତ ଉନ୍ନତ—ଥିଲା ଏହା କହିବା ନିଷ୍ପ୍ରୟୋଜନ । ଉତ୍କଳର ପ୍ରତି ଗ୍ରାମରେ ତନ୍ତୁବାୟପରିବାର ଗ୍ରାମ-ବାସୀମାନଙ୍କର ଆବଶ୍ୟକ ପରିଧେୟ ପ୍ରଭୃତି ଯୋଗାଉଥିଲା । ଓଡ଼ିଶାର ଗୁଲନଗର ଓ ମାଣିଆବନ୍ଧୀ ପ୍ରଭୃତି ସ୍ଥାନର ବସ୍ତ୍ରବୟନ ଏକାନ୍ତ ଉତ୍କୃଷ୍ଟ ଥିଲା । କଳିଙ୍ଗ ସୂକ୍ଷ୍ମ ବସ୍ତ୍ର ନିମନ୍ତେ ବହୁପୂର୍ବରୁ ପ୍ରସିଦ୍ଧ ଥିଲା । ଖଣ୍ଡେ ଖଣ୍ଡେ ଲୁଗା ସରୁ ବାଉଁଶନଳୀରେ ପୂରିହୋଇ ରହି ପାରୁଥିଲା । ଏବେ ମଧ୍ୟ ଉତ୍କଳର କେତେକ ସ୍ଥାନରେ ଉତ୍କୃଷ୍ଟ ବସ୍ତ୍ରଶିଳ୍ପ ରହିଛି । ବ୍ରହ୍ମପୁର ଓ ଫୁଲସିଂହର ପାଟ, ସମ୍ବଲପୁରର ମଠା, ଗଡ଼ଜାତ ଅଞ୍ଚଳ

ଏଣ୍ଡି ଓ ଟସର ବସ୍ତ୍ରପ୍ରଭୃତି ନିମନ୍ତେ ପ୍ରସିଦ୍ଧ । ତଥାପି ଯନ୍ତ୍ରଶିଳ୍ପ-ନିର୍ମିତବସ୍ତ୍ର ସୁଲଭ ହେବାରୁ ଏହି ହସ୍ତଶିଳ୍ପ ଲୋପହେବା ଅସମ୍ଭବ-ନୁହେଁ । ସୁଖର କଥା ଜଗତସିଂହପୁର ପ୍ରଭୃତି କେତେକ ସ୍ଥାନରେ ଯନ୍ତ୍ର-ଚାଳିତ କ୍ଷୁଦ୍ର ତନ୍ତ୍ରର ବ୍ୟବହାରଦ୍ୱାରା ଏହିସବୁ ଗ୍ରାମ୍ୟ ବସ୍ତ୍ରଶିଳ୍ପକୁ ଉନ୍ନତ କରିବା ନିମନ୍ତେ ଉଦ୍ୟମ କରାଯାଉଛି । ଏବେ ମଧ୍ୟ ଓଡ଼ିଶା ତଥା ଭାରତର ବିଭିନ୍ନ ସ୍ଥାନର କର୍ମରତ ଶିଳ୍ପୀଙ୍କ ଅଧ୍ୟବସାୟ, କର୍ମନିଷ୍ଠା ଓ ଶିଳ୍ପନୈପୁଣ୍ୟ କ୍ଷୟିଷ୍ଣୁ ପରିମାଣରେ ଜୀବିତ ରହି ଆମକୁ ବହୁ ବ୍ୟବହାର୍ଯ୍ୟ ବସ୍ତୁ ଯୋଗାଉଅଛି । ଯନ୍ତ୍ରଶିଳ୍ପର ପ୍ରସାର ହେଲେହେଁ ଏ ଗୁଡ଼ିକ ସ୍ୱୀୟ ମର୍ଯ୍ୟାଦା ହରାଇ ନାହିଁ । ଏବେ ମଧ୍ୟ କାଶ୍ମୀରର ଶାଲି ସତରଞ୍ଜି ଓ ଗାଲିଚା, ବନାରସର ପାଟ, ମହୀଶୂରର କାଠ ଓ ହାତୀଦାନ୍ତ କାମ, ବମ୍ବେ, ବଙ୍ଗଳା, ମାନ୍ଦ୍ରାଜ ଓ ଆସାମର ପାଟମଠା ଓ ରେଶମ ଶିଳ୍ପ ଏବଂ ଆମ ଓଡ଼ିଶାର ବ୍ରହ୍ମପୁରର ପାଟ ସମ୍ବଲପୁରର ପର୍ଦ୍ଦା, ମଠା, ମୟୂରଭଞ୍ଜର ଏଣ୍ଡିଶିଳ୍ପ ଓ କଟକର ତାରକସିକାମ ଭାରତରେ ତାହାର ପୂର୍ବ ଜନପ୍ରିୟତା ଅକ୍ଷୁର୍ଣ୍ଣ ରଖିପାରିଛି । ଏହିସବୁ ହସ୍ତଶିଳ୍ପଜାତ ବସ୍ତୁଗୁଡ଼ିକର ସ୍ଥାୟିତ୍ୱ ଓ ସୌନ୍ଦର୍ଯ୍ୟ ଯନ୍ତ୍ରଶିଳ୍ପଜାତ ବସ୍ତୁଗୁଡ଼ିକଠାରୁ ଉନ୍ନତ ଧରଣର ହୋଇଥିବାରୁ ସେ ଗୁଡ଼ିକ ସର୍ବତ୍ର ଆଦୃତ ହୋଇଥାଏ ।

ଦେଶର ସର୍ବାଙ୍ଗୀନ ଉନ୍ନତି ନିମନ୍ତେ ଭାରତ ତଥା ଉତ୍କଳକୁ ଧନେ କର୍ମମୁଖର କରିଥିବା ଦେଶର ଶତ ଶତ ଶିଳ୍ପୀଙ୍କର କୌଳିକ ବ୍ୟବସାୟର ଅଭ୍ୟୁତ୍ଥାନ ଓ ସମୁଚିତ ଉନ୍ନତିହେବା ଆବଶ୍ୟକ ।

ପ୍ରଶ୍ନ—୧ । ଅତୀତରେ ଭାରତୀୟ ଶିଳ୍ପ ବିଭିନ୍ନ ଦେଶରେ ଖ୍ୟାତି ଓ ଆଦରଲାଭ କରିବାକୁ ସମର୍ଥ ହୋଇଥିଲା । ଏହାର ସତ୍ୟତା ନିରୂପଣ କର ।

୨ । ଭାରତୀୟ ଶିଳ୍ପ-ଅବନତିର କାରଣଭାବରେ ତୁମ୍ଭେ କେଉଁ ବିଷୟକୁ ଗ୍ରହଣ କରିପାର ?

୩ । ଉତ୍କଳର ଗ୍ରାମେ ଗ୍ରାମେ ଅତୀତରେ ବହୁ କୁଟୀରଶିଳ୍ପ ଏକାନ୍ତ ଉନ୍ନତିଲାଭ କରିଥିଲା । ଗୋଟିଏ ଶିଳ୍ପକୁ ଉଦାହରଣ ଭାବରେ ଗ୍ରହଣକରି ଏ ବିଷୟର ଆଲୋଚନା କର ।

୪ । ଭାରତର କେଉଁ ପ୍ରାଚୀନ ଶିଳ୍ପ ଏବେ ମଧ୍ୟ ତାର ପୂର୍ବଖ୍ୟାତି ଅକ୍ଷୁର୍ଣ୍ଣ ରଖିପାରିଛି ବର୍ଣ୍ଣନାକର ।

---

## —ଜାତୀୟତା ଓ ରାଷ୍ଟ୍ରୀୟ ଏକତା—

"ଏ ଦେଶରେ ମୋର ଜନ୍ମ, ଏ ଦେଶର ପାଣି ପବନରେ ମୋର ଜୀବନ ଗଠିତ, ଏ ଦେଶର ସାହିତ୍ୟ, ସଂସ୍କୃତି ଓ ଐତିହ୍ୟର ସମ୍ମାନ ରକ୍ଷା କରିବା ନିମନ୍ତେ ମୁଁ ଜୀବନଦାନ କରିବି, ଏ ଦେଶର ବହୁମୁଖୀ ଉନ୍ନତି ଓ ଅଭିବ୍ୟକ୍ତି ପାଇଁ ସର୍ବଦା ଜାଗ୍ରତ ଏବଂ ତତ୍ପର ରହିବା ମୋର କାର୍ଯ୍ୟ" ଏପରି ଉଦାର ଭାବନାରୁ ଜାତୀୟତାର ଉତ୍ପତ୍ତି ଓ ପ୍ରଶସ୍ତି ହୋଇଥାଏ । ଜାତୀୟତା ମନୁଷ୍ୟ ମନର ଏକ ମହତ୍ ଭାବ । ଏହି ଭାବର ବିକାଶ ପାଇଁ ଜାତିବିଶେଷ ମଧ୍ୟରେ ଐକ୍ୟର ପ୍ରୟୋଜନୀୟତା ରହିଅଛି ଏବଂ ଏହି ଏକତାହିଁ ଏକ ଜାତିକୁ ଅନ୍ୟ ମାନବ ଗୋଷ୍ଠୀ ବା ସମ୍ପ୍ରଦାୟ ମଧ୍ୟରୁ ପୃଥକ୍ କରି ରଖିଥାଏ । ତା ହେଲେ ଏପରି ଏକ ଜାତୀୟ ଐକ୍ୟର ମୂଳପିଣ୍ଡ କେଉଁଠାରେ ? ଏକ ଭାଷା, ସାହିତ୍ୟ, ଇତିହାସ, ଭୌଗୋଳିକ ପରିସର, ଧର୍ମ ଓ ସଭ୍ୟତା ଏହି ଏକତାର ମୂଳରେ ନିହିତ । ଏହି ବୈଶିଷ୍ଟ୍ୟ ଯୋଗୁଁ ଏକ ଜାତି ନିଜ ମଧ୍ୟରେ ବିଶେଷ

ସାମ୍ୟ ଥିବାର ଉପଲବ୍ଧି କରେ ଏବଂ ଅନ୍ୟ ଜାତିଠାରୁ ସେ ପୃଥକ୍ ଏହା ସ୍ୱୀକାର କରିଥାଏ । ଜାତିର ସାମାଜିକ ପରମ୍ପରା ଓ ସଂସ୍କୃତି ସର୍ବତୋଭାବେ ଜାତୀୟ ବୈଶିଷ୍ଟ୍ୟ ହୋଇ ରହିପାରେ ।

'ଏକଜାତି' ଏହି ଧାରଣା ମୂଳରେ ରହିଛି ସମାନ ଗୁଣ, ଆଚାର ଓ ସଂସ୍କୃତିବିଶିଷ୍ଟ ଲୋକମାନଙ୍କର ଏକତ୍ର ବାସ କରିବାର ଆକାଂକ୍ଷା । ଏହି ଆକାଂକ୍ଷା ଫଳରେ ଏକ ଦେଶ ବା ଜାତି ନିଜକୁ ଅନ୍ୟ ଦେଶ ବା ଜାତିଠାରୁ ପୃଥକ୍ ମନେକରେ । ମନୁଷ୍ୟ ଯେତେବେଳେ କୌଣସି ଏକ ବିଶେଷ ଗୁଣ ଓ ପରମ୍ପରାର ଅଧିକାରୀ ହୋଇ ନିଜକୁ ଅନ୍ୟଠାରୁ ଭିନ୍ନ ବୋଲି ମନେକରେ, ସେତେବେଳେ ନିଜର ବୈଶିଷ୍ଟ୍ୟକୁ ଦୃଢ଼ ଓ ସ୍ଥାୟୀ ରଖିବା ନିମନ୍ତେ ସେ ଉଦ୍ୟମ କରେ । ଜାତି ପ୍ରତି ଉକ୍ତ ଉକ୍ତି ମଧ୍ୟ ପ୍ରଯୁଜ୍ୟ । ପ୍ରତ୍ୟେକ ଜାତି ନିଜ ଜାତିର ମହତ୍ତ୍ୱ ଓ ଉତ୍କର୍ଷର ଦୃଢ଼ତା ନିମନ୍ତେ ବେଳେବେଳେ ଅନ୍ୟ ଜାତିସହିତ ଦ୍ୱନ୍ଦ୍ୱ କରିଥାଏ, ଏପରିକି ସ୍ଥଳ ବିଶେଷରେ ଯୁଦ୍ଧର ଆଶ୍ରୟ ଗ୍ରହଣ କରିବାକୁ ମଧ୍ୟ ପଶ୍ଚାତ୍‌ପଦ ହୋଇ ନଥାଏ । ଫଳତଃ ଏକ ଜାତି ଅନ୍ୟ ଜାତିସହ ଯୁଦ୍ଧ କରେ, ଯୁଦ୍ଧରେ ବିଜୟ ଲାଭ କରେ ଓ ହୃଦୟର ଅପାର ଆନନ୍ଦରେ କହି ଉଠେ 'ଏ ହେଉଛି ମୋର ମାତୃସ୍ୱରୂପିଣୀ ଜନ୍ମଭୂମି', ଏହାର ସମ୍ମାନ ରକ୍ଷା କରିବାକୁ ମୁଁ ସମର୍ଥ ହୋଇଛି । ସୁତରାଂ ମଣିଷର 'ଏକଜାତି' ଭାବ ମୂଳରେ ବିଭେଦ ବା ଅସମାନତା ବିଦ୍ୟମାନ । ଏହି ବିଭେଦ ଓ ସ୍ୱାତନ୍ତ୍ର୍ୟକୁ ଜାତୀୟତା କୁହାଯାଇପାରେ । ଏହି ସ୍ୱାତନ୍ତ୍ର୍ୟକୁ ପ୍ରତ୍ୟେକ ଜାତି ଦୃଢ଼ ରଖିବାକୁ ଚେଷ୍ଟା କରିଥାଏ ଓ ବିଶ୍ୱଦରବାରରେ ନିଜ ଜାତିର ମହତ୍ତ୍ୱ ପ୍ରତିଷ୍ଠାକରି ନିଜକୁ ଗର୍ବିତ କରିଥାଏ । ସୁତରାଂ ଏକ ଜାତି ମାନବସମାଜକୁ ଦେଇଥିବା ନିଜର ଦାନ ପାଇଁ ପୃଥିବୀରେ ଗର୍ବ କରେ । ଇଂଲଣ୍ଡ

ଗର୍ବ କରେ ନାଟ୍ୟକାର ସେକ୍ସପିଅରଙ୍କୁ ନେଇ, ଫ୍ରାନ୍ସ ଭୋଲଟେ-ୟାରଙ୍କ ପାଇଁ ଗର୍ବିତ ହୁଏ, ଜର୍ମାନୀ ଦାର୍ଶନିକ କାଣ୍ଟଙ୍କନିମନ୍ତେ ଓ ଜାତିର ନିୟନ୍ତା ଗାରିବାଲ୍ଡିଙ୍କ ନିମନ୍ତେ ଇଟାଲି ସମ୍ମାନ ଦାବୀ କରିଥାଏ । ଭାରତ ମଧ୍ୟ ପ୍ରାଚୀନ ଯୁଗରୁ ତାର ସଂସ୍କୃତିର ବିଶାଳତା, ମହାନୀୟତା ଓ ସାର୍ବଜନୀନତା ନିମନ୍ତେ ନିଜର ସ୍ଥାନ ଓ ସମ୍ମାନକୁ ସୁପ୍ରତିଷ୍ଠିତ କରିଥାଏ। ସୁତରାଂ ଏହି ସ୍ୱଦେଶବତ୍ସଳତାହିଁ ଅନ୍ୟ ପକ୍ଷରେ ଜାତୀୟତା ନାମରେ ଅଭିହିତ ହୋଇପାରେ । ଏହି ଦେଶ ଅନୁରକ୍ତିହିଁ ସ୍ୱାଧୀନତା ବା ସ୍ୱାୟତ୍ତ ଶାସନର ମୂଳନୁଆ ଦେବାରେ ଶିକ୍ଷା, ଶିଳ୍ପ, କଳା, ସାହିତ୍ୟ ପ୍ରଭୃତି ବିଭିନ୍ନ କ୍ଷେତ୍ରରେ ରାଷ୍ଟ୍ରକୁ ଉନ୍ନୀତ କରିବାରେ ସାହାଯ୍ୟ କରେ ।

ତା ହେଲେ ଦେଖାଗଲା ଜାତୀୟତାର ମୂଳମନ୍ତ୍ର ହେଉଛି ନିଜର ଅଧିକାର, ଜାତିଗତ ସଭ୍ୟତା ଓ ସ୍ୱତନ୍ତ୍ରତାକୁ ଅକ୍ଷୁର୍ଣ୍ଣ ରଖିବାର ମନୋଭାବ । ଏହାକୁ ଜାତୀୟ ସ୍ୱାଧୀନତା ମଧ୍ୟ କୁହା-ଯାଇପାରେ । ଜାତିର ଜୀବନ ଉପରେ ପୂର୍ଣ୍ଣ କର୍ତ୍ତୃତ୍ୱ ସ୍ଥାପନକୁହିଁ ଏହା ବୁଝାଇ ଥାଏ । ଯେଉଁ ଜାତି ନିଜର ଜୀବନକୁ ପୂର୍ଣ୍ଣ ଭାବରେ ନିୟନ୍ତ୍ରିତ ନ କରିଛି, ଯେତେବେଳ ପର୍ଯ୍ୟନ୍ତ ସେ ବିଭିନ୍ନ କ୍ଷେତ୍ରରେ ନିଜର ସମସ୍ୟାଗୁଡ଼ିକୁ ସାମାଧାନ ନ କରି ପରମୁଖାପେକ୍ଷୀ, ସେତେବେଳେଯାଏ ଜାତି ଅନ୍ତଃସାରଶୂନ୍ୟ ଓ ତା'ର ସର୍ବାଙ୍ଗୀନ ଉନ୍ନତି ସୁଦୂରପରାହତ । ହୁଏତ କେତେକ ପ୍ରଶ୍ନ ଉଠାଇ ପାରନ୍ତି ପରାଧୀନ ରାଷ୍ଟ୍ରରେ କଅଣ ଉନ୍ନତି ଓ ବିକାଶ-ମୂଳକ ଯୋଜନା ହୁଏ ନାହିଁ ? ହଁ ହୋଇପାରେ, ମାତ୍ର ପରାଧୀନ ଦେଶରେ ବୈଦେଶିକ ଶାସକମାନଙ୍କର କର୍ତ୍ତୃତ୍ୱ ମଧ୍ୟରେ ଓ ସ୍ୱାଧୀନ ଦେଶରେ ସ୍ୱାୟତ୍ତ ଶାସନମଧ୍ୟରେହିଁ ଦେଶର ଉନ୍ନତି ହୋଇଥାଏ । କିନ୍ତୁ ପରାଧୀନ ରାଜ୍ୟର, ଉନ୍ନତି ବୈଦେଶିକ ଶାସକ-

ମାନଙ୍କର ରୁଚିଅନୁକୂଳ ଓ ସ୍ୱାର୍ଥଜଡ଼ିତ । ମାତ୍ର ସ୍ୱାଧୀନ ଦେଶର ଶାସକମାନଙ୍କର ଉଦ୍ୟମ ସ୍ୱାର୍ଥରହିତ ଓ ଦେଶର ସର୍ବାଙ୍ଗୀନ ବିକାଶ ନିମନ୍ତେ ଅଭିପ୍ରେତ ଏବଂ ଏହା ଜାତୀୟଭାବଦ୍ୱାରା ପୁଷ୍ଟ ତଥା ସଂଜୀବିତ । ଗୋଟିଏ କ୍ଷେତ୍ରରେ ଜାତୀୟପ୍ରାଣ ବୈଦେଶିକ ଚାପରେ ନୀରସ ଓ ଅନ୍ତଃସାରଶୂନ୍ୟ, ଅନ୍ୟଟିରେ ଜାତୀୟପ୍ରାଣ ସୁଦୃଢ଼ ଓ ବଳିଷ୍ଠ ହୋଇଥାଏ । ସୁତରାଂ ଜାତୀୟ ସାରବତ୍ତା ଅଣିବା ନିମନ୍ତେ ସ୍ୱଦେଶକୁ ଆତ୍ମନିୟନ୍ତ୍ରଣ ମଧ୍ୟରେ ଉନ୍ନତ ଓ ସମୃଦ୍ଧ କରିବା ଉଦ୍ଦେଶ୍ୟରେ ପୃଥିବୀର ପ୍ରତ୍ୟେକ ଦେଶ ଓ ଜାତି ସ୍ୱାଧୀନତା ଚାହେଁ । ପ୍ରତ୍ୟେକ ଜାତି ତା'ର ସଭ୍ୟତା ଓ ପରମ୍ପରାକୁ ଦୃଢ଼ ରଖିବା ନିମନ୍ତେ ବ୍ୟାକୁଳ ହୁଏ । ଆମର ଭାରତ ପରାଧୀନତା-ଶୃଙ୍ଖଳ ଛିନ୍ନକରି ଆତ୍ମନିୟନ୍ତ୍ରଣ କରିବାକୁ ସମର୍ଥ ହୋଇଛି—ସୁତରାଂ ଏହାର ବିକାଶ ଅବଶ୍ୟମ୍ଭାବୀ ।

ଜାତୀୟତା ମଧ୍ୟରେ ଆମେ ପାଉଁ ଏକ 'ସମାଜ-ବାଦ'ର ସ୍ପର୍ଶ । "ଏ ଦେଶ ଆମର, ଏ ସମାଜ ଆମର, ଏହାର ସ୍ଥିତି ଓ ପ୍ରଗତି ନିମନ୍ତେ ଆମକୁ ଶ୍ରମ ସ୍ୱୀକାର କରିବାକୁ ହେବ, ଏହାର ବୈଶିଷ୍ଟ୍ୟକୁ ବିଶ୍ୱ ସମ୍ମୁଖରେ ଆମକୁ ପ୍ରତିଷ୍ଠିତ କରିବାକୁ ପଡ଼ିବ"- ଏହି ଭାବରେ ପ୍ରଣୋଦିତ ହୋଇ, ପୃଥିବୀର ବିଭିନ୍ନ ଦେଶର ନାଗରିକ ବ୍ୟକ୍ତିଗତ କର୍ମଅନ୍ତରାଳରେ ସମାଜ ପ୍ରତି କର୍ତ୍ତବ୍ୟ ଦେଖେ, ନିଜର ଅଧିକାର ଓ ଦାୟିତ୍ୱ ମଧ୍ୟରେ ସମାଜର ଅଧିକାର ଉପଲବ୍ଧି କରେ; ସେତେବେଳେ ଜାତିର ଉନ୍ନତି ଓ ପ୍ରଗତି ନିଶ୍ଚୟ ସହଜ, ଦେଶର ଅଭିବୃଦ୍ଧି ଅବଶ୍ୟମ୍ଭାବୀ । ଏହି ପ୍ରକାର ମନୋବୃତ୍ତିରୁ ମାନବିକ ସଭ୍ୟତାର ବିକାଶ ସମ୍ଭବ । କାରଣ ପ୍ରତ୍ୟେକ ଜାତିର ଅନ୍ତର୍ନିହିତ ଶକ୍ତିର ବିକାଶ ଉପରେ ମାନବୀ ସଭ୍ୟତାର ଦୃଢ଼ତା ନିର୍ଭର କରେ । ପ୍ରତ୍ୟେକ ଜାତିର ଜ...

କିନ୍ତୁ ବୈଶିଷ୍ଟ୍ୟ ଓ ସ୍ୱାତନ୍ତ୍ର୍ୟ ରହିଛି । ଜାତି ଯେତେବେଳେ ବାସ୍ତବ କ୍ଷେତ୍ର ଓ ସୁଯୋଗ ପାଏ ସେତେବେଳେ ଜାତିଗତ ପରମ୍ପରା ଓ ବୈଶିଷ୍ଟ୍ୟର ପ୍ରକାଶ ନିମନ୍ତେ ଉନ୍ମୁଖ ହୋଇଥାଏ । ଏଥିଲାଗି ଜାତିଗତ ସ୍ୱାଧୀନତା ଏକାନ୍ତ ଲୋଡ଼ା । ସୁତରାଂ ଜାତୀୟତାର ବିକାଶ ନିମନ୍ତେ ସ୍ୱାଧୀନତା ଅତ୍ୟାବଶ୍ୟକ । ପୁଣି ସ୍ୱାଧୀନତାକୁ ଅଖଣ୍ଡ ଓ ଦୃଢ଼ ରଖିବାକୁ ହେଲେ ଜାତୀୟତାର ପ୍ରସାର ଅପରିହାର୍ଯ୍ୟ ।

ମନୁଷ୍ୟ ସ୍ୱଭାବତଃ କ୍ଷମତାଲିପ୍ସୁ । ତେଣୁ ଜାତୀୟ ଭାବ ପ୍ରଣୋଦିତ ହୋଇ ଏକ ବଳିଷ୍ଠ ଜାତି ଅନ୍ୟ ଏକ ଦୁର୍ବଳ ଜାତି ଉପରେ ଆକ୍ରମଣ କରିଥାଏ । ଏକ ଦେଶର ରାଜନୈତିକ ଓ ଅର୍ଥ-ନୈତିକ ପ୍ରସାର ନିମନ୍ତେ ଅନ୍ୟ ଦେଶ କବଳିତ ହୋଇଥାଏ । ଇତିହାସରୁ ଏହାର ବହୁ ଦୃଷ୍ଟାନ୍ତ ମିଳିବ । ପ୍ରବଳର ଦୁର୍ବଳ ଉପରେ ଆକ୍ରମଣ, ରାଜ୍ୟଜୟ, ଲୁଣ୍ଠନ, ଅତ୍ୟାଚାର ପ୍ରଭୃତି, ମୂଳରେ ପ୍ରବଳ ରାଷ୍ଟ୍ର କିମ୍ବା ରାଷ୍ଟ୍ରନେତା ମାନଙ୍କର ଅତ୍ୟଧିକ ସ୍ୱଦେଶପ୍ରୀତି ରହିଥାଏ । ଏହାକୁ ଉଗ୍ରଜାତୀୟତା କୁହାଯାଇପାରେ । ଏହି ଉଗ୍ରଜାତୀୟତା ଫଳରେ ଦେଶ ଦେଶ ମଧ୍ୟରେ, ଜାତି ଜାତି ଭିତରେ, ପ୍ରତିଦ୍ୱନ୍ଦ୍ୱିତା, ଯୁଦ୍ଧ, କଳହ, ଅଶାନ୍ତି ପ୍ରଭୃତି ପରିଦୃଷ୍ଟ ହୋଇଥାଏ । ଶେଷରେ ମାନବିକ ସଭ୍ୟତାର ଚରମ ପ୍ରତିଦ୍ୱନ୍ଦ୍ୱୀ ପରମାଣୁ ବୋମାର ଆବଶ୍ୟକତା ମଧ୍ୟ ଅନୁଭୂତ ହୋଇଥାଏ । ତା ହେଲେ ଏହି ଉଗ୍ର ଜାତୀୟଭାବ କଣ ସମୂହଭାବରେ ମାନବିକ କଲ୍ୟାଣ ନିମନ୍ତେ ଉଦ୍ଦିଷ୍ଟ ନୁହେଁ ? ଏ ପ୍ରଶ୍ନର ସମାଧାନ କରିବାକୁ ହେଲେ ଜାତୀୟତା ସହିତ ସହଯୋଗ ବା ଏକତାର ସମ୍ବନ୍ଧ ବିଷୟ ସ୍ୱତଃ ମନେ ପଡ଼ିଥାଏ । କିନ୍ତୁ ବର୍ତ୍ତମାନ, ଏହି ଐକ୍ୟ ପରିବର୍ତ୍ତେ ପୃଥିବୀର ରାଜନୈତିକ ବାୟୁମଣ୍ଡଳରେ ଜାତି ଜାତି ମଧ୍ୟରେ ସନ୍ଦେହ,

ଅବିଶ୍ୱାସ, ପାରସ୍ପରିକ ଭ୍ରାନ୍ତି ପରିପୂର୍ଣ୍ଣ । ଏହି ପରିସ୍ଥିତିର ପରିଣାମ-ଜନିତ ଭୀଷଣତା ବିଷୟ ବିଚାର କଲେ ବୁଦ୍ଧଦେବଙ୍କ ନୀତିର ମହତ୍ତ୍ୱ ସ୍ୱୀକାର କରିବାକୁ ପଡ଼ିଥାଏ । ହିଂସାପ୍ରଣୋଦିତ, ସ୍ୱାର୍ଥ-ବିଜଡ଼ିତ ଉରିବାରିର ଜୟ, ଜୟ ନୁହେଁ । ବିଶ୍ୱଜନୀନ ମୈତ୍ରୀହିଁ ପୃଥିବୀର ଜାତି ଜାତିଗତ ହିଂସା, ବିଦ୍ୱେଷ ଦୂରକରି ସ୍ଥାୟୀ ଶାନ୍ତି ଆନୟନ କରିପାରେ ।

ତେଣୁ ଜାତୀୟତା ମଧ୍ୟରେ ସହଯୋଗମୂଳକ ଐକ୍ୟ-ମନୋଭାବ ଯଥାର୍ଥରେ ଅନ୍ତର୍ଜାତୀୟ ପ୍ରୀତି, ଜାତି ଜାତି ଓ ପ୍ରଦେଶ ପ୍ରଦେଶ ମଧ୍ୟରେ ସହଯୋଗ, ସଦ୍‌ଭାବ, ସହୃଦୟତା ଓ ସହସ୍ତୁତା ସଞ୍ଚାର କରିବାକୁ ସମର୍ଥ ହୋଇ ପାରିବ । ଏହାର ଅର୍ଥ ନୁହେଁ ଯେ ସ୍ୱଜାତୀୟତା ରକ୍ଷା କରିବାରେ ନାଗରିକମାନେ ଅସହଯୋଗ କରିବେ । ଜାତୀୟତାର ସ୍ଥିତି ଓ ପ୍ରଗତି ପାଇଁ ଯେତିକି ପରିମାଣରେ ସହଯୋଗ ଓ ସ୍ୱାର୍ଥତ୍ୟାଗର ଆବଶ୍ୟକ, ଅନ୍ତର୍ଜାତୀୟତା ସୃଷ୍ଟି କରିବାରେ ତାଠାରୁ ଅଧିକ ଆବଶ୍ୟକ ।

ଆଜି ଭାରତ ସ୍ୱାଧୀନ । ଆମର ଏହି ସ୍ୱାଧୀନତାର ଅର୍ଥ ଯଥେଚ୍ଛାଚାରିତା ନୁହେଁ କିମ୍ବା ଆଳସ୍ୟପରାୟଣ ଭାବରେ ସମୟ କ୍ଷେପଣ ନୁହେଁ । ସ୍ୱାଧୀନ ଭାରତରେ ସ୍ୱାଧୀନତା ସଙ୍ଗେ ସଙ୍ଗେ କର୍ତ୍ତବ୍ୟବୋଧର ଗୁରୁତ୍ୱ ଉପଲବ୍‌ଧି କରିବା ଅଧିକ ପ୍ରୟୋଜନ । ସ୍ୱାଧୀନତା ଲାଭ କରିବା ନିମନ୍ତେ ଆମେ ଯେପରି ଅପ୍ରାଣ ଉଦ୍ୟମ କରିଥିଲୁ, ସ୍ୱାଧୀନତାର ସଂରକ୍ଷଣ ଓ ଏହାର ଫଳ ଆସ୍ୱାଦନ-ନିମନ୍ତେ ଆମକୁ ମଧ୍ୟ ସେପରି ଯତ୍ନଶୀଳ ହେବାକୁ ପଡ଼ିବ । ସ୍ୱାଧୀନ ଭାରତରେ ଦେଶରକ୍ଷା, ଦେଶର ଆଭ୍ୟନ୍ତରୀଣ ଦୃଢ଼ତା ଆନୟନ ଓ ଅର୍ଥନୈତିକ ସମୃଦ୍ଧିଲାଭ ଏ ତିନୋଟି ପ୍ରଧାନ ସମସ୍ୟାଭାବରେ ବିଦ୍ୟମାନ । ଏ ସମସ୍ୟା କୌଣସି ଏକ ଅଞ୍ଚଳର ନୁହେଁ, ଏକ

ପ୍ରଦେଶର ନୁହେଁ ସମଗ୍ର ଭାବରେ ଦେଶର—ଭାରତର । ସୁତରାଂ ଭାରତୀୟ ଭାବରେ ପ୍ରତ୍ୟେକ ପ୍ରଦେଶବାସୀ ଏ ଗୁଡ଼ିକର ସମାଧାନ ନିମନ୍ତେ ବ୍ରତୀ ହେବା ଆବଶ୍ୟକ ।

ଭାରତ ଏକ ବିରାଟ ଦେଶ । ଏହାର ଏକ ଅଞ୍ଚଳର ଭାଷା, ଲୋକମାନଙ୍କର ଆଚାର ବ୍ୟବହାର ସହିତ ଅନ୍ୟ ଅଞ୍ଚଳର ଭାଷା ଓ ରୀତିନୀତିରେ ପାର୍ଥକ୍ୟ ପରିଲକ୍ଷିତ ହେବା ସ୍ୱାଭାବିକ । ତା ଛଡ଼ା ଶାସନଗତ ସୁବିଧା ଦୃଷ୍ଟିରୁ ଭାରତକୁ ବିଭିନ୍ନ ପ୍ରଦେଶରେ ବିଭକ୍ତ କରାଯାଇଛି । ଓଡ଼ିଶା, ବଙ୍ଗ, ବିହାର, ମାନ୍ଦ୍ରାଜ ପ୍ରଭୃତି ରାଜନୈତିକ ଦୃଷ୍ଟିରୁ ଏକ ଏକ ପ୍ରଦେଶ ହୋଇଥିଲେ ସୁଦ୍ଧା ସମୂହ ଭାବରେ ପ୍ରତ୍ୟେକ ଭାରତର ଅଂଶ । ମୁଁ ଓଡ଼ିଆ ହେଲେ ସୁଦ୍ଧା ବ୍ୟାପକଭାବରେ ମୁଁ ଭାରତୀୟ । ସୁତରାଂ ଓଡ଼ିଆ ଭାବରେ ଓଡ଼ିଶା-ପ୍ରତି ମୋର ଆନୁଗତ୍ୟ, ମମତା ପ୍ରକାଶ ପାଇବା ସ୍ୱାଭାବିକ ହେଲେ ସୁଦ୍ଧା ସମୂହଭାବରେ ଦେଶର ଅକଲ୍ୟାଣକର କୌଣସି ଏକ କାର୍ଯ୍ୟ କରିବା ଦିଗରେ ମୁଁ ଇଚ୍ଛୁକ ହେବା ବିଧେୟ ନୁହେଁ । ସଙ୍କୀର୍ଣ୍ଣ ପ୍ରାଦେଶିକତା ନୁହେଁ, ମହାଭାରତୀୟ ଭାବଧାରାରେ ଆମକୁ ଉଦ୍‌ବୁଦ୍ଧ ହେବାକୁ ହେବ । ଆମର କାର୍ଯ୍ୟଧାରାରେ ମହାଭାରତୀୟତାର ଇଙ୍ଗିତ ଲାଭ କରିବାକୁ ପଡ଼ିବ ।

ଭାରତର ସମସ୍ୟାହିଁ ଭାରତୀୟମାନଙ୍କର ସମସ୍ୟା । ଏହାର ସମାଧାନ ଭାରତୀୟମାନଙ୍କଦ୍ୱାରା ହୋଇପାରେ । ମୁଁ ଓଡ଼ିଆ ହେଲେ ସୁଦ୍ଧା ଭାରତୀୟ, ବଙ୍ଗପ୍ରଦେଶର ଅଧିବାସୀ ଭାରତୀୟ, ମାନ୍ଦ୍ରାଜ ଅଞ୍ଚଳର ଅଧିବାସୀ ମଧ୍ୟ ଭାରତୀୟ । ସୁତରାଂ ପ୍ରଦେଶ ପ୍ରଦେଶ ମଧ୍ୟରେ ବୈଷମ୍ୟ—ଭାଷା, ଆର୍ଥିକ ପରିସ୍ଥିତି, ଆଚାର, ସମୃଦ୍ଧିରେ ଅସମାନତା ଥିଲେ ସୁଦ୍ଧା ବିଭିନ୍ନ ପ୍ରଦେଶ ମଧ୍ୟରେ ଏକତା ସ୍ଥାପନ କରି ଭାରତର କଲ୍ୟାଣ ଦିଗରେ ବ୍ରତୀ

ହେବା ଉଚିତ । ବଙ୍ଗଳାର ସମସ୍ୟା ଓଡ଼ିଶାରହିଁ ସମସ୍ୟା, ଓଡିଶାର ଦାରିଦ୍ର୍ୟ ବଙ୍ଗଳାର ଦାରିଦ୍ର୍ୟ, ମାନ୍ଦ୍ରାଜରେ ଖାଦ୍ୟାଭାବ ସମସ୍ତ ଭାରତର ଖାଦ୍ୟାଭାବ ଏ—ଧାରଣା ପ୍ରତି ଭାରତୀୟ ମନରେ ବଦ୍ଧମୂଳ ହେବା ଆବଶ୍ୟକ ।

ସୁତରାଂ ଏକ ରାଷ୍ଟ୍ରର ପରିସରମଧ୍ୟରେ ରହି ଉକ୍ତ ରାଷ୍ଟ୍ରର ଶିକ୍ଷା, ସଂସ୍କୃତି, କଳା, ଶିଳ୍ପ, ଆର୍ଥିକ ସମୃଦ୍ଧି ଆନୟନ କରିବା ଦିଗରେ ଆମର ଯେପରି କର୍ତ୍ତବ୍ୟ ଅଛି, ସମୂହଭାବରେ ଦେଶର ସମସ୍ୟା ସମାଧାନ କରିବା ଦିଗରେ ଓ ଦେଶର ସାମାଜିକ, ରାଜନୈତିକ, ଅର୍ଥନୈତିକ ଦୃଢ଼ତା ଆଣିବା ଦିଗରେ ଆମର କର୍ତ୍ତବ୍ୟ ମଧ୍ୟ ତତୋଧିକ । ସୁତରାଂ ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ବିଭେଦ ନୁହେଁ ଐକ୍ୟ, ଅସହଯୋଗ ପରିବର୍ତ୍ତେ ଆନ୍ତରିକ ସହଯୋଗ ଦ୍ୱାରା ରାଷ୍ଟ୍ର-ବିଶେଷର ଉନ୍ନତି କରିବା ଦ୍ୱାରା ସମୂହଭାବରେ ମଧ୍ୟ ଆମେ ଦେଶର କଲ୍ୟାଣ କରି ପାରିବୁ । ସୁତରାଂ ଆମର କାର୍ଯ୍ୟକଳାପ ରାଷ୍ଟ୍ରର ଉନ୍ନତିବିଧାୟକ ହେବା ସଙ୍ଗେ ସଙ୍ଗେ ସମୂହଭାବରେ ଦେଶର କଲ୍ୟାଣକର ହେବା ବିଧେୟ । ବିଭିନ୍ନ ରାଷ୍ଟ୍ରକୁ ନେଇ ଦେଶ ଗଠିତ । ବିଭିନ୍ନ ରାଷ୍ଟ୍ର ମଧ୍ୟରେ ସହଯୋଗ ଓ ଐକ୍ୟ ସ୍ଥାପିତ ହେଲେ ଦେଶ ଦୃଢ଼, ସବଳ ହୋଇ ଉତ୍ତରୋତ୍ତର ଉନ୍ନତ ହୋଇ ପାରିବ ।

ପୁଣି ଭାରତୀୟଭାବରେ ଆମର କର୍ତ୍ତବ୍ୟ ମଧ୍ୟ ଅଧିକ ଓ ବ୍ୟାପକ । ପ୍ରତ୍ୟେକ ଭାରତୀୟ ନାଗରିକର ପ୍ରଥମ କର୍ତ୍ତବ୍ୟ ହେଉଛି ଜାତୀୟ ସ୍ୱାଧୀନତା ଓ ସମ୍ମାନ ରକ୍ଷା କରିବା ଦିଗରେ ସଚେତନ ରହି ଜାତୀୟ ସରକାରଙ୍କ କର୍ମଯୋଜନାଗୁଡ଼ିକରେ ଯଥାଯଥ ସହଯୋଗ ଓ ଜାତୀୟ ସମସ୍ୟା ଗୁଡ଼ିକର ସମାଧାନ ନିମନ୍ତେ ଅକୁଣ୍ଠିତଭାବରେ ନିଜର କର୍ତ୍ତବ୍ୟ ସମ୍ପାଦନ । ଜାତୀୟ ସଂସ୍କୃତି

ଏବଂ ସଭ୍ୟତାର ଉତ୍ତରୋତ୍ତର ଅଭିବ୍ୟକ୍ତି ଓ ଅଭିବୃଦ୍ଧି ଦିଗରେ ସକ୍ରିୟ ହେବା ଓ ଅପ୍ରାଣ ଉଦ୍ୟମ କରିବା ଆମର ଦ୍ୱିତୀୟ କର୍ତ୍ତବ୍ୟ । ପୁଣି ବିଶ୍ୱଶାନ୍ତି ଆନୟନ କରିବା ଦିଗରେ ଭାରତୀୟ କୃଷ୍ଟି କେତେଦୂର ସହାୟକ ହେବ ସେ ସମ୍ବନ୍ଧରେ ଅନୁଧ୍ୟାନ କରିବା । ରାଷ୍ଟ୍ର ପ୍ରତି ଆନୁଗତ୍ୟ ଓ ବିଶ୍ୱସ୍ତତା ଘୋଷଣ କରିବା ସଙ୍ଗେ ସଙ୍ଗେ ରାଷ୍ଟ୍ରୀୟ ଐକ୍ୟଦ୍ୱାରା ଦେଶପ୍ରତି ଆମର ସମ୍ମାନ ଦୃଢ଼ୀଭୂତ ହେବ ଓ ଜାତୀୟ ଉନ୍ନତି ସହଜରେ ସାଧିତ ହେବ । ଭାରତର ଗୁରୁତ୍ୱପୂର୍ଣ୍ଣ ପରିସ୍ଥିତିରେ ଏହି ଭାବଧାରା ପ୍ରତ୍ୟେକ ଭାରତୀୟପ୍ରାଣରେ ଦୃଢ଼ୀଭୂତ ହେବା ବିଧେୟ ।

ପ୍ରଶ୍ନ—୧ । ଜାତୀୟତା କାହାକୁ କୁହାଯାଇଥାଏ ? 'ଜାତୀୟତା ମନୁଷ୍ୟ ମନର ଏକ ମହତ୍‌ଭାବ ।' ଏହି ଉକ୍ତିର ସତ୍ୟତା ନିରୂପଣ କର ।

୨ । ପରାଧୀନ ରାଜ୍ୟ ଓ ସ୍ୱାଧୀନ ରାଜ୍ୟ ମଧ୍ୟରେ କି ପାର୍ଥକ୍ୟ ପରିଲକ୍ଷିତ ହୋଇଥାଏ ? 'ସ୍ୱାଧୀନ ଦେଶର ବିନାଶ ଅବଶ୍ୟମ୍ଭାବୀ' ଏହା କେତେଦୂର ଯଥାର୍ଥ ?

୩ । ଦେଶର ଉନ୍ନତିକଳ୍ପେ ବିଭିନ୍ନ ରାଷ୍ଟ୍ରମଧ୍ୟରେ ସହଯୋଗ ଓ ଐକ୍ୟତା ଆବଶ୍ୟକ, ଭାରତ ପକ୍ଷରେ ଏହା କେତେଦୂର ପ୍ରଯୁକ୍ତ ହୋଇପାରେ ?

---

## ସହଯୋଗ ଓ ସ୍ୱାବଲମ୍ବନଶୀଳତା

ସ୍ୱାଧୀନତା ପରେ ଗତ କେତେବର୍ଷ ମଧ୍ୟରେ ଆମ ଦେଶ ବହୁ ସୁଖ ଓ ଦୁଃଖ, ସୁବିଧା ଓ ଅସୁବିଧାଜନକ ପରିସ୍ଥିତି ମଧ୍ୟଦେଇ ଗତି କରୁଛି । ପରାଧୀନତା ଶୃଙ୍ଖଳରୁ ମୁକ୍ତିଲାଭ କଲାପରେ

ଯେ କୌଣସି ଦେଶ ନାନା ପରିସ୍ଥିତିର ସମ୍ମୁଖୀନ ହେବା ସ୍ୱାଭାବିକ । ରାଜନୈତିକ ସ୍ୱାଧୀନତା ଲାଭ ଭାରତୀୟ ସ୍ୱାଧୀନତା-ଆନ୍ଦୋଳନର ପ୍ରାଥମିକ ଲକ୍ଷ୍ୟ ଥିଲେ ସୁଦ୍ଧା ବାସ୍ତବରେ ତାହାହିଁ ଆମର ଚରମ ଲକ୍ଷ୍ୟ ନୁହେଁ । କେବଳ ରାଜନୈତିକ ସ୍ୱାଧୀନତା ଆମକୁ ପରିକଳ୍ପିତ ଓ ଇପ୍‌ସିତ ସ୍ୱରାଜ ଆଣି ଦେଇ ପାରିବ ନାହିଁ । ରାଜନୈତିକ ସ୍ୱାଧୀନତାସଙ୍ଗେ ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ ସ୍ୱାଧୀନତାହିଁ ଦେଶର ସର୍ବାଙ୍ଗୀନ ଅଭିବୃଦ୍ଧି ନିମନ୍ତେ ଅନୁକୂଳ ବାତାବରଣ ସୃଷ୍ଟି କରିବ । ଠିକ୍‌ଏ ଦୂରଦୃଷ୍ଟିର ସହିତ ବିଚାରିକଲେ ରାଜନୈତିକସ୍ୱାଧୀନତା ପଛକୁ ଅର୍ଥନୈତିକ ସ୍ୱାଧୀନତାର ଗୁରୁତ୍ୱ ସର୍ବାଦୌ ସ୍ୱୀକାର୍ଯ୍ୟ । ଅଭାବକବଳରୁ ମୁକ୍ତ ନ ହେଲେ ସ୍ୱାଧୀନତାର ସୁଫଳ ଆସ୍ୱାଦନ କରିବା ଆମପକ୍ଷରେ ବିଡ଼ମ୍ବନା ହେବ ।

ଏହି ଅର୍ଥନୈତିକ ସ୍ୱାଧୀନତା ଲାଭର ଉପାୟ କଅଣ । ଅଭାବ ବିରୁଦ୍ଧରେ ସଂଗ୍ରାମ କରି ଆମକୁ ଆତ୍ମନିର୍ଭରଶୀଳ ହେବାକୁ ପଡ଼ିବ । ଖାଦ୍ୟ, ପରିଧେୟ ତଥା ବିଭିନ୍ନ ଆବଶ୍ୟକ ପଦାର୍ଥର ଉତ୍ପାଦନ ବୃଦ୍ଧି କରିବା ଦ୍ୱାରା ଆମର ଜୀବନଧାରଣର ମାନ ବର୍ଦ୍ଧିତ ହୋଇ ପାରିବ । ଅନ୍ୟ ଦେଶ ସହିତ କେବଳ ତୁଳନା ନକରି ଆମ ଦେଶର ଅବସ୍ଥା, ଜଳବାୟୁ ଓ ପରିସ୍ଥିତି ଦିଗରୁ ବିଚାରିକରି ଯୋଜନାମୂଳକ ପଦ୍ଧତିଦ୍ୱାରା ଏହି ଅଭାବ ବିରୁଦ୍ଧରେ ସଂଗ୍ରାମ କରିବା ବରଂ ଅଧିକ ସମୀଚୀନ ।

ଦେଶର କଲ୍ୟାଣମାର୍ଗରେ, ଜାତୀୟ ଉନ୍ନତିପଥରେ ଦେଶବାସୀଙ୍କର ସମ୍ମିଳିତ ଉଦ୍ୟମ, ଐକାନ୍ତିକ ସହଯୋଗ ଲୋଡ଼ା । ବ୍ୟକ୍ତିବିଶେଷର ଉଦ୍ୟମ ଅପେକ୍ଷା ସହଯୋଗମୂଳକ ପ୍ରଚେଷ୍ଟାଦ୍ୱାରା ଉତ୍ପାଦନ ବହୁଳ ପରିମାଣରେ ବର୍ଦ୍ଧିତ ହୋଇଥାଏ, ଜାତୀୟ

ସମସ୍ୟାଗୁଡ଼ିକର ସମାଧାନ ସହଜସାଧ୍ୟ ହୋଇଥାଏ । ସହଯୋଗ ଦ୍ୱାରା ବହୁ କ୍ଷେତ୍ରରେ ଦେଶ ଆଶାତୀତଭାବରେ ଉନ୍ନତ ହୋଇ ପାରିଥାଏ । ସ୍ୱାଧୀନତା ଓ ସହଯୋଗ ଏ ଉଭୟ ମଧ୍ୟରେ ନିବିଡ଼ ସମ୍ପର୍କ ବିଦ୍ୟମାନ । ଦେଶବାସୀଙ୍କ ମଧ୍ୟରେ ସହଯୋଗର ଅଭାବରୁ ଦେଶ କେବଳ ଅନୁନ୍ନତ ହୁଏ ନାହିଁ, ଶତ୍ରୁ ଦ୍ୱାରା ବିପନ୍ନ ମଧ୍ୟ ହୋଇଥାଏ ! ସୁତରାଂ ପରାଧୀନତା ପରେ ବହୁ ଆୟାସଲବ୍ଧ ସ୍ୱାଧୀନତାର ସଂରକ୍ଷଣ ଓ ଦେଶର ଅନ୍ତର୍ନିହିତ ସମସ୍ୟାଗୁଡ଼ିକର ସମାଧାନନିମନ୍ତେ ସହଯୋଗମୂଳକ ଉଦ୍ୟମର ଏକାନ୍ତ ଆବଶ୍ୟକତା ରହିଛି ।

ସହଯୋଗମୂଳକ ଅନୁଷ୍ଠାନକୁ ସମବାୟ ଅନୁଷ୍ଠାନ ଆଖ୍ୟା ମଧ୍ୟ ଦିଆଯାଇଥାଏ । ସମବାୟର ଅର୍ଥ ପରସ୍ପର ସହାୟ । କେତେ-ଜଣ ବ୍ୟକ୍ତି ଏକତ୍ର ଅନୁଷ୍ଠାନ ଗଠନ କଲେ, ସଭ୍ୟମାନେ ଅନୁଷ୍ଠାନର ପରିଚାଳନାରେ ସମାନ ଅଧିକାର ଲାଭ କଲେ ଏବଂ ଅନୁଷ୍ଠାନର ଲାଭ ଅନୁଷ୍ଠାନଭୁକ୍ତ ସଭ୍ୟମାନଙ୍କ ମଧ୍ୟରେ ପରସ୍ପରର ଉଦ୍ୟମ ଅନୁପାତରେ ବଣ୍ଟନ କରାଗଲେ ସମବାୟ ଅନୁଷ୍ଠାନ ଗଠିତ ହୋଇଥାଏ ।

କେତେକଙ୍କର ଧାରଣା ସମବାୟ ଅନୁଷ୍ଠାନ ଆଧୁନିକ ଯୁଗର ପରିକଳ୍ପନାର ଫଳ । କିନ୍ତୁ ଇତିହାସରୁ ଜଣାଯାଏ କୃଷି, ଶିଳ୍ପ-ପ୍ରଭୃତି କ୍ଷେତ୍ରରେ ବହୁକାଳ ପୂର୍ବରୁ ଭାରତରେ ସହଯୋଗମୂଳକ ଉଦ୍ୟମ ପ୍ରଚଳିତ ଥିଲା । ପ୍ରାଚୀନ ଭାରତୀୟ ସଭ୍ୟତା ଯଥାର୍ଥରେ ପଲ୍ଲୀ-ସଭ୍ୟତା । ପଲ୍ଲୀହିଁ ରାଷ୍ଟ୍ରର ମେରୁଦଣ୍ଡ ଥିଲା । ପ୍ରାଚୀନ ଭାରତରେ ପଲ୍ଲୀଗୁଡ଼ିକ ବହୁ ପରିମାଣରେ ସ୍ୱାବଲମ୍ବୀ ଥିଲେ । ପଲ୍ଲୀବାସୀ ମାନେ ସହଯୋଗମୂଳକ ଉଦ୍ୟମରେ କୃଷିଜାତ ଦ୍ରବ୍ୟ ଉତ୍ପାଦନକରି ଉତ୍ପନ୍ନ ଶସ୍ୟ ପରସ୍ପର ମଧ୍ୟରେ ବଣ୍ଟନ କରୁଥିଲେ । ରାଜସ୍ୱ ଓ ନିଜର

ଅବଶ୍ୟକ ପଡ଼ରେ ଯାହା ଉଦ୍‌ବୃତ୍ତ ରହୁଥିଲା ତାହା ଜାତୀୟ ଦୁର୍ଦ୍ଦିନରେ ଦୁଃସ୍ଥ ଓ ଅଭାବଗ୍ରସ୍ତ ବ୍ୟକ୍ତିମାନଙ୍କ ମଧ୍ୟରେ ବଣ୍ଟନ ହେଉଥିଲା । ପ୍ରାଚୀନ ଭାରତରେ ସମବାୟ ଅନୁଷ୍ଠାନର ବିଦ୍ୟମାନତା ଚନ୍ଦ୍ରଗୁପ୍ତଙ୍କ ମନ୍ତ୍ରୀ କୌଟିଲ୍ୟଙ୍କ ଲିଖିତ ଅର୍ଥଶାସ୍ତ୍ରରୁ ଜଣାଯାଇ ଥାଏ । ଏହି ଅର୍ଥଶାସ୍ତ୍ର ସେ ସମୟର ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ଅବସ୍ଥାର ଏକ ପ୍ରଧାନ ବିବରଣୀ । ମଗଧର ରାଜଧାନୀ ପାଟଳୀପୁତ୍ରରେ ସମବାୟ ଅନୁଷ୍ଠାନ ଥିବାର ଏଥିରେ ଉଲ୍ଲେଖ ଅଛି । ଏହି ଅନୁଷ୍ଠାନ ଶିଳ୍ପୀମାନଙ୍କୁ କଞ୍ଚାମାଲ ଓ ଶିଳ୍ପ ଉପକରଣ ଯୋଗାଇବା, ଉତ୍ପାଦନର ମୌଳିକ ବ୍ୟୟ ନିମନ୍ତେ ସେମାନଙ୍କୁ ଅଗ୍ରିମ ଅର୍ଥ ସାହାଯ୍ୟ ଦେବା ପ୍ରଭୃତି କାର୍ଯ୍ୟ କରୁଥିଲା ।

କଳିଙ୍ଗ ଦିନେ ନୌବାଣିଜ୍ୟ ନିମନ୍ତେ ଭାରତପ୍ରସିଦ୍ଧ ଥିଲା । ସମ୍ମିଳିତ ଉଦ୍ୟମରେ କଳିଙ୍ଗର ସାଧବସମ୍ପ୍ରଦାୟ ନୌନିର୍ମାଣ ଓ ବିଦେଶରେ ବାଣିଜ୍ୟ କରୁଥିଲେ ।

ଆଧୁନିକ ଯୁଗରେ ସମବାୟ-ସମିତି ପ୍ରଥମେ ଜର୍ମାନୀରେ ସୃଷ୍ଟ ହୋଇଥିଲା । ଜର୍ମାନୀର ଦୁଃସ୍ଥ, ନିରନ୍ନ କୃଷକର ଦୁର୍ଦ୍ଦଶା ଦୂର କରିବା ନିମନ୍ତେ ଫ୍ରେଡରିକ ଏ ସମିତିର ପରିକଳ୍ପନା କରିଥିଲେ ।

ବିଂଶ ଶତାବ୍ଦୀର ଆରମ୍ଭରେ ଆମ ଭାରତରେ ସରକାରଙ୍କ ପ୍ରଚେଷ୍ଟାରେ ସମବାୟ-ଆନ୍ଦୋଳନ ପ୍ରବର୍ତ୍ତିତ ହୋଇଥିଲା । କୃଷି ଏ ଦେଶର ମୌଳିକ ବ୍ୟବସାୟ ହୋଇଥିବାରୁ ସରକାର କୃଷକଙ୍କୁ କରଜ ଯୋଗାଇବା ଉଦ୍ଦେଶ୍ୟରେ ଭାରତରେ ସମବାୟ ଅନୁଷ୍ଠାନ ଗଠନ କରିଥିଲେ । ଭାରତରେ ଦରିଦ୍ର ଚାଷୀ ଅଭାବ ସମୟରେ ଋଣଦାତା ମହାଜନମାନଙ୍କଠାରୁ ଋଣ ଗ୍ରହଣ କରି ଋଣଜନିତ ଅତ୍ୟଧିକ ସୁଧ ଭାରରେ ଉତ୍ପୀଡ଼ିତ ହୋଇଥାଏ । ତେଣୁ ପ୍ରଥମରେ ଏ ଅନୁଷ୍ଠାନ ଚାଷୀମାନଙ୍କୁ ଏ ଦିଗରେ ସାହାଯ୍ୟ କରିବା ନିମନ୍ତେ

ଗଠିତ ହୋଇଥିଲା । କିନ୍ତୁ ସମବାୟ-ଅନୁଷ୍ଠାନର ପରିସର ଏହି ସଙ୍କୀର୍ଣ୍ଣ ପରିଧି ମଧ୍ୟରେ ଆବଦ୍ଧ ନୁହେଁ । ସାମୟିକଭାବରେ ଋଣ ଦେଇ ଦେଶବାସୀଙ୍କର ଆର୍ଥିକ ଅଭାବକୁ କେବଳ ମୋଚନ କରିବା ଏହି ଅନୁଷ୍ଠାନର ଉଦ୍ଦେଶ୍ୟ ନୁହେଁ । ଦେଶରେ ପ୍ରଭୂତ ଉତ୍ପାଦନ-ଦ୍ୱାରା ଉଚ୍ଚ, ନୀଚ, ଧନୀ, ଦରିଦ୍ର ମଧ୍ୟରେ ବିଦ୍ୟମାନ ସାମାଜିକ ଓ ଅର୍ଥନୈତିକ ଅସମାନତାକୁ ଦୂର କରିବା ଏହାର ଲକ୍ଷ୍ୟ । ସମାନ ଅଧିକାର ଓ ଦାବୀ ବହନକରି ସମୂହଭାବରେ ଅନୁଷ୍ଠାନକୁ ଦୃଢ଼ ଓ ସବଳ କରିବା ଉଦ୍ଦେଶ୍ୟରେ ଅନୁଷ୍ଠାନଭୁକ୍ତ ସଭ୍ୟମାନେ ଚେଷ୍ଟା କରିଥାଆନ୍ତି । ସମୂହ ଭାବରେ କୃଷିକାର୍ଯ୍ୟ ସମ୍ପାଦନ, ସମୂହ ଉତ୍ପାଦନ, ଉଚିତ ମୂଲ୍ୟରେ ପଦାର୍ଥର ବିକ୍ରୟ, ସାମାଜିକ ଦୋଷ ଦୁର୍ବଳତା ଗୁଡ଼ିକୁ ସଂଘବଦ୍ଧ ପ୍ରଚେଷ୍ଟାରେ ଦୂରୀକରଣଦ୍ୱାରା ଉନ୍ନତ ନାଗରିକ ଜୀବନ ଗଠନକରିବା ଏହାର ଉଦ୍ଦେଶ୍ୟ । କେବଳ କୃଷିଋଣ ଦେବା ଦ୍ୱାରା ସମବାୟ-ଅନୁଷ୍ଠାନ ବହୁ ସ୍ଥଳରେ ଋଣ-ଗ୍ରହୀତା ମାନଙ୍କର ଅକଲ୍ୟାଣକର ହୋଇ ପଡ଼ିଥିବାର ଦୃଷ୍ଟାନ୍ତ ମଧ୍ୟ ବିରଳ ନୁହେଁ । ଉନ୍ନତ ଦେଶ ମାନଙ୍କରେ ସମବାୟ ସୂତ୍ରରେ କୃଷି, କୃଷିଜାତ ଦ୍ରବ୍ୟ କ୍ରୟ ଓ ବିକ୍ରୟ, ଶସ୍ୟସଂରକ୍ଷଣ, ଗୋପାଳନ, ଦୁଗ୍ଧ ଯୋଗାଣ, ମାଛ ବ୍ୟବସାୟ, ଗୃହନିର୍ମାଣ, ରୋଗନିବାରଣ, ବିଦ୍ୟୁତ ଉତ୍ପାଦନ, ଚିକିତ୍ସାଳୟ ସ୍ଥାପନ ପ୍ରଭୃତି ବିଭିନ୍ନ ବିଭାଗରେ ସମିତି ଗଠିତ ହୋଇ କାର୍ଯ୍ୟକାରୀ ହୋଇ ପାରିଛି । ଏ ଗୁଡ଼ିକ ଆମ ଦେଶରେ ଗଠିତ ଓ କାର୍ଯ୍ୟକାରୀ ହେବା ନିମନ୍ତେ ଯଥେଷ୍ଟ ପରିସର ଅଛି । ଏ ଗୁଡ଼ିକର ଗଠନ ଓ ସଫଳତା ଉପରେ ଦେଶର ବହୁ କଲ୍ୟାଣ ନିର୍ଭର କରୁଛି । ବିଶେଷ ଭାବରେ ଭାରତ ଗ୍ରାମବହୁଳ ଦେଶ ହୋଇଥିବାରୁ ଗ୍ରାମସମୂହରେ ସହଯୋଗମୂଳକ ପ୍ରତିଷ୍ଠାନ ଗଠିତ ହେବାର ସୁବିଧା ଅଧିକ ରହିଛି ।

ଉତ୍କଳରେ ସହଯୋଗମୂଳକ ପ୍ରାଦେଶିକ ଅନୁଷ୍ଠାନର ଗୁଟିଏ ଶାଖା ରହିଛି:—ବ୍ୟାଙ୍କ, ବାଣିଜ୍ୟ ସମିତି, ସମବାୟ ସଂଘ ଓ ବସ୍ତ୍ର-ବଣ୍ଟନ ସମିତି । ପ୍ରାଦେଶିକ ବ୍ୟାଙ୍କ ଦେଶର ସମସ୍ତ ସମବାୟ-ଅନୁଷ୍ଠାନକୁ ମୂଳଧନ ଯୋଗାଇଥାଏ । ଗାଁ ଗହଳର କୁଟୀରଶିଳ୍ପଜାତ ଦ୍ରବ୍ୟ ତଥା ଉତ୍ପନ୍ନ ବିଶୁଦ୍ଧ ତେଲ, ଘିଅ, ମହୁ, ପାଳୁଅ-ପ୍ରଭୃତି ପଦାର୍ଥ ଆଣି ସହରମାନଙ୍କରେ ବିକ୍ରୟ କରିବା ଦ୍ୱାରା ପଲ୍ଲୀ-କୃଷକ ଓ କାରିଗର ମାନେ ଉପକୃତ ହୁଅନ୍ତି । ଏ କାର୍ଯ୍ୟ ପ୍ରାଦେଶିକ ବାଣିଜ୍ୟସମିତି ଜରିଆରେ ହୋଇଥାଏ । ପୁଣି ଗଡ଼ଜାତ ଓ ମାଳ-ଅଞ୍ଚଳର ଆଦିବାସୀ ମାନଙ୍କର ଉତ୍ପନ୍ନ ହଳଦୀ, ତେନ୍ତୁଳି, ସୋରିଷ, ସଜପ ପ୍ରଭୃତି ଏହି ସମିତି କ୍ରୟ କରି ସେମାନଙ୍କୁ ବିନିମୟରେ ଲୁଗା, ବାସନ ଓ କୃଷି ଉପକରଣ ପ୍ରଭୃତି ଦେଇଥାଏ । ପ୍ରଦେଶରେ କେତେକ ତନ୍ତୁବାୟ ଓ ମତ୍ସ୍ୟଜୀବୀ ସମିତି, ଯୋତା ତିଆରି, ଲବଣ ଉତ୍ପାଦନ, ଶିଙ୍ଗ କାମ, ତେଲ ଘଣା, ସୂତା କଟା, ଟୋପି ତିଆରି ଇତ୍ୟାଦିର ସମିତିମାନ ଗଠିତ ହୋଇ ଶିଳ୍ପପ୍ରସାର ନିମନ୍ତେ ଉଦ୍ୟମ କରୁଅଛି । ତା ଛଡ଼ା ଆମ ଓଡ଼ିଶାରେ କୋଠଚାଷର ପ୍ରବର୍ତ୍ତନ ଓ ଗୃହନିର୍ମାଣ ସମିତି ଗଠନ କରିବାର ପରିକଳ୍ପନା କର୍ମକର୍ତ୍ତାଙ୍କର ଯୋଜନା ମଧ୍ୟରେ ରହିଛି । ଏହାହିଁ ଓଡ଼ିଶାରେ ସହଯୋଗମୂଳକ ଉଦ୍ୟମର ଏକ ଚିତ୍ର ।

ବର୍ତ୍ତମାନ ଆମ ଦେଶରେ ସମବାୟ କୃଷି ବା କୋଠଚାଷର ପ୍ରବର୍ତ୍ତନ ଏକାନ୍ତ ଆବଶ୍ୟକ । ଆମଦେଶର ଲୋକସଂଖ୍ୟାର ଶତକଡ଼ା ପ୍ରାୟ ୮୭ ଭାଗ ଗାଁ ଗହଳୀରେ ବାସ କରନ୍ତି । ପ୍ରାୟ ସାତଲକ୍ଷ ଗାଁ ଭାରତର ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ବିସ୍ତୃତ । ଏହି ଗାଁ-ଗହଳୀର ଉନ୍ନତିରେହିଁ ଦେଶର ଉନ୍ନତି, ଜାତିର ଅଭିବୃଦ୍ଧି । ଏହି ଗ୍ରାମବାସୀଙ୍କର ପ୍ରଧାନ ଜୀବିକା କୃଷି । ତେଣୁ ଭାରତର ଅର୍ଥନୀତି

କ୍ଷେତ୍ରରେ କୃଷି ଏକ ପ୍ରଧାନ ସ୍ଥାନ ଅଧିକାର କରିଅଛି । ଆମ ଲୋକ-ସଂଖ୍ୟାର ତିନିଭାଗରୁ ଦୁଇଭାଗ ଅପେକ୍ଷା ଅଧିକ ଲୋକ ନିଜର ଜୀବିକା ଅର୍ଜନ ନିମନ୍ତେ କୃଷି ଉପରେ ନିର୍ଭର କରିଥାନ୍ତି । ଜାତୀୟ ସମ୍ପଦ ସୃଷ୍ଟି ଦିଗରେ କୃଷି ଆମ ଦେଶର ପ୍ରଧାନ ଅବଲମ୍ବନ । କିନ୍ତୁ ସମୟର ଅଗ୍ରଗତି ସଙ୍ଗେ କୃଷିକ୍ଷେତ୍ରରେ ଭାରତ ଆଶାନୁରୂପ ଅଗ୍ରସର ହୋଇ ପାରିନାହିଁ । ଆମ ଦେଶର ଜନସଂଖ୍ୟା ବର୍ଷକୁ ବର୍ଷ ବଢ଼ି ଚାଲିଥିଲେ ସୁଦ୍ଧା ଚାଷପ୍ରଣାଳୀରେ କୌଣସି ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ କିମ୍ବା ଅଧିକ ଶସ୍ୟ ଉତ୍ପାଦନ କରିବାରେ ଆଶାନୁରୂପ ସଫଳତା ପରିଲକ୍ଷିତ ହେଉନାହିଁ । ଫଳତଃ ଖାଦ୍ୟ ଅଭାବ ମେଣ୍ଟାଇବା ଲାଗି ଭାରତ ଅନ୍ୟ ଦେଶ ଉପରେ ନିର୍ଭର କରୁଛି । କୃଷିରେ ଆଶାନୁରୂପ ଉନ୍ନତି ନ ହେବା ମୂଳରେ କେତୋଟି ପ୍ରଧାନ ଅସୁବିଧା ରହିଛି । ସେ ଗୁଡ଼ିକର ସମାଧାନ ଏକାନ୍ତ ଆବଶ୍ୟକ ।

ଆମ ଦେଶରେ ଚାଷ ଜମିର ଅଭାବ ନାହିଁ; କିନ୍ତୁ ଜମି-ଗୁଡ଼ିକର ଆକାର ଏକାନ୍ତ କ୍ଷୁଦ୍ର ହୋଇଥିବାରୁ ଉନ୍ନତ ଧରଣର ଚାଷ ସମ୍ଭବ ହୋଇ ପାରୁନାହିଁ । ଚାଷୀମାନେ ଚାଷକାର୍ଯ୍ୟରେ ଜଳସେଚନ ନିମନ୍ତେ ଆକାଶକୁ ଚାହିଁ ରହିଥାନ୍ତି ଓ ବନ୍ୟା, ମରୁଡ଼ି-ପ୍ରଭୃତି ଆମ ଦେଶରେ ଚାଷୀର ପ୍ରତିପକ୍ଷୀଭାବରେ କାର୍ଯ୍ୟ କରିଥାନ୍ତି । ପୁଣି ଏ ଦେଶର ଚାଷୀକୁଳ ଅଜ୍ଞ, ଅଶିକ୍ଷିତ ଓ ନିର୍ଦ୍ଧନ ହୋଇଥିବାରୁ ଚାଷକାର୍ଯ୍ୟରେ ଉନ୍ନତିମୂଳକ ଯୋଜନାସମ୍ବନ୍ଧରେ ସେମାନଙ୍କର ଧାରଣା ନାହିଁ । ସୁତରାଂ ନିଜର କୃଷିକାର୍ଯ୍ୟରେ ବୈଜ୍ଞାନିକ ଉପାୟର ସାହାଯ୍ୟ ଗ୍ରହଣ କରିବା ସେମାନଙ୍କ ପକ୍ଷରେ ସମ୍ଭବ ହେଉନାହିଁ । ଏହି ଅସୁବିଧାଗୁଡ଼ିକୁ ଦୂର କରି ଚାଷର ସନ୍ତୋଷଜନକ ଉନ୍ନତି କରିବାକୁ ହେଲେ ସହଯୋଗମୂଳକ କୃଷିର ପ୍ରବର୍ତ୍ତନ ଆବଶ୍ୟକ । ଫଳତଃ ଚାଷୀ ବହୁ ପରିମାଣରେ ଉପକୃତ ହୋଇପାରିବ ।

ଜମିଗୁଡ଼ିକ ଏକାନ୍ତ କ୍ଷୁଦ୍ର ହୋଇଥିବାରୁ ଏକ କ୍ଷୁଦ୍ର ଜମିରେ ବହୁ ବ୍ୟୟସାପେକ୍ଷ ବୈଜ୍ଞାନିକ ଉପାୟର ପ୍ରୟୋଗ ଅସମ୍ଭବ । ଛୋଟ ଛୋଟ ଜମିଗୁଡ଼ିକ ବ୍ୟକ୍ତିଗତ ଭାବରେ ଚାଷ କରିବାଦ୍ୱାରା ଶ୍ରମର ଅଯଥା ବିନିଯୋଗ ହୋଇଥାଏ । ସୁତରାଂ ସହଯୋଗ-ମୂଳକ କୃଷିଦ୍ୱାରା ପ୍ରଥମେ ଅର୍ଥ ଓ ଶ୍ରମର ଅଯଥା ବିନିଯୋଗ ଦୂରୀଭୂତ ହୋଇପାରିବ ।

ନିକଟବର୍ତ୍ତୀ କୌଣସି ଏକ ଅଞ୍ଚଳର ଚାଷୀମାନେ ଆପଣା ଆପଣାର ଜମିଗୁଡ଼ିକୁ ମିଶାଇ ଦେଇ ସହଯୋଗମୂଳକ କୃଷିର ଆଶ୍ରୟ ଗ୍ରହଣ କରି ପାରନ୍ତି । ଯେଉଁଠାରେ ପଡ଼ିଆ ଜମି ଅଛି ସେହି ଜମିକୁ ଅବାଦ କରି ସହଯୋଗମୂଳକ କୃଷି କରିବା ସର୍ବାପେକ୍ଷା ସହଜ । ଏହି ପ୍ରକାର ଆଶ୍ରୟ ଗ୍ରହଣ କଲେ ଚାଷୀମାନେ ସମୂହଭାବରେ କଳଲଙ୍ଗଳ (ଟ୍ରାକ୍ଟର) ପ୍ରଭୃତି ଦ୍ୱାରା ନିଜ ଜମିକୁ ଚାଷ କରିପାରିବେ । କୌଣସି ସ୍ଥାନରେ ଉତ୍କୃଷ୍ଟ ବିହନ ଥିଲେ ସମ୍ମିଳିତ ଭାବରେ କିଣି ପାରିବେ । ସମ୍ମିଳିତ ଚାଷରେ ଶ୍ରମର ନିୟୋଗ ବହୁ ପରିମାଣରେ ଲାଘବ ହୋଇଯିବ । ପୁଣି ଜମିର ଯଥାର୍ଥ କର୍ଷଣ, ଜଳସେଚନ, ଉନ୍ନତ ସାର ଓ ବିହନ ପ୍ରଭୃତିର ପ୍ରୟୋଗଯୋଗୁଁ ଉତ୍ପାଦନ ମଧ୍ୟ ବୃଦ୍ଧି ପାଇବ । ଚାଷୀମାନେ ସମବାୟସୂତ୍ରରେ ନିଜ ଉତ୍ପନ୍ନ ପଦାର୍ଥର ବିକ୍ରୟ କରି ଯଥେଷ୍ଟ ଲାଭବାନ୍ ହୋଇ ପାରିବେ । ଫଳରେ ଜମିର ଉତ୍ତରୋତ୍ତର ଉନ୍ନତି, ଉନ୍ନତ ଜଳସେଚନ, ସାଧାରଣ ଜନ-ହିତକର କାର୍ଯ୍ୟପ୍ରଭୃତି ଦିଗରେ ବ୍ୟୟ କରିବାକୁ ଚାଷୀମାନଙ୍କ ହାତରେ ଯଥେଷ୍ଟ ଅର୍ଥ ରହି ପାରିବ । ଶସ୍ୟସଂରକ୍ଷଣ ସମ୍ବନ୍ଧରେ ନାନା ନିରାପଦ ପନ୍ଥା ଉଦ୍ଭାବିତ ହେଲଣି । ସମବାୟ ସୂତ୍ରରେ ଚାଷୀମାନେ ସେଗୁଡ଼ିକୁ ବ୍ୟବହାର କରିବାକୁ ସମର୍ଥ ହେବେ ।

. ଧନେ ଆମଦେଶର ଗୋସମ୍ପଦ ଉନ୍ନତିର ଚରମ ସୀମାରେ ଉପନୀତ ହୋଇଥିଲା । ପୁରାଣମାନଙ୍କର କାମଧେନୁପ୍ରସଙ୍ଗ ଆଜି ବିସ୍ମୟ ଉତ୍ପାଦନ କରେ । ଜାତିର ଗଠନ ନିମନ୍ତେ ଗୋଜାତିର ଦାନ ଅତୁଳନୀୟ । ଗୋଦୁଗ୍ଧ ବଳ ଓ ବୁଦ୍ଧିର ବର୍ଦ୍ଧକ ହୋଇଥିବାରୁ ଗୋଜାତି ଆମର ମାତୃ ସ୍ୱରୂପିଣୀ । କିନ୍ତୁ ଆମଦେଶରେ ଏହି ସମ୍ପଦ ଦିନୁଦିନ ହ୍ରାସ ହେଉଅଛି । ଗୋସଂରକ୍ଷଣ, ଗୋପାଳନ ଓ ଗୋଜାତିର ଉନ୍ନତି ନିମନ୍ତେ ସମସ୍ତଙ୍କର ଉଦ୍ୟମ ଓ ସହଯୋଗ କରିବା ଆବଶ୍ୟକ ।

ଶିକ୍ଷା, ସ୍ୱାସ୍ଥ୍ୟ ପ୍ରଭୃତି ବିଭିନ୍ନଦିଗରେ ଆମଦେଶ ବହୁ ପଛରେ ପଡ଼ି ରହିଛି । ଶିକ୍ଷାର ପ୍ରସାର, ସ୍ୱାସ୍ଥ୍ୟସଂରକ୍ଷଣ ନିମନ୍ତେ ପ୍ରତିଷେଧକ ଗ୍ରହଣ ପ୍ରଭୃତି ବିଷୟରେ ଦେଶବାସୀଙ୍କର ସହଯୋଗ-ମୂଳକ ଉଦ୍ୟମ ଫଳରେ ଦେଶ ବହୁ ଉନ୍ନତି କରିପାରିବ ! ଶିଳ୍ପର ଉନ୍ନତି-କ୍ଷେତ୍ରରେ ମଧ୍ୟ ଏହି ସମବାୟ ଉଦ୍ୟମ ବିଶେଷ ସହାୟକ ।

ପରିମିତ ଖାଦ୍ୟ, ସୁସ୍ଥ ଜୀବନଯାପନ ପ୍ରଣାଳୀ, ଶିକ୍ଷା ଏବଂ ପୌରନୀତିର ପ୍ରସାର ଫଳରେ ଦେଶବାସୀ ଉନ୍ନତ ନାଗରିକ ହେବା ସଙ୍ଗେ ସଙ୍ଗେ ପରିବାର, ସମାଜ ଓ ରାଷ୍ଟ୍ରପ୍ରତି ନିଜର କର୍ତ୍ତବ୍ୟ ସମ୍ବନ୍ଧରେ ଅବହିତ ହୋଇପାରିବେ । ସହଯୋଗମୂଳକ ଉଦ୍ୟମ-ଦ୍ୱାରା ବିଭିନ୍ନ କ୍ଷେତ୍ରରେ ଉତ୍ପାଦନ ବୃଦ୍ଧିକରି ସ୍ୱାବଲମ୍ବୀ ହୋଇ ପାରିଲେ ଦେଶବାସୀମାନେ ଉନ୍ନତ ଅର୍ଥନୈତିକ, ସାମାଜିକ ଓ ଶିକ୍ଷାମୂଳକ ପରିସ୍ଥିତି ମଧ୍ୟରେ ଜୀବନଯାପନ କରିପାରିବେ । ଯୋଜନାମୂଳକ ପ୍ରଚେଷ୍ଟା, ଶିଳ୍ପ ଗୁଡ଼ିକର ପରିକଳ୍ପନା ଓ ବିକାଶ କୃଷି କ୍ଷେତ୍ରରେ ସମୁଚିତ ଉନ୍ନତି ଓ ଦେଶର ଅନୁକୂଳ ଶିକ୍ଷାପଦ୍ଧତିର ପ୍ରଚଳନ ଓ ପ୍ରସାର ଫଳରେ ଦେଶବାସୀଙ୍କମଧ୍ୟରେ ନୂତନ ଭାବଧାରା ଓ ଆଦର୍ଶ ସଞ୍ଚାରିତ ହେବ । ଅର୍ଥନୈତିକ ପରିସ୍ଥିତିରେ

କମିକ ପରିବର୍ତ୍ତନ ଫଳରେ ଆମର ଅର୍ଥକମାନ କ୍ରମଶଃ ବୃଦ୍ଧି ହେବ । ସେତିକିବେଳେ ଆମେ କଳ୍ପିତ ସ୍ୱରାଜର ସୁଫଳ ଲାଭକରିବାକୁ ସମର୍ଥ ହୋଇପାରିବା ।

ପ୍ରଶ୍ନ—୧ । ଭାରତ ସ୍ୱାଧୀନ ହୋଇଥିଲେ ସୁଦ୍ଧା ଗାନ୍ଧିଜୀଙ୍କର କଳ୍ପିତ 'ସ୍ୱରାଜ'ର ସୁଫଳ ଆସ୍ୱାଦନ କରିବା ଆମ୍ଭ ପକ୍ଷରେ ସମ୍ଭବ ହୋଇନାହିଁ କାହିଁକି ?

୨ । ପ୍ରାଚୀନ ଭାରତରେ ସହଯୋଗମୂଳକ ଉଦ୍ୟମ ସମ୍ବନ୍ଧରେ ଯାହା ଜାଣ ଲେଖ । ଆମ ପ୍ରାଚୀନ ଉତ୍କଳରେ ସମବାୟ ଉଦ୍ୟମ ଥିଲା କି ?

୩ । ଦେଶର କଲ୍ୟାଣ ପକ୍ଷରେ ଦେଶବାସୀଙ୍କର ସହଯୋଗର ଏକାନ୍ତ ଲୋଡ଼ା, ଏହା ସତ୍ୟ କି ?

୪ । କେଉଁ କେଉଁ କ୍ଷେତ୍ରରେ ସହଯୋଗ ମୂଳକ ଉଦ୍ୟମର ଆଶ୍ରୟ ଗ୍ରହଣ କରାଯାଇପାରେ ? ଉତ୍କଳରେ ଏ ଉଦ୍ୟମର ବିକାଶ ଉଲ୍ଲେଖକର ।

୫ । ନିମ୍ନ ଶବ୍ଦମାନଙ୍କର ଆକ୍ଷରିକ ଅର୍ଥଲେଖ ?
ଐକାନ୍ତିକ, ସ୍ୱାବଲମ୍ବୀ, ଉଦ୍‌ବୃତ୍ତ, ଅଗ୍ରିମ, ଅବଲମ୍ବନ, ବିନିମୟ, ପରିପନ୍ଥୀ, କାମଧେନୁ, ପୌରନୀତି ।

୬ । ପଦ ପରିବର୍ତ୍ତନ କର ?
ସମାଧାନ, ବିପିନ, ସମବାୟ, ବିନିଯୋଗ, ପରିମିତ ?

———

## ସ୍ୱାଧୀନ ଭାରତରେ ନାଗରିକର ଦାୟିତ୍ୱ ଓ କର୍ତ୍ତବ୍ୟ

ଦେଶବାସୀଙ୍କୁ ନେଇ ଦେଶ ଗଠିତ । ଦେଶ ମଧ୍ୟରେ ବାସ କରି ଦେଶସ୍ଥିତ ବିଭିନ୍ନ ସୁବିଧା ଓ ସୁଯୋଗ ଦେଶବାସୀ ଉପଭୋଗ କରିଥାଆନ୍ତି । ନିଜକୁ ଦେଶର ଏକ ଅଙ୍ଗ ଭାବରେ ବିଚାର କରି ସମାଜ, ଜାତି ଓ ଦେଶର ସଂରକ୍ଷଣ, କଲ୍ୟାଣ ଓ ସମୃଦ୍ଧି ଆନୟନ କରିବା ଦିଗରେ ଯେଉଁ ବ୍ୟକ୍ତି ଚେଷ୍ଟିତ ଓ ସେଥି ନିମିତ୍ତ କର୍ମପରାୟଣ ହୋଇଥାଆନ୍ତି ତାଙ୍କୁହିଁ ନାଗରିକ ନାମରେ ଅଭିହିତ କରାଯାଇଥାଏ । ପୂର୍ବେ 'ନାଗରିକ' ଶବ୍ଦ କେବଳ ନଗରବାସୀଙ୍କ ପ୍ରତି ବ୍ୟବହୃତ ହେଉଥିଲେ ସୁଦ୍ଧା ଆଜି ଦେଶର ବିଭିନ୍ନ ସ୍ଥାନର ଅଧିବାସୀ ନାଗରିକ ଭାବରେ ଅଖ୍ୟାତ ହୋଇ ଥାନ୍ତି । ଜଣେ ନାଗରିକ ବୁଦ୍ଧିଶୀଳ ଭାବରେ ଦେଶର ବିଭିନ୍ନ କର୍ମ-କ୍ଷେତ୍ର ବା ଅନୁଷ୍ଠାନର ପରିଚାଳନାରେ ଭାଗ ଗ୍ରହଣ କରିଥାଆନ୍ତି । ଦେଶର ଏକ ସଭ୍ୟ ରୂପରେ ଦେଶପ୍ରତି ବିଶ୍ୱସ୍ତତା ପୋଷଣ କରି ଦେଶର ସର୍ବାଙ୍ଗୀନ ଉନ୍ନତି ବିଧାନ ନିମନ୍ତେ ସେ ଉଦ୍ୟମଶୀଳ ହେବା ବିଧେୟ । ଜୀବନରେ ମହତ୍ତମ ଆଦର୍ଶର ଉପଲବ୍ଧି କରିବା ନିମନ୍ତେ ଯେଉଁ କର୍ମ କରିବା ଉଚିତ ତସେ ସମସ୍ତ ନାଗରିକ ସମ୍ପନ୍ନ କରିବେ । ଦେଶର ବିକାଶ ନିମନ୍ତେ ଯେଉଁ କେତେକ ଆଇନ ଆବଶ୍ୟକ ସେଗୁଡିକର ପ୍ରବର୍ତ୍ତନ ଓ ପ୍ରଚଳନ ନିମନ୍ତେ ମତ ପ୍ରକାଶ କରିବାର କ୍ଷମତା ଓ ସ୍ୱାଧୀନତା ନାଗରିକଙ୍କର ଅଛି । ପ୍ରକୃଷ୍ଟ ନାଗରିକ ନିଜର ନୀତି ଓ କର୍ମପନ୍ଥା ମଧ୍ୟରେ ବ୍ୟକ୍ତିଗତ ସୁଖ ଓ ସ୍ୱାର୍ଥସାଧନକୁ ମୂଳ ଭାବରେ ଗ୍ରହଣ କରି ନଥାନ୍ତି; ଅନ୍ୟ ପକ୍ଷରେ ସମୂହ ଭାବରେ ଦେଶର ମଙ୍ଗଳ ସାଧନ ନିମନ୍ତେ ଲକ୍ଷ୍ୟ ପୋଷଣ କରିଥାଆନ୍ତି । ଏହାହିଁ ନାଗରିକଙ୍କର ପରିଚୟ ଓ ଦାୟିତ୍ୱର ସୂଚନା ।

ନାଗରିକ୍, ସମାଜ ଓ ଦେଶ ସହିତ ଘନିଷ୍ଠଭାବରେ ଜଡ଼ିତ । ସମାଜର ଅନୁକୂଳ ପରିସ୍ଥିତି ମଧ୍ୟରେ ନାଗରିକର ବିକାଶ ଓ ଉନ୍ନତି ପୁଣି ନାଗରିକର ଉନ୍ନତିରେ ସମାଜ ବା ଜାତିର ଅଭିବୃଦ୍ଧି ସାଧିତ ହୋଇଥାଏ । ସୁତରାଂ ଏକ ଦିଗରେ ନିଜର ବ୍ୟକ୍ତିତ୍ୱ ବିକାଶ ନିମନ୍ତେ ଉଦ୍ୟମ, ଅନ୍ୟ ପକ୍ଷରେ ସାମାଜିକ ବା ଜାତୀୟ କଲ୍ୟାଣ ଦିଗରେ ପ୍ରଚେଷ୍ଟା, ଏହି ଉଭୟ ନାଗରିକର କର୍ମଧାରାକୁ ନିୟନ୍ତ୍ରିତ କରିଥାଏ । ପ୍ରକୃତ ନାଗରିକ ଯଥାର୍ଥ ଦେଶପ୍ରେମୀ । ଦେଶ ମଧ୍ୟରେ ନିଜକୁ ଓ ନିଜ ମଧ୍ୟରେ ଦେଶକୁ ଉପଲବ୍ଧି କରିବାର ଚେତନା ତାଙ୍କ ଠାରେ ବିଦ୍ୟମାନ । ଏହି ଜାତୀୟ ଭାବଧାରା ତାଙ୍କୁ ଜୀବନ କ୍ଷେତ୍ରରେ ପରିଚାଳିତ କରିଥାଏ । ସୁତରାଂ ଜାତି ବା ଦେଶ ସହିତ ଦେଶବାସୀ ନିବିଡ଼ ସମ୍ପର୍କରେ ଅାବଦ୍ଧ ହେଲେ ତାଙ୍କୁ ନାଗରିକ ଆଖ୍ୟା ଦିଆଯାଇପାରେ ।

ଫଳତଃ ଦେଖାଗଲା ଦେଶାତ୍ମବୋଧ ନାଗରିକତାର ଏକ ବିଶିଷ୍ଟ ଗୁଣ । କୌଣସି ଏକ ଦେଶରେ ବୈଦେଶିକମାନେ ବାସ କରିପାରନ୍ତି, ମାତ୍ର ସେମାନେ ଉକ୍ତ ଦେଶର ନାଗରିକ ନୁହନ୍ତି; କାରଣ ଉକ୍ତ ଦେଶ ପ୍ରତି ସେମାନଙ୍କର ଅନୁରକ୍ତି ବା ଭକ୍ତି ନାହିଁ । ସେମାନେ ଏକ ଦେଶରେ ବାସ କରୁଥିଲେ ସୁଦ୍ଧା ନିଜର ଜନ୍ମଭୂମି-ପ୍ରତି ସେମାନଙ୍କର ବିଶ୍ୱସ୍ତତା ପ୍ରକାଶିତ । ସୁତରାଂ ଭାରତୀୟମାନେ ଭାରତରେହିଁ ନାଗରିକ ହୋଇ ପାରନ୍ତି, ଅନ୍ୟମାନେ ନୁହନ୍ତି ।

ଉପଯୁକ୍ତ ନାଗରିକ ହେବାକୁ ହେଲେ ଦେଶବାସୀମାନଙ୍କୁ କେତେକ ନିର୍ଦ୍ଦିଷ୍ଟ କାର୍ଯ୍ୟପନ୍ଥା ଅନୁସରଣ କରିବାକୁ ହୋଇଥାଏ । ଦେଶର ଅନୁକୂଳ ବାତାବରଣ ମଧ୍ୟରେ ପରିବର୍ଦ୍ଧିତ ହୋଇ ନିଜର ବ୍ୟକ୍ତିତ୍ୱକୁ ବିକଶିତ କରିବା ସଙ୍ଗେ ସଙ୍ଗେ ଦେଶ ପ୍ରତି ଆପର ଦାୟିତ୍ୱ ଓ କର୍ତ୍ତବ୍ୟ ବିଷୟରେ ଅବହିତ ହେବା ବିଧେୟ । ସୁତରାଂ

'ଭାରତୀୟ ଭାବରେ ମୁଁ କେତେଗୁଡ଼ିଏ ସୁବିଧା ବା ଅଧିକାରର ଅଧିକାରୀ ଏତିକି ଯଥେଷ୍ଟ ନୁହେଁ, ଅନ୍ୟ ପକ୍ଷରେ ଭାରତୀୟ ଭାବରେ ଭାରତ ପ୍ରତି ମୋର ଯଥେଷ୍ଟ କର୍ତ୍ତବ୍ୟ ଅଛି'—ଏହାହିଁ ପ୍ରକୃଷ୍ଟ ନାଗରିକଙ୍କର ମନୋଭାବ । ସମାଜ ବା ଦେଶ ବହୁ ବ୍ୟକ୍ତିଙ୍କର ସମାହାର । ସାମାଜିକ, ଅର୍ଥନୈତିକ ଓ ଶିକ୍ଷାଗତ କ୍ଷେତ୍ରରେ ଏକର ଜୀବନ ଅନ୍ୟକୁ ପ୍ରଭାବିତ ଓ ଅନୁପ୍ରାଣିତ କରିବା ସ୍ୱାଭାବିକ । ଏହି ବିଷୟ ପ୍ରତି ସଚେତନ ହୋଇ ସାଧାରଣ ଦେଶବାସୀଙ୍କର କଲ୍ୟାଣ ନିମନ୍ତେ ନ୍ୟାୟାନୁମୋଦିତ ପନ୍ଥାର ଆଶ୍ରୟଗ୍ରହଣ, ବିଚାରଶୀଳ ଭାବରେ ହୃଷ୍ଟଚିତ୍ତରେ ନିଜର କର୍ତ୍ତବ୍ୟ ସମ୍ପାଦନ କରିବା ବିଧେୟ । ସମାଜର ବିଭିନ୍ନ ବ୍ୟକ୍ତିଙ୍କ ପ୍ରତି ନାଗରିକ ସମ୍ମାନ ପ୍ରଦର୍ଶନ କରିବେ । କେବଳ ସ୍ୱାର୍ଥଜଡ଼ିତ ଭାବଧାରାରେ ଚାଳିତ ନ ହୋଇ ସମାଜସ୍ଥ ଦେଶବାସୀଙ୍କର ଉନ୍ନତି ନିମନ୍ତେ ନିଜର ସଂକୀର୍ଣ୍ଣ ସ୍ୱାର୍ଥକୁ ପରିତ୍ୟାଗ କରିବା ଉଚିତ । ସୁତରାଂ ଦେଶସ୍ଥ ବିଭିନ୍ନ ବ୍ୟକ୍ତିଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରିବା ନାଗରିକତାର ପ୍ରଥମ ସୋପାନ । ଭାରତରେ ବହୁ ପ୍ରଦେଶ ଥିଲେ ସୁଦ୍ଧା ଏକ ପ୍ରଦେଶର ବ୍ୟକ୍ତି ନିଜ ପ୍ରଦେଶଅନ୍ତର୍ଭୁକ୍ତ ତଥା ଅନ୍ୟ ପ୍ରଦେଶର ବ୍ୟକ୍ତିମାନଙ୍କୁ ଆଦର ଓ ସମ୍ମାନ କରିବା ଏକାନ୍ତ ଆବଶ୍ୟକ ।

ଦେଶର ଆଭ୍ୟନ୍ତରୀଣ ଶୃଙ୍ଖଳା ରକ୍ଷା କରି ଦେଶକୁ ଅଗ୍ରଗତି ପଥରେ ନେବା ନିମନ୍ତେ ଦେଶ ମଧ୍ୟରେ ପ୍ରଣୀତ ନିୟମାବଳୀ ବା ବ୍ୟବସ୍ଥାଗୁଡ଼ିକ ପ୍ରତି ସମ୍ମାନ ଓ ଆନୁଗତ୍ୟ ପ୍ରଦର୍ଶନ କରିବା ନାଗରିକମାନଙ୍କ ପକ୍ଷରେ ଏକ ପ୍ରଧାନ ବିଷୟ । ଦେଶ ମଧ୍ୟରେ ଗୃହୀତ କୌଣସି ଏକ ବ୍ୟବସ୍ଥା ଯଦି ମନ୍ଦ ହୋଇଥାଏ ତେବେ ନାଗରିକମାନେ ଜନମତ ସୃଷ୍ଟି କରି ତାକୁ ପରିବର୍ତ୍ତନ କରିବା

ନିମନ୍ତେ ପ୍ରେରିତ ହେବା ଉଚିତ । ଦେଶରେ ପ୍ରଚଳିତ ବିଭିନ୍ନ ବ୍ୟବସ୍ଥା ପ୍ରତି ନାଗରିକମାନେ ଆନୁଗତ୍ୟ ପ୍ରକାଶ ନ କଲେ ଦେଶରେ ଶାନ୍ତି ଓ ଶୃଙ୍ଖଳା ରକ୍ଷା କରିବା ଅସମ୍ଭବ ହୋଇ ପଡ଼ିବ । ବାସ୍ତବରେ ଦେଶରେ ପ୍ରଚଳିତ ବ୍ୟବସ୍ଥାସମୂହ ବହୁ ଚିନ୍ତାଶୀଳ ବ୍ୟକ୍ତିଙ୍କ ଦ୍ୱାରା ପ୍ରଣୀତ ହୋଇଅଛି । ଭାରତୀୟ ସଂବିଧାନ ନିମନ୍ତେ ବହୁ ପଣ୍ଡିତ ଅକ୍ଲାନ୍ତ ପରିଶ୍ରମ କରି ଭାରତୀୟମାନଙ୍କର ସର୍ବାଙ୍ଗୀନ ବିକାଶ ଉଦ୍ଦେଶ୍ୟରେ ବ୍ୟବସ୍ଥା ପ୍ରଣୟନ କରିଛନ୍ତି । ସୁତରାଂ ପ୍ରତ୍ୟେକ ଭାରତୀୟ ନାଗରିକ ଉକ୍ତ ବିଧାନଗୁଡ଼ିକରେ ଆସ୍ଥା ପୋଷଣ କରି ତଦନୁସାରେ ନିଜର କାର୍ଯ୍ୟଧାରା ନିୟନ୍ତ୍ରଣ କରିବା ଆବଶ୍ୟକ । 'ଦେଶମଧ୍ୟରେ ପ୍ରଚଳିତ ବିଭିନ୍ନ ଆଇନକାନୁନ ପ୍ରତି ମୁଁ ଆନୁଗତ୍ୟ ପ୍ରକାଶ ନ କଲେ ଦେଶପ୍ରତି ମଧ୍ୟ ମୋର ବିଶ୍ୱସ୍ତତା ରହିବ ନାହିଁ ଓ ଏହା ଏକାନ୍ତ ମାରାତ୍ମକ'-ଏହା ପ୍ରତ୍ୟେକ ଭାରତୀୟ ନାଗରିକ ଉପଲବ୍ଧି କରିବା ଉଚିତ ।

ଦେଶପ୍ରତି ଆନୁଗତ୍ୟ ଓ ବିଶ୍ୱସ୍ତତା ପ୍ରଦର୍ଶନ କରିବା ନାଗରିକମାନଙ୍କର ଏକ ସର୍ବପ୍ରଧାନ ଓ ମୌଳିକ କର୍ତ୍ତବ୍ୟ । ସର୍ବାନ୍ତଃକରଣରେ ଦେଶନିମନ୍ତେ କାର୍ଯ୍ୟ କରିବା ଦ୍ୱାରା ବିଭିନ୍ନ କ୍ଷେତ୍ରରେ ଦେଶକୁ ଉନ୍ନତିଶୀଳ କରିବା ଫଳରେ ନାଗରିକମାନେ ଦେଶପ୍ରତି ନିଜର ଅନୁରକ୍ତି ପ୍ରଦର୍ଶନ କରି ପାରିବେ ।

ଦେଶ ଯେତେବେଳେ ଶତ୍ରୁ ଦ୍ୱାରା ଆକ୍ରାନ୍ତ ହୁଏ, ଦେଶର ସ୍ୱାଧୀନତା ଯେତେବେଳେ ବିପନ୍ନ ହୁଏ, ସେତେବେଳେ ଦେଶର ସ୍ୱାଧୀନତାକୁ ଦୃଢ଼ ରଖିବା ନିମନ୍ତେ ବୈଦେଶିକ ଆକ୍ରମଣରୁ ଦେଶକୁ ସୁରକ୍ଷିତ କରିବା ଲାଗି ନାଗରିକମାନେ ଉଦ୍ୟମଶୀଳ ହେବା ବିଧେୟ । ସେମାନେ ଏଥିପ୍ରତି ସଚେତନ ନ ହେଲେ ଦେଶ ଶତ୍ରୁଦ୍ୱାରା ଅଧିକୃତ ହୋଇ ନିଜର ସ୍ୱାଧୀନତା ହରାଇବ

ଏବଂ ଦେଶର ସ୍ୱାଧୀନତା ଅପହୃତ ହେଲେ ନାଗରିକମାନେ ସେମାନଙ୍କର ରାଜନୈତିକ ଅଧିକାର ଓ ବହୁ ସୁବିଧାରୁ ବଞ୍ଚିତ ହେବେ । ବୈଦେଶିକ ଶାସନଶୃଙ୍ଖଳରେ ଆବଦ୍ଧ ରହିବାର କୁଫଳ ଭାରତୀୟମାନେ ଉପଭୋଗ କରିଛନ୍ତି । ସୁତରାଂ ବର୍ତ୍ତମାନ ବହୁ ସାଧନାଲବ୍ଧ ସ୍ୱାଧୀନତା ରକ୍ଷା ନିମନ୍ତେ ଦେଶର ସାମରିକ ଶକ୍ତି ଦୃଢ଼ କରିବା ଦିଗରେ ଭାରତୀୟ ନାଗରିକମାନେ ସାହାଯ୍ୟ କରିବା ଉଚିତ । ଦେଶରେ ସ୍ୱାଧୀନତା ରକ୍ଷାପ୍ରତି ସାବଧାନ ବା ଜାଗରୂକ ହେବା ଓ ଆବଶ୍ୟକ ପଡ଼ିଲେ ଏଥି ନିମନ୍ତେ ଯୁଦ୍ଧ କ୍ଷେତ୍ରରେ ଯୋଗ ଦେବାକୁ ଭାରତୀୟ ନାଗରିକମାନେ କୁଣ୍ଠିତ ହେବେ ନାହିଁ ।

ଦେଶରେ ଶାନ୍ତି ଶୃଙ୍ଖଳା ରକ୍ଷା କରିବା ନିମନ୍ତେ ନିଯୁକ୍ତ କର୍ମଚାରୀ ପ୍ରଭୃତିଙ୍କୁ ସାହାଯ୍ୟ ଓ ସହାୟତା ପ୍ରଦାନ କରିବା ଯେ କୌଣସି ନାଗରିକଙ୍କର କର୍ତ୍ତବ୍ୟ ହେବା ଉଚିତ । ଦେଶମଧ୍ୟରେ ସାମ୍ପ୍ରଦାୟିକ ଗଣ୍ଡଗୋଳ କିମ୍ବା ବିଶୃଙ୍ଖଳା ପ୍ରଭୃତି ଜାତହେଲେ ସେ ଗୁଡ଼ିକୁ ଦୂର କରି ଦେଶର ପୋଲିସପ୍ରଭୃତି କର୍ମଚାରୀଙ୍କ ସହିତ ସହଯୋଗ ସ୍ଥାପନ କରିବା ଦେଶର ସମୂହ ସ୍ୱାର୍ଥଦୃଷ୍ଟିରୁ କାମ୍ୟ । ଭାରତ ଏକ ବିରାଟ ଦେଶ ହୋଇ ଥିବାରୁ ଏ ବିରାଟ ଦେଶରେ ଶାନ୍ତି ଓ ଶୃଙ୍ଖଳାରକ୍ଷା ବାସ୍ତବରେ ଏକ ଗୁରୁତ୍ୱପୂର୍ଣ୍ଣ ବ୍ୟାପାର । ସୁତରାଂ ଏ କ୍ଷେତ୍ରରେ ଭାରତୀୟ ନାଗରିକମାନଙ୍କ ଯଥେଷ୍ଟ ସାହାଯ୍ୟ କରିବାର ଅଛି । ନାଗରିକମାନେ ଶାନ୍ତି ଓ ଶୃଙ୍ଖଳାରକ୍ଷା ଦିଗରେ ବୀତଶ୍ରଦ୍ଧ ହେଲେ ଦେଶର ସାଧାରଣ କର୍ମଚାରୀଙ୍କ ପକ୍ଷରେ ଏହା ଏକାନ୍ତ କଷ୍ଟକର ହେବ । ସୁତରାଂ ଏ କ୍ଷେତ୍ରରେ ଦେଶର ସାଧାରଣ ନାଗରିକ ଓ ସରକାରଙ୍କ ମଧ୍ୟରେ ଆନ୍ତରିକ ସହଯୋଗ ଏକାନ୍ତ ଆବଶ୍ୟକ ।

ପ୍ରକୃଷ୍ଟ ନାଗରିକ ଏକନିଷ୍ଠ ଦେଶସେବକ । ସୁତରାଂ ଦେଶର ବିଭିନ୍ନ ଦାୟିତ୍ୱପୂର୍ଣ୍ଣ କ୍ଷେତ୍ରରେ ଯେଉଁମାନେ ଅଧିଷ୍ଠିତ ଓ ବିଭିନ୍ନ କାର୍ଯ୍ୟଭାର ଯେଉଁମାନଙ୍କଠାରେ ଅର୍ପିତ ସେମାନେ ଦେଶର ସ୍ୱାର୍ଥ ଓ କଲ୍ୟାଣ ଦୃଷ୍ଟିରୁ ଉକ୍ତ କାର୍ଯ୍ୟକୁ ସୁସମ୍ପାଦିତ କରିବା ବିଧେୟ ।

ଆଧୁନିକ ଗଣତନ୍ତ୍ର-ରାଷ୍ଟ୍ରରେ ଦେଶବାସୀମାନେ ନିଜର ପ୍ରତିନିଧି ପ୍ରେରଣ କରି ଶାସନ କାର୍ଯ୍ୟକୁ ନିୟନ୍ତ୍ରଣ କରି ଥାଆନ୍ତି । ଏହି ପ୍ରତିନିଧି ନିର୍ବାଚନ କରିବାର ଅଧିକାର ଓ ଦାୟିତ୍ୱ ଗଣତନ୍ତ୍ର-ରାଷ୍ଟ୍ରର କଲ୍ୟାଣ ପକ୍ଷରେ ଏକାନ୍ତ ଆବଶ୍ୟକ । ସୁଯୋଗ୍ୟ ପ୍ରତିନିଧି ପ୍ରେରଣ କରିବା ସମ୍ବନ୍ଧରେ ଅବହିତ ଥାଇ ସାଧାରଣ ନିର୍ବାଚନ ସମୟରେ ଯେ କୌଣସି ନାଗରିକ ସ୍ୱୀୟ ସ୍ୱାଧୀନ ମତ-ପରିଚାଳିତ ହୋଇ ପ୍ରତିନିଧି ମନୋନୀତ କରିବା ଉଚିତ । ଏହି ଅଧିକାରପ୍ରତି ଯଥାର୍ଥ ସଚେତନ ହେବା ଦ୍ୱାରା ଦେଶ ମଧ୍ୟରେ ଏକ ଦୃଢ଼ ଓ ବଳିଷ୍ଠ ସରକାର ପ୍ରତିଷ୍ଠିତ ହୋଇପାରେ । ଗତ ସାଧାରଣ ନିର୍ବାଚନରେ ସାବାଳକ ଭାରତୀୟମାନଙ୍କୁ ଭୋଟ ଅଧିକାର ଦିଆଯାଇଥିଲେ ହେଁ ଆଶାନୁରୂପ ଭାବରେ ଅଧିକ ଲୋକ ଏହି ଅଧିକାରକୁ ଯଥାର୍ଥ ପ୍ରୟୋଗ କରି ନ ଥିଲେ । କିନ୍ତୁ ଭାରତୀୟ ନାଗରିକ ନିଜର ରାଜନୈତିକ ଅଧିକାର ଲାଭ କରିବାକୁ ପୂର୍ଣ୍ଣ ସମ୍ପୂର୍ଣ୍ଣ ଭାବରେ ଦେଶଶାସନ ଓ ଜନକଲ୍ୟାଣ ନିଜଦ୍ୱାରା ନିୟନ୍ତ୍ରିତ କରିବାକୁ ଆକାଙ୍କ୍ଷିତ ଥିଲେ ନିଜ ଅଧିକାରର ସଦୁପଯୋଗ କରିବା ଉଚିତ । ଦେଶର ମଙ୍ଗଳଦୃଷ୍ଟିରୁ ଏହା କେବଳ ଅଧିକାର ନୁହେଁ; କର୍ତ୍ତବ୍ୟ ମଧ୍ୟ । ଜାତି, ବର୍ଣ୍ଣ, ଧର୍ମ ଓ ଦଳ ନିର୍ବିଶେଷରେ କୌଣସି ସ୍ୱାର୍ଥମୂଳକ ମନୋବୃତ୍ତିଦ୍ୱାରା ପରିଚାଳିତ ନ ହୋଇ ଉତ୍ତମରୂପେ ଏହି ଦାୟିତ୍ୱକୁ ସମ୍ପନ୍ନ କରିବା ରାଷ୍ଟ୍ରକଲ୍ୟାଣ ଦୃଷ୍ଟିରୁ ଅତ୍ୟାବଶ୍ୟକ ।

ଦେଶବାସୀଙ୍କଠାରୁ କର ଗ୍ରହଣ କରି ସରକାର୍ ପରିଚାଳିତ ହୋଇଥାଏ । କାରଣ ଦେଶର ଉନ୍ନତିମୂଳକ ବହୁକାର୍ଯ୍ୟ ଦେଶବାସୀଙ୍କ ଠାରୁ ଆଦାୟ ହେଉଥିବା କରଦ୍ୱାରା ସାଧିତ ହୋଇଥାଏ । ସୁତରାଂ ଗ୍ରାମ ହେଉ ସହର ହେଉ ବିଭିନ୍ନ ସ୍ଥାନରେ ନିର୍ଦ୍ଧାରିତ କର ଯଥା ସମୟରେ ନିୟମିତ ଭାବରେ ପ୍ରଦାନ କରିବା ଦେଶର ନାଗରିକଙ୍କ ପକ୍ଷରେ ଉଚିତ ।

ଉନ୍ନତ ନାଗରିକ ଦେଶର ସମୂହ ସ୍ୱାର୍ଥ ଦୃଷ୍ଟିରୁ ବ୍ୟକ୍ତିଗତ ସୁଖ ସ୍ୱାଚ୍ଛନ୍ଦ୍ୟକୁ ବିସର୍ଜନ କରିଥାଆନ୍ତି । ସମାଜ ଓ ଦେଶର ମଙ୍ଗଳ ନିମନ୍ତେ ପ୍ରତ୍ୟେକ ବ୍ୟକ୍ତି ଆବଶ୍ୟକମତେ ବ୍ୟକ୍ତିଗତ ସ୍ୱାର୍ଥତ୍ୟାଗ ପାଇଁ ପ୍ରସ୍ତୁତ ହେବା ଉଚିତ । ଭାରତ ସ୍ୱାଧୀନ ହୋଇଥିଲେ ସୁଦ୍ଧା ବିଭିନ୍ନ କ୍ଷେତ୍ରରେ ବହୁ ସମସ୍ୟା ଭାରତରେ ବିଦ୍ୟମାନ । ଏହି ସମସ୍ୟାଗୁଡ଼ିକର ସମାଧାନନିମନ୍ତେ ଦେଶବାସୀଙ୍କର ସମ୍ମିଳିତ ଉଦ୍ୟମ ଲୋଡ଼ା । ବ୍ୟକ୍ତିଗତ ସ୍ୱାର୍ଥ ତୁଳନାରେ ଜାତୀୟ ସ୍ୱାର୍ଥକୁ ଅଧିକ ଗୁରୁତ୍ୱ ପ୍ରଦାନ କରିବା ପ୍ରତ୍ୟେକ ଭାରତୀୟ ନାଗରିକ ଶିଖିଲେ ଭାରତର କଲ୍ୟାଣ ଅଚିରେ ସାଧିତ ହୋଇପାରିବ ।

ନାଗରିକମାନଙ୍କର ଦାୟିତ୍ୱବୋଧ, ସାମର୍ଥ୍ୟର ଗୁରୁତା ଉପରେ ଜାତୀୟ ସରକାରର ଦୃଢ଼ତା ଅନେକାଂଶରେ ନିର୍ଭର କରେ । ନାଗରିକମାନେ ସେମାନଙ୍କର ବୁଦ୍ଧିମତ୍ତା, ଆତ୍ମସଂଯମ ଓ ବିବେକଦ୍ୱାରା ପରିଚାଳିତ ହୋଇ ଦେଶକଲ୍ୟାଣ ଦିଗରେ ବ୍ରତୀ ହେବେ । ନାଗରିକ କର୍ତ୍ତବ୍ୟସମ୍ପାଦନରେ ଆଳସ୍ୟ ପରାୟଣତା, ଆତ୍ମସ୍ୱାର୍ଥ ଓ ଦଳଗତ ଉତ୍କଟ ମନୋଭାବ ପ୍ରଭୃତି ପ୍ରତିବନ୍ଧକ ସୃଷ୍ଟି କରିଥାଏ । ନାଗରିକମାନଙ୍କଠାରେ ଆଳସ୍ୟ ଯଥାର୍ଥରେ ଜାତୀୟ ଜୀବନର ଏକ ବ୍ୟାଧି । ସମାଜ ଏ ବ୍ୟାଧିଗ୍ରସ୍ତ ହେଲେ ତା'ର ଉନ୍ନତି ସୁଦୂରପରାହତ । ନାଗରିକକର୍ତ୍ତବ୍ୟ ସମ୍ପନ୍ନ ନ କରି

ଜଣେ ବ୍ୟକ୍ତି ସ୍ୱଚ୍ଛନ୍ଦରେ ଚଳି ପାରୁଥିବାର ଦେଖି ଅନ୍ୟ ଜଣେ ନାଗରିକ ନିଜର କର୍ତ୍ତବ୍ୟ ପ୍ରତି ଅଶ୍ରଦ୍ଧା ବା ବିତୃଷ୍ଣା ପ୍ରଦର୍ଶନ କରିଥାଏ । ଫଳତଃ ସେ ନିର୍ବାଚନରେ ଭାଗ ଗ୍ରହଣ କରିବାକୁ, ସାଧାରଣ କାର୍ଯ୍ୟକ୍ଷେତ୍ରରେ ଦାୟିତ୍ୱ ଗ୍ରହଣ କରିବାକୁ, ଜାତୀୟ ଆହ୍ୱାନ ସମୟରେ ଯୁଦ୍ଧକ୍ଷେତ୍ରରେ ଯୋଗ ଦେବାକୁ ଦେଶର ବିଭିନ୍ନ ଅବସ୍ଥା ଓ ସମସ୍ୟାସହ ସୁପରିଚିତ ଥାଇ ସେ ସମ୍ବନ୍ଧରେ ନିଜର ମତ ପ୍ରକାଶ କରିବାକୁ କୁଣ୍ଠିତ ହୋଇଥାଏ । ତାଛଡ଼ା ଦେଶବାସୀଙ୍କର ଶିକ୍ଷାର ସ୍ତର ଅଳ୍ପ ହୋଇଥିଲେ ସେମାନେ ସାଧାରଣ ସ୍ୱାର୍ଥସମ୍ବଳିତ କୌଣସି ଏକ ବିଷୟରେ ନିଜର ସ୍ୱାଧୀନ ମତ ପ୍ରଦାନ କରି ପାରନ୍ତି ନାହିଁ । ଏ ଧରଣର ବ୍ୟାଧିରୁ ପ୍ରତ୍ୟେକ ଭାରତୀୟ ନାଗରିକ ନିଜକୁ ମୁକ୍ତ କରି ଜାତୀୟ ସମସ୍ୟା ସମ୍ବନ୍ଧରେ ସଚେତନ, ଆଳସ୍ୟ ପରାୟଣ ପରିବର୍ତ୍ତେ କର୍ମପ୍ରବଣ ହେବା ବିଧେୟ । ତା ହେଲେ ଭାରତର ଉନ୍ନତି ହୋଇ ପାରିବ ।

ଭାରତ ଦୀର୍ଘକାଳବ୍ୟାପୀ ବିଦେଶୀ ଶାସନଶୃଙ୍ଖଳରୁ ମୁକ୍ତ ହୋଇ ସ୍ୱାଧୀନତା ଲାଭ କରିଛି । ସ୍ୱାଧୀନ ଭାରତର ପ୍ରତ୍ୟେକ ଅଧିବାସୀ ଜଣେ ନାଗରିକ । ଦେଶ ମଧ୍ୟରେ ରହି, ସାମାଜିକ, ରାଜନୈତିକ ଓ ଅର୍ଥନୈତିକ କ୍ଷେତ୍ରରେ ଦେଶଠାରୁ ସୁବିଧା ଲାଭ କରି ଆତ୍ମୋନ୍ନତି ସାଧନ କଲା ବେଳେ ଦେଶପ୍ରତି ଆମର ଦାୟିତ୍ୱ ଓ କର୍ତ୍ତବ୍ୟକୁ ଅବହିତ ହେବା ସର୍ବାଦୌ ଅବଶ୍ୟକ । ସ୍ୱାଧୀନ ଭାରତର ନାଗରିକମାନେହିଁ ଏହାର ସର୍ବାଙ୍ଗୀନ ଉନ୍ନତି ଅନୁଷ୍ଠାନ କରିବାକୁ ସମର୍ଥ ହେବେ । ସୁତରାଂ କେଉଁ କାର୍ଯ୍ୟ କଲେ ମୋର ଜାତି ଓ ଦେଶ ସମ୍ମାନିତ ହେବ, ଅନ୍ୟମାନଙ୍କଦ୍ୱାରା ପ୍ରଶଂସିତ ହେବ ସେହି କାର୍ଯ୍ୟ ଏକନିଷ୍ଠ ଭାବରେ ସମ୍ପନ୍ନ କରିବା ମୋ ପକ୍ଷରେ ଉଚିତ । ଜାତୀୟ ଜୀବନର ଅପମାନଜନକ କୌଣସି

କାର୍ଯ୍ୟ ମୁଁ କରିବି ନାହିଁ—ଏହି ଦୃଢ଼ ମନୋଭାବ ଦ୍ୱାରା ପ୍ରତ୍ୟେକ ଭାରତୀୟ ନାଗରିକର କର୍ମପନ୍ଥା ନିୟନ୍ତ୍ରିତ ହେବା ବିଧେୟ । ସ୍ୱାଧୀନତାର ଅଧିକାର ଭାରତୀୟମାନଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟକୁ ବହୁ ଗୁଣରେ ବର୍ଦ୍ଧିତ କରିଛି । ଖାଦ୍ୟ, ଶିକ୍ଷା, ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ଭାରତର ବହୁ ସମସ୍ୟାର ସମାଧାନ ଭାରତୀୟ ନାଗରିକମାନଙ୍କୁ ଅପେକ୍ଷା କରି ରହିଛି । ସୁତରାଂ ଭାରତୀୟ ନାଗରିକମାନଙ୍କର କର୍ତ୍ତବ୍ୟ ସମ୍ପାଦନ ଉପରେ ଦେଶର ସର୍ବାଙ୍ଗୀନ ଉନ୍ନତି ନିର୍ଭର କରେ । ଏହା ବିଚାର କରି ପ୍ରତ୍ୟେକ ନାଗରିକ ଜାତୀୟ ଗଠନମୂଳକ ଓ ଉନ୍ନତିବିଧାୟକ କର୍ମସାଧନରେ ପ୍ରବୃତ୍ତ ହେବା ଏକାନ୍ତ ଆବଶ୍ୟକ ।

ପ୍ରଶ୍ନ—୧ । ନାଗରିକ କହିଲେ କଅଣ ବୁଝାଯାଇଥାଏ ? ପ୍ରକୃତ ନାଗରିକ ଭାବରେ କାହାକୁ ଆଖ୍ୟାତ କରାଯାଇ ପାରେ ?

୨ । ନାଗରିକ ଦେଶର ପ୍ରକୃତ ସେବକ, ତେଣୁ ଦେଶପ୍ରତି ତାଙ୍କର କର୍ତ୍ତବ୍ୟ ଯଥେଷ୍ଟ । ତାଙ୍କର କର୍ତ୍ତବ୍ୟ ସମ୍ବନ୍ଧରେ ଯାହା ଜାଣ ଲେଖ ।

୩ । 'ସ୍ୱାଧୀନତାର ଅଧିକାର ଭାରତୀୟମାନଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟକୁ ବହୁଗୁଣିତ କରିଅଛି ।' ଏହି ଉକ୍ତିର ଯଥାର୍ଥ୍ୟ ପ୍ରତିପାଦନ କର ।

୪ । ସଂକ୍ଷିପ୍ତ ଟିପ୍ପଣୀ ଲେଖ ।

(କ) ଗଣତନ୍ତ୍ର ରାଷ୍ଟ୍ର (ଖ) ଦେଶାତ୍ମବୋଧ ।

(ଗ) ସାଧାରଣ ନିର୍ବାଚନ (ଘ) ଭାରତୀୟ ସମ୍ବିଧାନ ।